# ହୀରକ ଦ୍ୟୁତି



ଡ. ଲକ୍ଷ୍ମୀଧର ଦାସଙ୍କ ହୀରକ ଜୟନ୍ତୀ ଉତ୍ସବ କମିଟି

ପୁରୀ

# ହୀରକ ଦ୍ୟୁତି

*ମୁଖ୍ୟ ସଂପାଦକ*

ଡକ୍ଟର ବଳରାମ ଦାସ

*ସଂପାଦନା*

ସତ୍ୟନାରାୟଣ ମିଶ୍ର

ସୁଚେତା ମିଶ୍ର

ଉମାକାନ୍ତ ମହାପାତ୍ର

*ପ୍ରକାଶକ*

ହୀରକ ଜୟନ୍ତୀ ଉତ୍ସବ କମିଟି

*ପ୍ରକାଶ ପରିଚାଳନା*

ଅନାମ ଚନ୍ଦ୍ର ସାହୁ

*ପ୍ରକାଶ କାଳ*

ଜୁନ୍ ୧ ୨ ତାରିଖ-୨ ୦ ୧ ୪

# ଡଃ ଲକ୍ଷ୍ମୀଧର ଦାସଙ୍କ ହୀରକ ଜୟନ୍ତୀ ଉତ୍ସବ କମିଟି

'ଶଙ୍ଖନାଭି' ସର୍ବୋଦୟ ନଗର, ପୁରୀ-୨



ଉପଦେଷ୍ଟା ମଣ୍ଡଳୀ

ଡ. କିଶୋର ଚନ୍ଦ୍ର ମିଶ୍ର

ହରିହର ମିଶ୍ର

ଶ୍ରୀମତୀ ପ୍ରତିମା ମିଶ୍ର

ଡ. ନଟବର ଶତପଥୀ

ଡ. ଗୌରାଙ୍ଗ ଚରଣ ଦାସ



ସଭାପତି

ଡକ୍ଟର ବଳରାମ ଦାସ



ଉପସଭାପତି

ସତ୍ୟନାରାୟଣ ମିଶ୍ର



ସାଧାରଣ ସଂପାଦକ

ଅନାମଚନ୍ଦ୍ର ସାହୁ



ସଂଗଠନ ସଂପାଦକ

ରବୀନ୍ଦ୍ରନାଥ ପଟ୍ଟନାୟକ



କୋଷାଧ୍ୟକ୍ଷ

ଆର୍ତ୍ତତ୍ରାଣ ମାନସିଂହ

●

କାର୍ଯ୍ୟକାରୀ କମିଟୀ

ଡ. ଅଦ୍ୱୈତ୍ୱ ଚରଣ ଧଳ

ରାଜକୃଷ୍ଣ ମହାନ୍ତି

ପ୍ରଶନ୍ନ କୁମାର ମହାନ୍ତି

ଗୋପିନ୍ଦ ଚନ୍ଦ୍ର ମହାନ୍ତି

ସଦାଶିବ ମିଶ୍ର

କ୍ରିଷ୍ଣା ମହାପାତ୍ର

ଡଃ ଋଗୁବାଳା ଦାଶ

ସଚ୍ଚିଦାନନ୍ଦ ମହାନ୍ତି

●

ହୀରକଦ୍ୟୁତି

(ସ୍ମରଣିକା ଗ୍ରନ୍ଥ)

●

ମୁଖ୍ୟ ସମ୍ପାଦକ

ଡକ୍ଟର ବଳରାମ ଦାସ

●

ସମ୍ପାଦନା ମଣ୍ଡଳୀ

ସତ୍ୟନାରାୟଣ ମିଶ୍ର

ସୁଚେତା ମିଶ୍ର

ଉମାକାନ୍ତ ମହାପାତ୍ର

# ସୂଚୀପତ୍ର

ସମ୍ପାଦକୀୟ ବିବରଣୀ -

## ହୀରକ ଜୟନ୍ତୀ କମିଟି ଉତ୍ସବର ସମ୍ମାନୀୟ ସଭାପତି ମହୋଦୟ ସମ୍ମାନନୀୟ ଉଦ୍‌ଘାଟକ, ମୁଖ୍ୟ ଅତିଥି ଓ ମୁଖ୍ୟବକ୍ତା ମହୋଦୟ ଓ ସମବେତ ସୁଧୀବୃନ୍ଦ

ଆଜିର ଏହି ଶୁଭ ସନ୍ଧ୍ୟାରେ ଆପଣମାନଙ୍କ ଭବ୍ୟ ଉପସ୍ଥିତି ପାଇଁ ସମସ୍ତଙ୍କୁ ମୁଁ ପ୍ରଣତି ଜଣାଉଛି ଓ କୃତଜ୍ଞତା ସ୍ୱୀକାର କରୁଛି ।

ପ୍ରିୟ ସାହିତ୍ୟିକ, ଅତିଥି ବତ୍ସଳ, ସ୍ନେହୀ ଦରଦୀ, ପ୍ରତିବେଶୀ ପ୍ରେମୀ ଡକ୍ଟର ଲକ୍ଷ୍ମୀଧର ଦାସଙ୍କ ୭୫ତମ ଜୟନ୍ତୀ ପାଳନ ଅବସରରେ ସେ ମହାଶୟଙ୍କୁ ପ୍ରଣାମ ଜଣାଉଅଛି । ଏହି କାର୍ଯ୍ୟକ୍ରମର ସମ୍ପାଦକ ରୂପେ ଦାୟିତ୍ୱ ଗ୍ରହଣ କରିଥିବାରୁ ନିଜକୁ ଧନ୍ୟ ମନେ କରୁଅଛି ।

ସମାଜ ଓ ସଂସ୍କୃତିରେ ସବୁ ସମୟରେ ପୂଜ୍ୟପୂଜାର ଆବଶ୍ୟକତା ରହିଆସିଛି । ଏହାଦ୍ୱାରା ବରିଷ୍ଠ ନାଗରିକମାନଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ ପୂର୍ବକ ତାଙ୍କ ଆଶୀର୍ବାଦ ସ୍ୱରୂପ ତାଙ୍କ ଚଳଣୀ ଅଭିଜ୍ଞତା, ଜ୍ଞାନ ଗାରିମା ଓ ଦିନଚର୍ଯ୍ୟାରୁ ଆମ୍ଭେମାନେ ଅନେକ ଶିକ୍ଷା ଲାଭ କରିପାରିବାର ସୁଯୋଗ ପାଇଥାଉ ।

ଡ. ଲକ୍ଷ୍ମୀଧର ଦାସ ପାରିବାରିକ ଆର୍ଥିକ ସ୍ଥିତିର ତାଡନାରେ ଜଣେ ସମାଜ ସେବକ ଭାବରେ ଚାକିରି କରିବା ପାଇଁ ସୁଦୂର କୋରାପୁଟ ଜିଲ୍ଲାକୁ ୧୯୫୮ ମସିହାରେ ଯାଇଥିଲେ । ସେହି ଚାକିରି ଅବସ୍ଥାରୁ କ୍ରମଶଃ ଉନ୍ନତି କରି ଜଣେ ବରିଷ୍ଠ ସଫଳ ଓଡ଼ିଆ ଅଧ୍ୟାପକ ଭାବରେ ସେବା ନିବୃତ୍ତ ହୋଇଅଛନ୍ତି ।

ସେ ନିଜେ ପି.ଏଇଚ.ଡ଼ି ପ୍ରାପ୍ତ ହୋଇ କେତେକ ଛାତ୍ରଙ୍କୁ ପି.ଏଇଚ.ଡି କରିବାରେ ମାର୍ଗ ଦର୍ଶକ ମଧ୍ୟ ହୋଇଛନ୍ତି ।

ଅତିଥି ଦେବ ଭବ କଥାଟି ତା'ଙ୍କଠାରେ ସମ୍ପୂର୍ଣ୍ଣ ଭାବେ ପ୍ରଯୁଜ୍ୟ । ପୁତ୍ର, କନ୍ୟା, ପୁତୁରା, ଭଣଜା, ଭାଣେଜୀ, ନାତି, ନାତୁଣୀ ଆଦିଙ୍କ ପ୍ରତି ସ୍ନେହ ଓ ଦାୟିତ୍ୱ ବୋଧ ସହିତ ଅନ୍ୟ ଅନେକଙ୍କ ପ୍ରତି ସେ ଯଥେଷ୍ଟ ସମ୍ବେଦନଶୀଳ ।

ଜଣେ ସଫଳ ପୁରୁଷ ପଛରେ ଜଣେ ନାରୀଙ୍କ ଅବଦାନ ବିଶେଷ ଭାବରେ ରହିଥାଏ । ଡ.ଲକ୍ଷ୍ମୀଧର ଦାସଙ୍କ ସହଧର୍ମିଣୀ ଜଣେ ମିଷ୍ଟଭାଷିଣୀ ପତି ଅନୁରାଗୀ, ଶୀଳ ସମ୍ପନ୍ନାତ୍ୟାଗୀ, ନିଷ୍ଠା ସମ୍ପନ୍ନ ସଂସ୍କୃତିର ଉପାସକ ଅଟନ୍ତି । ସେହି

ଭଦ୍ର ମହିଳାଙ୍କ ପ୍ରେରଣା ଓ ସହଯୋଗ, ସମର୍ଥନ ପାଇ ଡ. ଲକ୍ଷ୍ମୀଧର ଦାସ ଆଜି ଜଣେ ଆଦର୍ଶ ପୁରୁଷ ରୂପେ ବିଭିନ୍ନ ଦିଗରୁ ଆମ୍ଭମାନଙ୍କ ପାଇଁ ପ୍ରେରଣା ପ୍ରଦ ହୋଇପାରିଛନ୍ତି ।

ପୁରୀ ସହରରେ ନିବାସ କରିଥିଲେ ମଧ ପଲ୍ଲୀଜୀବନ ପ୍ରତି ତା'ଙ୍କର ସମ୍ପର୍କରେ ତିଳେମାତ୍ର ଭଟ୍ଟା ପଡ଼ିନାହିଁ । ପ୍ରତ୍ୟେକ ପର୍ବପର୍ବାଣି, ଯାନିଯାତ୍ରା, ପାରିବାରିକ ମଙ୍ଗଳ ଉତ୍ସବରେ ଯୋଗ ଦେବା ପାଇଁ ସେ ଗ୍ରାମକୁ ଯାଇ ଅନ୍ତରଂଗ ମୂହୂର୍ତ୍ତରେ ନିଜକୁ ହଜାଇ ଦେଇଛନ୍ତି ।

ମାନସିକ ଓ ଶାରିରୀକ ଶକ୍ତି ଦୃଷ୍ଟିରୁ କିଛି କାର୍ଯ୍ୟ କରି ସମାଜର ମଙ୍ଗଳ କରିବାରେ ସେ ଖୁବ୍ ଉତ୍ସାହୀ । ଏହି ଦୃଷ୍ଟିରୁ ଡ. ଲକ୍ଷ୍ମୀଧର ଦାସ ଗ୍ରାମରେ ମନ୍ଦିର ନିର୍ମାଣ ଏବଂ ଅନ୍ୟାନ୍ୟ ସାମାଜିକ କାର୍ଯ୍ୟକ୍ରମରେ ନିଜକୁ ହଜାଇ ଦେଇଅଛନ୍ତି । ବୌଦ୍ଧିକ ଚିନ୍ତା ଓ ଚିନ୍ତନରେ ରହି ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପରିଷଦର ଜଣେ ସମ୍ମାନିତ ସଭ୍ୟ ଭାବରେ ଆମ୍ଭମାନଙ୍କୁ ଉତ୍ସାହିତ ଏବଂ ପ୍ରେରଣା ଦାନ କରି ଆସିଅଛନ୍ତି ।

୧୫ ବର୍ଷ ପୂର୍ବରୁ ଡ. ବିଷ୍ଣୁମୋହନ ଦାସଙ୍କ ଦ୍ୱାରା ଡ. ଲକ୍ଷ୍ମୀଧର ଦାସଙ୍କୁ ଦେଖିବାର ସୁଯୋଗ ପାଇଥିଲି । ଜଣେ ବଡ଼ ଭାଇ ଭଳି ସବୁ ସମୟରେ ସେ ସ୍ନେହ ଶ୍ରଦ୍ଧା ଏବଂ ସହଯୋଗ ପ୍ରଦାନ କରି ଆସିଅଛନ୍ତି । ତାଙ୍କ ପରିବାର ମଧରେ ଥିବା ଗହଳ ଚହଳ ପରିବେଶ ଆମ୍ଭଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଆସିଅଛି । ତାଙ୍କ ପରିବାରରେ ସଭିଏଁ ମିଳିମିଶି ପରସ୍ପରକୁ ସାହାଯ୍ୟ ଓ ସମର୍ଥନ କରୁଥିବାର ଦେଖିବାକୁ ମିଳେ । ଯାହା ଆଜିର ଦୁନିଆ ପାଇଁ ବିରଳ ଦୃଷ୍ଟାନ୍ତ ଅଟେ ।

ଶେଷରେ 'ହୀରକ ଦ୍ୟୁତିର' ପ୍ରକାଶନରେ ଆପଣମାନଙ୍କ ସହଯୋଗ ପାଇଁ କୃତଜ୍ଞତା ପ୍ରକାଶ କରୁଅଛି । ଅନୁଷ୍ଠାନର ସଭାପତି ଡ. ବଳରାମ ଦାସ, ଉପସଭାପତି ଶ୍ରୀସତ୍ୟନାରାୟଣ ମିଶ୍ର, ଯୁଗ୍ମ ସମ୍ପାଦକ ରବୀନ୍ଦ୍ରନାଥ ପଟ୍ଟନାୟକ ଆଦି ଅନ୍ୟନ୍ୟା ସଭ୍ୟା ଓ ସଭ୍ୟଭ୍‌କ ନିକଟରେ ଅନୁଷ୍ଠାନର ସଫଳତା ପାଇଁ ଚୀର କୃତଜ୍ଞ ରହୁଛି ।

ଅନାମ ଚନ୍ଦ୍ର ସାହୁ
ସାଧାରଣ ସଂପାଦକ

# ଡଃ ଲକ୍ଷ୍ମୀଧର ଦାସଙ୍କ ସୃଜନ ଜଗତ –
## ନିଜ ଲେଖା ସମ୍ପର୍କରେ

ପ୍ରଶ୍ନଟି ବଡ଼ ସ୍ୱାଭାବିକ । ମୁଁ କିଛି ଲେଖେ, ଏଣୁ ଏହାର ଉତ୍ତର ଦେବା ବଡ଼ ସହଜ । କାର୍ଯ୍ୟ ପଛରେ ନିଶ୍ଚୟ କିଛି କାରଣ ଅଛି ।

ଏହା ମୋର ଅନୁଭବ ଓ ଉପଲବ୍ଧିର କଥା ହୋଇଥିବାରୁ ଯଥାର୍ଥ ଉତ୍ତର ଦେଇପାରିବି । କିନ୍ତୁ କାରଣ ସୂତ୍ରଟି ଉଖାରି ନିଖାରି ଦେଖିଲା ବେଳକୁ " ନଟେଇଟା ସାରା ଅଡ଼ୁଆ" ! ଭାବି ଲାଗିଲି- ଅକାରଣରେ କର୍ମ ବି ହୁଏ । ବିନା କାରଣରେ ଲୋକେ ରାଗନ୍ତି, ରୁଷନ୍ତି, କ୍ରୋଧ ପ୍ରକାଶ କରି ମାରନ୍ତି, ପିଟନ୍ତି, ନାନା କାଣ୍ଡ କରନ୍ତି । ଆଳଙ୍କାରିକମାନେ ବିନା କାରଣରେ କାର୍ଯ୍ୟ ଉତ୍ପନ୍ନ କରୁଥିବା ଅଳଙ୍କାର ଭାବେ 'ବିଭାବନା'କୁ ଚିହ୍ନିତ କରିଛନ୍ତି । ବିଦଗ୍ଧ କବି ପ୍ରେମତତ୍ତ୍ୱ ବଖାଣିବାକୁ ଯାଇ କହିଛନ୍ତି -ପ୍ରେମ ଅନଳ ନ ହେଲେ ବି ଏହାର ଦାହିକାଶକ୍ତି ଅଛି, ଅସ୍ତ୍ର ନହେଲେ ମଧ୍ୟ ଏହା ମର୍ମକୁ ଭେଦ କରିଥାଏ ... ଇତ୍ୟାଦି କେତେ କଥା । ଏମିତି ଗୋଟେ ପ୍ଲଟ୍ ନେଲେ 'ପ୍ରିୟପତ୍ର'ର ସମ୍ପାଦକଙ୍କୁ ଫାଙ୍କିଦେବି । କହିବି ଲେଖିବାକୁ ଇଚ୍ଛା ହେଲେ ଖୁସିରେ ଲେଖେ, ତା'ର କାରଣ ଫାରଣ କ'ଣ ଜାଣେନି । ସବୁ କାର୍ଯ୍ୟର କ'ଣ କାରଣ ଥାଏ ?

ପୁଣି ଭାବିଲି, କାର୍ଯ୍ୟପଛରେ ଜ୍ଞାତ, ଅଜ୍ଞାତ, ପ୍ରକାଶ୍ୟ, ଅପ୍ରକାଶ୍ୟ କାରଣ ଥାଏ । ପ୍ରବୃତ୍ତି ବା ଭାବ ସଂବେଗଗତ କାର୍ଯ୍ୟର କାରଣ ପ୍ରତ୍ୟକ୍ଷ ଜଗତ ବା ବାସ୍ତବ ଜଗତ କାର୍ଯ୍ୟକାରଣ ସମ୍ପର୍କଠାରୁ ଅଲଗା । ସମ୍ଭବ, ଅସମ୍ଭବ, ବାସ୍ତବ ଅବାସ୍ତବ ବା ଚେତନ ଅଚେତନର ଧାରଣ ପ୍ରବୃତ୍ତିପାବଲ୍ୟ ବେଳେ ନ ଥାଏ । କବିଗୁରୁ କାଳି ଦାସ 'ମେଘଦୂତରେ ତ' ଏଇ କଥା କହିଛନ୍ତି- "କାମାର୍ତ୍ତାହି ପ୍ରକୃତି କୃପଣାଶ୍ଚେତନା ଶ୍ଚେତନେଷୁ" । ସର୍ଜନ ଏକ ପ୍ରବୃତ୍ତି । ବ୍ୟକ୍ତିକ ଓ ସାମାଜିକ ଭାବସଂବେଗ ପ୍ରାବଲ୍ୟ ମଧ୍ୟରେ ସୃଷ୍ଟିକାମନା ଦେଖାଦିଏ । ଏହା ଲୌକିକ ପୁଣି ଅଲୌକିକ ।

ମୁଁ ଜଣେ ସାମାଜିକ ଜୀବ । ସଂସ୍କୃତିକ ପରିବେଶ ମଧ୍ୟରେ ମୁଁ ବନ୍ଦୀ । ଜଣେ ସାଧାରଣ ମଣିଷ ରୂପେ ମୋର, ଇଚ୍ଛା, ଆକାଂକ୍ଷା, ଚିନ୍ତା, ଚେତନା, ଅନୁଭୂତି, ଉପଲବ୍ଧି, କ୍ରିୟା, ପ୍ରତିକ୍ରିୟାକୁ ପରିବାର, ପରିଜନ, ପ୍ରତିବେଶୀ ବନ୍ଧୁ ପ୍ରଭୃତିଙ୍କୁ ନଜଣାଇ ରହିପାରେନା । ମୋର ସୁଖ ଦୁଃଖରେ ଅନ୍ୟମାନଙ୍କୁ ସହଭାଗୀ କରି ମୁଁ ଯେପରି ଆନନ୍ଦ ପାଏ, ସେହିପରି ସମ୍ବେଦନା ଓ ସହାନୁଭୂତି ଲାଭ କରେ । ନିଜକୁ ଅନ୍ୟ ସହିତ, ମିଶାଇଦେବା ଫଳରେ ଆନନ୍ଦାନୁଭୂତି କେବଳ ବଢ଼ିଯାଏନି, ଦୁଃଖ ବି ଊଣା ହୁଏ ।

ବିଶେଷ ମୁହୂର୍ତ୍ତରେ ଗୋଟିଏ ଗୋଟିଏ ଘଟଣା, ପରିବେଶ, ପରିସ୍ଥିତି ବା ଭାବ ମୋ ମନରେ ସୃଷ୍ଟି କରେ ମଧୁର-ବିଧୁର ଅବ୍ୟକ୍ତ ଯନ୍ତ୍ରଣା; ଅପୂର୍ବ ଅଲୌକିକ

ଅନୁଭୂତି । ସେଯନ୍ତଣା, ସେ ଅନୁଭୂତିର ଉତ୍ପ୍ଲାବନ ମୋର ହୃଦୟ, ପ୍ରାଣ ଓ ଆତ୍ମାକୁ ମନ୍ଥନ କରି ବିଚଳିତ ଓ ବିହ୍ୱଳିତ କରିଦିଏ । ଶୟନେ, ସ୍ୱପନେ ଓ ଜାଗରଣରେ ଅନୁଭୂତ ଏଇ ଯନ୍ତଣାରେ ବିବଶ ହୋଇ ଉପଲବ୍ଧଭାବର ଅଭିବ୍ୟକ୍ତି ପାଇଁ ପ୍ରାଣ ବ୍ୟାକୁଳ ହୋଇଉଠେ । ସେ ଭାବକୁ ବଂଧୁ, ପରିବାର, ପରିଜନ ସହିତ ଆଳାପ-ବିଳାପ ମଧ୍ୟରେ ସୀମିତ ରଖିବାକୁ ଚାହେଁନା । ଏହି ଆତ୍ମରତି ଓ ଭାବ ବିହ୍ୱଳତାକୁ ସ୍ଥାୟୀ କରିବା ପାଇଁ ଅକ୍ଷରଶିଳ୍ପର ଆଶ୍ରୟ ନିଏ । ଅଭିବ୍ୟକ୍ତି ମଧ୍ୟରେ ଅପାର ଅନିର୍ବଚନୀୟ ଆନନ୍ଦ, ତୃପ୍ତି ଓ ସ୍ୱସ୍ତି ମିଳେ । ଅଥଚ ସବୁ ସମୟରେ ଏସବୁ ସାକାର ହୋଇ ପାରେନା । କାରଣ ଭଗବତ୍ କୃପା ବିନା ସୃଷ୍ଟି କାମନାର ସୁଷ୍ଟୁ ପ୍ରକାଶ ଘଟେନା ।

ସୁନ୍ଦର ସୃଷ୍ଟି, ସାଧନା ଓ ସାମର୍ଥ୍ୟର ଯୁଗପତ୍ ପ୍ରକାଶ । ସାମର୍ଥ୍ୟ ଐଶ୍ୱରିକ କିନ୍ତୁ ସାଧନା ବ୍ୟକ୍ତିକ । ଐଶ୍ୱରିକ ଆଶୀର୍ବାଦରୁ ମୁଁ କିଞ୍ଚିତ୍ ସୃଷ୍ଟି କ୍ଷମତା ଲାଭ କରିଛି । ସ୍ୱର୍ଗତଃ ପିତାଙ୍କ ସାହିତ୍ୟ ଓ ସଂସ୍କୃତି ପ୍ରୀତି, ମୋର ଶିକ୍ଷକତା ଓ ଭାଷା ସାହିତ୍ୟ ଅଧ୍ୟାପନା ବୃତ୍ତି ବାଣୀଆରାଧନାରେ ସହାୟକ ହୋଇଥିଲା ବେଳେ ମୋର ବହୁମୁଖୀ ଅଭିପ୍ସା ଓ ସଂସାରିକ ଜଞ୍ଜାଳ ଏ କ୍ଷେତ୍ରରେ ଅନ୍ତରାୟ ସୃଷ୍ଟି କରିଥାଏ ।

ଅନ୍ୟ ସ୍ରଷ୍ଟାମାନଙ୍କ ପରି ସର୍ଜନର ଆଦିକାଳରେ ମୁଁ ଥିଲି ରୋମାଣ୍ଟିକ୍ । ସାହିତ୍ୟର ଛାତ୍ର ଓ ଅଧ୍ୟାପନା ବୃତ୍ତିରେ ପ୍ରବେଶ କଲାପରେ କ୍ରମଶଃ ଗଦ୍ୟ ସାହିତ୍ୟ ବିଶେଷତଃ ପ୍ରବନ୍ଧ-ସମାଲୋଚନା ଓ ରମ୍ୟରଚନା ପ୍ରତି ଆକୃଷ୍ଟ ହୋଇ ପଡ଼ିଲି । ସ୍ୱୈରାଚାରୀ କଳ୍ପନା ବିଳାସ ଅପେକ୍ଷା ବାସ୍ତବତା ପ୍ରତି ହେଲି ଅଧିକ ସଚେତନ । ଏହି ସଚେତନତା ମୋ ଲିଖିତ ଗଦ୍ୟ ପଦ୍ୟ, ମୌଳିକ ଓ ଅନୁଦିତ ରଚନାରେ ପ୍ରତିଫଳିତ । ସମୀକ୍ଷା ଓ ସଂସ୍କୃତି ପ୍ରତି ମୋର ଅଧିକ ଆସକ୍ତି ମୌଳିକ ସର୍ଜନାତ୍ମକ ସୃଷ୍ଟି ଦିଗରେ ଅନ୍ତରାୟ ସୃଷ୍ଟି କରିଛି, ଏହା ମୁଁ ଦ୍ୱିଧାହୀନ ଭାବେ ସ୍ୱୀକାର କରୁଛି ।



# କଥାଶିଳ୍ପୀ ଫକୀରମୋହନ ଓ ପ୍ରେମଚନ୍ଦଙ୍କ କଥା ସାହିତ୍ୟରେ ସାମାଜିକ ସ୍ପନ୍ଦନ

ଯେଉଁ ସ୍ରଷ୍ଟାମାନଙ୍କ ଅମର ଲେଖନୀରସ୍ପର୍ଶରେ ଆଧୁନିକ ଭାରତୀୟ ସାହିତ୍ୟ ବିଶ୍ୱସାହିତ୍ୟ ଜଗତରେ ଗୌରବାନ୍ୱିତ ହୋଇଛି, ସେହିମାନଙ୍କ ମଧ୍ୟରୁ ଫକୀରମୋହନ ସେନାପତି(୧୮୪୩-୧୯୧୮)ଏବଂ ପ୍ରେମଚନ୍ଦ ରାୟଙ୍କ (୧୮୮୦-୧୯୩୬) ନାମ ବିଶେଷ ସ୍ମରଣୀୟ । ସ୍ରଷ୍ଟାଦ୍ୱୟ ଓଡ଼ିଆ ଓ ହିନ୍ଦୀ ସାହିତ୍ୟରେ ସେମାନଙ୍କ ବହୁମୁଖୀ ପ୍ରତିଭାର ନବଦିଗନ୍ତ ଉନ୍ମୋଚନ କରିଯାଇଛନ୍ତି । ବିଶେଷତଃ ଗଳ୍ପ ଓ ଉପନ୍ୟାସ କ୍ଷେତ୍ରରେ ସେମାନେ ସ୍ଥାପନ କରିଯାଇଛନ୍ତି ଅକ୍ଷୟ କୀର୍ତ୍ତିସ୍ତମ୍ଭ । ପ୍ରୋକ୍ତ ପ୍ରବନ୍ଧର ସୀମିତ କଳେବର ମଧ୍ୟରେ କଥାଶିଳ୍ପୀ ଦ୍ୱୟଙ୍କ ମହାନ୍ ଅବଦାନର ତୁଳନାତ୍ମକ ଆକଳନ କରାଯାଇଛି ।

ଦୁଇ ପ୍ରତିଭାଙ୍କ ସୃଷ୍ଟି ପ୍ରକ୍ରିୟାର ଉନ୍ମେଷ, ବିକାଶ ଓ ଉତ୍ତରଣ କ୍ଷେତ୍ରରେ ତାରତମ୍ୟ ପରିଲକ୍ଷିତ ହେବା ସ୍ୱାଭାବିକ, କାରଣ କଳାକାରର ପ୍ରତିଭୂ ଏବଂ ବ୍ୟକ୍ତିକ ଚିନ୍ତା, ଚେତନା ଓ କଳ୍ପନାର ଧାରକ ଏବଂ ବାହକ । ପୁଣି ପାରିବାରିକ, ସାମାଜିକ ପରିବେଶ ସ୍ରଷ୍ଟାମାନସର ନିୟାମକ । ଫକୀରମୋହନ ଓ ପ୍ରେମଚନ୍ଦଙ୍କ ଆବିର୍ଭାବକାଳ ଓ ସାଧନାକାଳ ମଧ୍ୟରେ କିଞ୍ଚିତ୍ ପାର୍ଥକ୍ୟ ଥିଲେ ବି ସାମାଜିକ ଓ ରାଜନୈତିକ ପରିବେଶ ନ୍ୟୂନାଧିକେ ପ୍ରାୟ ସମାନ । ତାହାଥିଲା ଏକ କ୍ଷୟଶୀଳ ପ୍ରାଚୀନ ସମାଜ ଓ ଅନ୍ୟ ଏକ ଉଦୟଶୀଳ ନବୀନ ସମାଜର ଯୁଗସନ୍ଧି । ଏହି କାଳରେ ଇଂରେଜ ସରକାର, ଜମିଦାର, ସାହୁକାର ଆଦି ଶୋଷକ ଗୋଷ୍ଠୀଙ୍କ ଶୋଷଣରେ ପିଷ୍ଟ ପାରମ୍ପରିକ କୁସଂସ୍କାର ଗ୍ରସ୍ତ ସରଳ ଜନତା ଏବଂ ପରମ୍ପରାଠାରୁ ଦୂରେଇ ଯାଉଥିବା ଇଂରେଜୀ ଶିକ୍ଷା ପ୍ରାପ୍ତ ଦେଶୀ ସାହେବ ଗୋଷ୍ଠୀଙ୍କ ବିଦେଶ ମୁଖୀ ଆଭିମୁଖ୍ୟ, ସ୍ରଷ୍ଟାମାନସକୁ ସ୍ପନ୍ଦିତ କରିଥିଲେ । ଏଇ ଚଳନ୍ତି ଜୀବନର ହୃଦ୍ୟ ଚିତ୍ର ଉଭୟସ୍ରଷ୍ଟାଙ୍କ କଥାଶିଳ୍ପରେ କଳାତ୍ମକ ରୂପେ ଅଙ୍କିତ । ଅଧିକନ୍ତୁ ଫକୀରମୋହନଙ୍କ ଐତିହାସିକ ପୃଷ୍ଠଭୂମିରେ ରଚିତ 'ଲଛମା'(୧୯୦୧-୦୩)ରେ ବର୍ଗୀ ଅତ୍ୟାଚାରିତ ଓଡ଼ିଶାର ଚିତ୍ର ଉପଲବ୍ଧ । ଅତୀତ ନୌବାଣିଜ୍ୟ ପୃଷ୍ଠଭୂମିରେ ମଧ୍ୟ ସେ କେତୋଟି ଗଳ୍ପ ଲେଖିଛନ୍ତି । ସେନାପତିଙ୍କ ରଚିତ ଅନ୍ୟ ତିନୋଟି ଉପନ୍ୟାସ- 'ଛମାଣ ଆଠଗୁଣ୍ଠ'(୧୮୯୭-୯୯), 'ମାମୁଁ'(୧୯୧୩) ଏବଂ 'ପ୍ରାୟଶ୍ଚିତ୍ତ'(୧୯୧୫)ରେ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରୁ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ ପର୍ଯ୍ୟନ୍ତ ପରିବ୍ୟାପ୍ତ ସମାଜର ଚିତ୍ର ପ୍ରତିଫଳିତ, ଅନ୍ୟପକ୍ଷରେ ମୁନିସୀ ପ୍ରେମଚନ୍ଦଙ୍କ ଗଳ୍ପ-ଉପନ୍ୟାସରେ ଊନବିଂଶ ଶତାବ୍ଦୀର ଶେଷ ଦଶକରୁ ବିଂଶ ଶତାବ୍ଦୀର ଚତୁର୍ଥ ଦଶକ ପର୍ଯ୍ୟନ୍ତ ସମାଜର ବାସ୍ତବ ଚିତ୍ର ଅଙ୍କିତ । ବରଂ ଫକୀରମୋହନଙ୍କ ତିରୋଧାନ ପରେ ପ୍ରେମଚନ୍ଦଙ୍କ ଲେଖନୀ ଅଧିକ ସକ୍ରିୟ ଅଧିକ ଫଳପ୍ରସୂ ଓ ଯଶସ୍ୱୀ ହୋଇଛି ।

ସେନାପତି ୧୮୬୫ରୁ ଲେଖାଲେଖି ଆରମ୍ଭ କରିଥିଲେ ମଧ୍ୟ ଦ୍ୱିତୀୟପତ୍ନୀ କୃଷ୍ଣାକୁମାରୀଙ୍କ ବିୟୋଗପରେ(୧୮୯୪) ତାଙ୍କ ଶ୍ରେଷ୍ଠ କୃତି କବିତା, ଗଳ୍ପ-

ଉପନ୍ୟାସାଦି ପ୍ରଣୀତ । ପ୍ରେମଚନ୍ଦ ୧୯୦୧ରୁ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିଥିଲେ । ସେ ପ୍ରଥମରୁ ନିଜନାମ ଧନପତ୍ ରାୟ ପରିବର୍ତ୍ତେ ନବାବରାୟ ଛଦ୍ମ ନାମରେ ଲେଖୁଥିଲେ । ସେ ଉର୍ଦ୍ଦୁଭାଷାରେ ଲେଖିଲେ ପ୍ରଥମ ଉପନ୍ୟାସ 'ଅସରା-ମ-ଅବିଦ' । ତାଙ୍କର ପ୍ରଥମ ଗଳ୍ପ ସଂକଳନ 'ସୋନ-ଏ-ରତନ' ମଧ୍ୟ ଉର୍ଦ୍ଦୁଭାଷାରେ ଲେଖାଯାଇଥିଲା । କିନ୍ତୁ ଏହା ସରକାର ବିରୋଧୀ ଲେଖାଭାବେ ୧୯୦୮ରେ ବାଜ୍ୟାପ୍ତ ହେଲା । ସେ ଲେଖକୀୟ ନାମ ବଦଳାଇ ମୃତ୍ୟୁ ପର୍ଯ୍ୟନ୍ତ ପ୍ରେମଚନ୍ଦ ନାମରେ ଲେଖିଲେ । ଅନୁରୂପ ଭାବେ ଫକୀରମୋହନ ପିତୃ-ମାତୃଦତ୍ତ ପ୍ରଥମନାମ ବ୍ରଜମୋହନ ପୀରଙ୍କୁ ସମର୍ପିତ ହେବାପରେ ଫକୀରମୋହନ ହୋଇଥିଲା । ସେ ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠିତ ହେବାପୂର୍ବରୁ 'ଶ୍ରୀ' ଓ 'ଧୂର୍ଜଟୀ' ନାମରେ ଲେଖୁଥିଲେ । ପ୍ରେମଚନ୍ଦ ପ୍ରଥମେ ଉର୍ଦ୍ଦୁ ଭାଷାରେ ସାହିତ୍ୟ ସୃଷ୍ଟି କଲା ପରି ଫକୀରମୋହନ ଜନସମାଜର ଦୁରବସ୍ଥା ଜଣାଇ ବଙ୍ଗଳା ପତ୍ରିକା 'ସୋମପ୍ରକାଶ'କୁ ପ୍ରଥମେ ପତ୍ର ଲେଖୁଥିଲେ । ପ୍ରେମଚନ୍ଦ ପ୍ରଥମେ ଉର୍ଦ୍ଦୁଭାଷାରେ ଲେଖିଥିବା ଗଳ୍ପ-ଉପନ୍ୟାସର ପାଠକୀୟ ଅନାଦୃତି ଯୋଗୁଁ ହିନ୍ଦୀରେ ଲେଖି ଚାଲିଲେ ।

ସେନାପତିଙ୍କ ପୂର୍ବୋ ଲ୍ଲିଖିତ ୪ଟି ଉପନ୍ୟାସ ଓ ୨୦ଟି ଗଳ୍ପ(୧୮୯୮-୧୯୧୬) 'ଫକୀରମୋହନ ଗ୍ରନ୍ଥାବଳୀ'ରେ ସଂକଳିତ । ତାଙ୍କର ପ୍ରଥମ ଗଳ୍ପ 'ଲଛମନିଆ'(୧୮୬୮) ଏବେ ମଧ୍ୟ ଦୁଷ୍ପ୍ରାପ୍ୟ । ତେଣୁ ୧୮୯୮ରେ ରଚିତ 'ରେବତୀ' ଓଡ଼ିଆ ସାହିତ୍ୟର ପ୍ରଥମ କ୍ଷୁଦ୍ରଗଳ୍ପ । ସମୀକ୍ଷକ ସୁରେନ୍ଦ୍ର ମହାନ୍ତିଙ୍କ ଦୃଷ୍ଟିରେ ଏହା ଭାରତୀୟ ବାଙ୍ମୟରେ ପ୍ରଥମ ସାର୍ଥକ ଗଳ୍ପ । ଲେଖକ ଜୀବନର ପ୍ରାରମ୍ଭରେ ସେନାପତି ପାଠ୍ୟ ପୁସ୍ତକ ରଚନା ଓ ରାମାୟଣ, ମହାଭାରତ ଏବଂ ଖିଳହରିବଂଶର ସାବଲୀଳ ଅନୁବାଦ କରିଥିଲେ । ପରିଣତ ବୟସରେ ସେ କାବ୍ୟ, କବିତା, ଗଳ୍ପ ଉପନ୍ୟାସ, ପ୍ରବନ୍ଧ, ଜୀବନୀ, ଆତ୍ମଜୀବନ ଚରିତ ରଚନାରେ-ମନ ବଳାଇଥିଲେ । ୧୮୯୪ପରେ ତାଙ୍କର ଶ୍ରେଷ୍ଠକୃତି 'ପୁଷ୍ପମାଳା'(୧୮୯୪), ଉପହାର(୧୮୯୫) 'ଅବସରବାସରେ(୧୯୦୮), 'ପୂଜାଫୁଲ'(୧୯୧୨), ପ୍ରାର୍ଥନା(୧୯୧୨), 'ଧୂଳି'(୧୯୧୨) - ପ୍ରଭୃତିକବିତା ସଂକଳନ, "ବୌଦ୍ଧାବତାରକାବ୍ୟ", ବହୁ ପ୍ରବନ୍ଧ, ଆତ୍ମଜୀବନ ଚରିତ ଏବଂ ପୂର୍ବୋଲିଖିତ ଉପନ୍ୟାସ ଓ ଗଳ୍ପ ସମୂହ ରଚିତ ହୋଇଥିଲା ।

କଥାଶିଳ୍ପୀ ପ୍ରେମଚନ୍ଦ 'କର୍ବଲା' ଓ 'ସଂଗ୍ରାମ' ନାଟକ ଦୁଇଟିର ପ୍ରଣେତା । ତାଙ୍କ ଲିଖିତ ପ୍ରବନ୍ଧ ଗୁଡ଼ିକ 'ତ୍ୟାଗ ଔର ତଲବାର' ପ୍ରବନ୍ଧ ସଂଗ୍ରହରେ ସଂକଳିତ । ସେ ମଧ୍ୟ ଟଲଷ୍ଟୟଙ୍କ କେତୋଟି ଗଳ୍ପର ଅନୁବାଦ କରିଯାଇଛନ୍ତି । ଏତଦ୍ ସତ୍ତ୍ୱେ ପ୍ରେମଚନ୍ଦଙ୍କ ପ୍ରତିଭାର ଚରମପ୍ରକାଶ ଘଟିଛି କଥାସାହିତ୍ୟର ଉଭୟ ବିଭାଗରେ । ବିଶେଷତଃ ସେ ଔପନ୍ୟାସିକ ଭାବେ ପ୍ରସିଦ୍ଧି ଲାଭ କରିଛନ୍ତି । ତାଙ୍କର ମୁଖ୍ୟ ଉପନ୍ୟାସିକକୃତି ହେଉଛି- 'ସେବାସଦନ'(୧୯୧୬-୧୭) 'ପ୍ରେମାଶ୍ରମ', 'ରଙ୍ଗଭୂମି', (୧୯୨୨-୨୪),କାୟାକଳ୍ପ (୧୯୨୪-୨୬) ବରଦାନ, 'ନିର୍ମଳା'(୧୯୨୪-୨୬), 'ଗବନ' (୧୯୩୧), 'କର୍ମଭୂମି'(୧୯୩୧), 'ପ୍ରତିଜ୍ଞା', ଗୋଦାନ(୧୯୩୨-୩୫) ଏବଂ ଅସଂପୂର୍ଣ୍ଣ ଉପନ୍ୟାସ 'ମଙ୍ଗଳସୂତ୍ର' ।

କଥାଶିଳ୍ପୀଙ୍କ ଉଲ୍ଲେଖଯୋଗ୍ୟ ଗଳ୍ପ ସଂକଳନ ଗୁଡ଼ିକ ହେଉଛି- 'ସପ୍ତରୋଜ', 'ନବନିଧି', 'ପ୍ରେମ ପୂର୍ଣ୍ଣିମା' 'ପ୍ରେମପ୍ରମୋଦ', 'ପ୍ରେମ ପଚିଶ' ଆଦି । ଗାଳ୍ପିକଙ୍କ ଗଳ୍ପର ସଂଖ୍ୟା ୨୨୫ରୁ ଅଧିକ । ପରେ ଆଠଖଣ୍ଡରେ ବିଭକ୍ତ 'ମାନସରୋବର' କାହାଣୀ ସଂଗ୍ରହରେ ତାଙ୍କ ଗଳ୍ପ ସମୂହ ପ୍ରକାଶିତ ।

ଦୀର୍ଘଜୀବୀ ଫକୀରମୋହନ ଓଡ଼ିଆଜାତିର ଆତ୍ମରକ୍ଷା ଓ ଆତ୍ମପ୍ରତିଷ୍ଠାର ସଂଗ୍ରାମରେ ଥିଲେ ଅଧିନାୟକ । ୧୮୬୮ରୁ ୧୯୧୮ ଏଇ ପଚାଶ ବର୍ଷର ସଂଗ୍ରାମ ମୁଖର ଓଡ଼ିଶା ଇତିହାସର ସେ ଥିଲେ କେନ୍ଦ୍ରସ୍ଥଳରେ । ଶୈଶବରୁ ପିତୃମାତୃ ସ୍ନେହ ବଞ୍ଚିତ, କୈଶୋରରୁ ପେଟ ପୋଷିବା ପାଇଁ ମେଟ୍ ଓ ଦରଜୀ ରୂପେ କାର୍ଯ୍ୟ, ୪ଅଣା ବେତନ ଦେଇନପାରି ପଞ୍ଚମ ଶ୍ରେଣୀରୁ ପଢ଼ା ବନ୍ଦହେବା, ମାତ୍ର ଅଢ଼େଇ ଟଙ୍କା ବେତନରେ ଶିକ୍ଷକ ରୂପେ ଯୋଗଦାନ ଆଦି ଘଟନା ତାଙ୍କର ଦୁଃଖ ଦୈନ୍ୟ ଓ ଅଭାବୀ ତଥା ସଂଗ୍ରାମୀ ଜୀବନର ସୂଚନା ଦେଇଥାଏ । ସେ ପରିସ୍ଥିତି ଚକ୍ରରେ ବିଭିନ୍ନ ଗଡ଼ଜାତ ମାହାଲରେ ଉଚ୍ଚ ପ୍ରଶାସକ ପଦ ପାଇଥିଲେ ମଧ୍ୟ ସ୍ୱାଭିମାନ, ବଶତଃ ସେଇ ଉଚ୍ଚପଦକୁ ବାରମ୍ବାର ତ୍ୟାଗକରି କାଠ ବ୍ୟବସାୟ ପରି କର୍ମ କରିବାକୁ ବାଧ୍ୟ ହୋଇଥିଲେ । ତାଙ୍କର ବୈବାହିକ ଜୀବନ ରୁକ୍ଷ ଓ ନିଷ୍ଠୁର ଥିଲା । କଟୁଭାଷିଣୀ ପ୍ରଥମାପତ୍ନୀ ଲୀଳାବତୀଙ୍କ ଯୋଗୁଁ ହୋଇଥିଲା ଦୁର୍ବିସହ । ପ୍ରଥମପତ୍ନୀଙ୍କ ବିୟୋଗପରେ କରୁଣା କୋମଳା ସ୍ନେହମୟୀ ଓ ପ୍ରେମମୟୀ କୃଷ୍ଣାକୁମାରୀଙ୍କ ପାଣିଗ୍ରହଣ ପରେ ଦାମ୍ପତ୍ୟ ଜୀବନ ହୋଇଥିଲା ମଧୁମୟ । ଜାତୀୟ ପାର୍ଶ୍ୱ ପରିବର୍ତ୍ତନ, ସ୍ୱକୀୟ ସାଧନା ଓ ନିଷ୍ଠାବଳରେ ପରବର୍ତ୍ତୀ କାଳରେ ସେ ହେଲେ ବହୁକ୍ଷେତ୍ରରେ ଓଡ଼ିଶାରେ ପ୍ରଥମ । ପ୍ରଥମ ଛାପାଖାନା ସ୍ଥାପୟିତା, ସାହିତ୍ୟ ପତ୍ରିକାର ସମ୍ପାଦକ, ବିଭିନ୍ନ ଗଡ଼ଜାତ ରାଜ୍ୟରେ ଉଚ୍ଚ ଓଡ଼ିଆ ପ୍ରଶାସକ ଭାବେ ବି ସେ ପ୍ରଥମ । ପୁଣି ସେ ବ୍ୟକ୍ତିନିଷ୍ଠ କବିତା, ଭ୍ରମଣକାହାଣୀ, ରମ୍ୟରଚନା ସୃଷ୍ଟିରେ ମଧ୍ୟ ହେଲେ ପ୍ରଥମ । ଫକୀରମୋହନ ଯଥାର୍ଥ ଐତିହାସିକ ଉପନ୍ୟାସ 'ଲଛମା'ର ପ୍ରଣେତା ଓ ପ୍ରଥମ କାଳଜୟୀ ସାମାଜିକ ଉପନ୍ୟାସ 'ଛମାଣ ଆଠଗୁଣ୍ଠ'ର ରଚୟିତା । ସେନାପତିଙ୍କ ଅନ୍ୟ ଦୁଇଟି ଉପନ୍ୟାସ 'ମାମୁଁ' ଓ 'ପ୍ରାୟଶ୍ଚିତ୍ତ' ମଧ୍ୟ ଆଙ୍ଗିକ ଦୃଷ୍ଟିରୁ ଭିନ୍ନ ଭିନ୍ନ । ପ୍ରଥମ ଉପନ୍ୟାସଟି ପାରିବାରିକ ଓ ଶେଷୋକ୍ତ ଉପନ୍ୟାସଟି ସମସ୍ୟାମୂଳକ । ଫକୀରମୋହନ ହେଉଛନ୍ତି ପ୍ରଥମ ଭାରତୀୟ ସ୍ରଷ୍ଟା, ଯେ ଡାରଉଇନ ତତ୍ତ୍ୱକୁ ଉପନ୍ୟାସରେ ପ୍ରୟୋଗ କରିଛନ୍ତି । ସେନାପତି ଜଣେ ଯଶସ୍ୱୀ ସ୍ରଷ୍ଟା । ସେ ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ଦିଗପାଳ; ସମୀକ୍ଷକମାନଙ୍କ ଦ୍ୱାରା 'ସରସ୍ୱତୀ' 'ଯୁଗସ୍ରଷ୍ଟା'ବ୍ୟାସକବି ଓ 'କଥାସମ୍ରାଟ' ରୂପେ ସମ୍ମାନିତ ।

ଫକୀରମୋହନଙ୍କ ସହିତ ପ୍ରେମଚନ୍ଦଙ୍କ ପାରିବାରିକ ଜୀବନର କିଛି ସାମ୍ୟ ଓ କିଛି ବୈଷମ୍ୟ ପରିଲକ୍ଷିତ ହୁଏ । ଅଳ୍ପ ବୟସରେ ପିତୃମାତୃ ବିୟୋଗ, ବିମାତାଙ୍କ ବଶବର୍ତ୍ତିନୀ, ପତିବିରୋଧ ଚାରିଣୀ, ରୁଚିହୀନା, କୁରୂପା ପ୍ରଥମାପତ୍ନୀଙ୍କ ଗୃହ ପରିତ୍ୟାଗ ଆଦି ଘଟନା ଓ ପରିବେଶ ଯୌବନରେ ପ୍ରେମଚନ୍ଦଙ୍କ ଜୀବନକୁ ଦୁର୍ବିସହ କରିଦେଇଥିଲେ । ଏଣ୍ଟ୍ରାନ୍ସ ପାଶ୍ୱପରେ ଅର୍ଥାଭାବରୁ ପୋଥିରେ ଡୋରିଦେଇ ଶିକ୍ଷକତା ବୃତ୍ତି ଅବଲମ୍ବନ କରିବାକୁ ବାଧ୍ୟ ହୋଇଥିଲେ । ପରେ ସେ ବି.ଏ ପାଶ୍ କରିଥିଲେ ।

ଫକୀରମୋହନଙ୍କ ଦାମ୍ପତ୍ୟ ଜୀବନରେ ଦ୍ୱିତୀୟପତ୍ନୀ କୃଷ୍ଣାକୁମାରୀଙ୍କ ଆବିର୍ଭାବ ଅନୁରୂପ ପ୍ରେମଚନ୍ଦଙ୍କ ଦଗ୍ଧ ଊଷର ଜୀବନରେ ଶିବରାଣୀଙ୍କ ଆଗମନ ଆହ୍ଲାଦନର ଅମୀୟ ହିଲ୍ଲୋଳ ସୃଷ୍ଟି କରିଥିଲେ । ଧର୍ମପତ୍ନୀଙ୍କ ବିମୋହନ ସ୍ପର୍ଶରେ କୁସୁମିତ ଓ ସୁରଭିତ ହୋଇ ଉଠିଥିଲା ସ୍ରଷ୍ଟାଦ୍ୱୟଙ୍କ ସୃଷ୍ଟି-କାନନ । ଉଭୟ ମହୀୟସୀ ମହିଳାଥିଲେ ସ୍ୱ ସ୍ୱ ସ୍ୱାମୀଙ୍କ ସୃଷ୍ଟିର ପ୍ରେରଣା-ଉତ୍ସ । କିନ୍ତୁ କୃଷ୍ଣା କୁମାରୀଙ୍କ ଅକାଳ ବିୟୋଗ ଫକୀରମୋହନଙ୍କ ପରିଣତ ଜୀବନକୁ ଶୋକବିଧୁର କରିଥିବା ବେଳେ ପ୍ରେମଚନ୍ଦଙ୍କମୃତ୍ୟୁର ପରବର୍ତ୍ତୀକାଳରେ ଶିବରାଣୀ ଜୀବିତ ଥିଲେ । ସେ ଥିଲେ ଜଣେ ଲେଖିକା । ତାଙ୍କ ଲିଖିତ 'ପ୍ରେମଚନ୍ଦ ଘରମେ' କଥାଶିଳ୍ପୀଙ୍କ ସାଧନା ଓ ଜୀବନ ଦୃଷ୍ଟି ଉପରେ ଆଲୋକପାତ କରିଥାଏ। ତାଙ୍କର ଦ୍ୱିତୀୟ ପୁତ୍ର ଅମୃତ ରାୟଙ୍କ 'କଲମକି ସିପାହୀ' ଜୀବନୀ ପୁସ୍ତକଟି ସ୍ୱପିତାଙ୍କ ପାରିବାରିକ ଓ ଲେଖକୀୟ ଜୀବନ ଉପରେ ରେଖାପାତ କରିଥାଏ । ପକ୍ଷାନ୍ତରେ ସେନାପତିଙ୍କ ପୁତ୍ର ମୋହିନୀ, ଜୀବଦ୍ଦଶାରେ ବା ମୃତ୍ୟୁପରେ ଅନୁରୂପ ସହାୟକ ନଥିଲେ ।

ବାଲ୍ୟ ବିଧବା ଶିବରାଣୀଙ୍କ ସହିତ ପ୍ରେମଚନ୍ଦଙ୍କ ପରିଣୟ ଥିଲା ମଣିକାଞ୍ଚନସଂଯୋଗ । ଅଥଚ ଦୈବୀ-ଦୁର୍ବିପାକରୁ ଆବାଲ୍ୟ ରୋଗ, ଶୋକ ପାରିବାରିକ ଦୁଃଖ, ଯାତନା, ସନ୍ତାନ ଓ ପ୍ରାଣପ୍ରିୟା ପତ୍ନୀ ବିୟୋଗ ବିଧୁର ବେଦନା, ଅପରାହ୍ନ ଛାୟା ଛନ୍ନ ଆକାଶ ପରି ଫକୀରମୋହନଙ୍କ ହୃଦୟକୁ ମ୍ଳାନ ଓ କରୁଣ କରିଥିଲେ ମଧ୍ୟ ସେ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଗୋଧୂଳିର ଲକ୍ଷ ଐଶ୍ୱର୍ଯ୍ୟ ଦାନ କରିଯାଇଛନ୍ତି । (କଥାଶିଳ୍ପୀ ଫକୀରମୋହନଙ୍କ ଉପମା ଏକ ଅଧ୍ୟୟନ -ଗବେଷଣା ସନ୍ଦର୍ଭ ପୃ-୧୬୪) ।

ଫକୀରମୋହନଙ୍କ କଥା ସାହିତ୍ୟରେ ବ୍ୟକ୍ତି ଜୀବନର କାରୁଣ୍ୟ ପରୋକ୍ଷ ଭାବେ ବ୍ୟକ୍ତିନିଷ୍ଠତା ମଧ୍ୟରେ ରୂପାୟିତ ହୋଇଛି । କାରୁଣ୍ୟ ହିଁ ଶ୍ରେଷ୍ଠ ସୃଷ୍ଟି-ପ୍ରସୂ, ଏହା ସେ ନିଜ ଆତ୍ମ ଜୀବନୀରେ ସ୍ୱୀକାର କରିଯାଇଛନ୍ତି । (ଫକୀରମୋହନ ଗ୍ରନ୍ଥାବଳୀ(ଦ୍ର.ବ) ୧ମଖଣ୍ଡ, ପୃ-୧୯୬) ।

୧୯ ବର୍ଷ ବୟସରେ ପରିବାର ପ୍ରତିପୋଷଣ ପାଇଁ ପ୍ରେମଚନ୍ଦ ଶିକ୍ଷକତାକୁ ବୃତ୍ତିଭାବେ ଗ୍ରହଣ କରିଥିଲେ । ସେ ପ୍ରଥମେ ବେସରକାରୀ ବିଦ୍ୟାଳୟରେ ଓ ପରେ ସରକାରୀ ବିଦ୍ୟାଳୟରେ ଶିକ୍ଷକତା କରିଥିଲେ କିନ୍ତୁ ୨୨ ବର୍ଷ ଚାକିରୀ ପରେ କର୍ତ୍ତୃପକ୍ଷଙ୍କ ଦୁର୍ବ୍ୟବହାରରେ ସ୍ୱାଭିମାନୀ ପ୍ରେମଚନ୍ଦ ସରକାରୀ ଚାକିରୀ ପରିତ୍ୟାଗ କରି ବେସରକାରୀ ସ୍କୁଲରେ କାର୍ଯ୍ୟ କରିବା ସହିତ 'ସରସ୍ୱତୀ ପ୍ରେସ' ନାମକ ଛାପାଖାନା ସ୍ଥାପନ କରିଥିଲେ । ସେ ବିଷୟବୁଦ୍ଧି ସମ୍ପନ୍ନ ନଥିବାରୁ ଏହି ବ୍ୟବସାୟରେ କ୍ଷତିଗ୍ରସ୍ତ ହୋଇଥିଲେ, ଏତଦ୍ ବ୍ୟତୀତ ସେ 'ହଂସ' ନାମକ ଗଳ୍ପ ପତ୍ରିକା ତଥା ଅନ୍ୟ ପତ୍ର-ପତ୍ରିକାର ସମ୍ପାଦନା ସହ ମଧ୍ୟ ନିଜକୁ ସଂପୃକ୍ତ କରିଥିଲେ, ସେ ଜଣେ ସିନେମା କାହାଣୀ ଲେଖକ ଭାବେ ବମ୍ବେରେ ଏକବର୍ଷ(୧୯୩୪) ମଧ୍ୟ କାର୍ଯ୍ୟ କରିଥିଲେ । ପ୍ରେମଚନ୍ଦ ଶ୍ରାନ୍ତ, କ୍ଲାନ୍ତ ଓ ରୋଗଗ୍ରସ୍ତ ହୋଇ ବମ୍ବେରୁ ବନାରସ ଫେରି ଆସିଥିଲେ । କିନ୍ତୁ ଜୀବନର ଶେଷକାଳ ପର୍ଯ୍ୟନ୍ତ ସେ ସାହିତ୍ୟ ସାଧନାରୁ ବିରତ ହୋଇନଥିଲେ ।

ଫକୀରମୋହନଙ୍କର ନାଟକଭିନ୍ନ ସମସ୍ତ ସାହିତ୍ୟିକ ଆଙ୍ଗିକ ପ୍ରତି ଆକର୍ଷଣ

ଥିଲା । ପ୍ରେମଚନ୍ଦ ନାଟକ ଓ ପ୍ରବନ୍ଧ ରଚନା କରିଥିଲେ ମଧ୍ଯ ଗଳ୍ପ ଓ ଉପନ୍ୟାସ ସୃଷ୍ଟି ପ୍ରତି ତାଙ୍କର ବିଶେଷ ଆସକ୍ତି ଥିଲା । ସେ କୈଶୋରରୁ ପାରିବାରିକ ଦୁଃଖ ଯାତନା ଭୁଲିବା ପାଇଁ ଗଳ୍ପ -ଉପନ୍ୟାସ ପଢ଼ାରେ ମନ ଦେଇଥିଲେ । ସେ ବୁଝିଥିଲେ ଯେ ବାସ୍ତବ ଜୀବନର ଯଥାର୍ଥଚିତ୍ର ପରିବେଷଣ ପାଇଁ କଥାସାହିତ୍ୟ ହିଁ ଉପଯୁକ୍ତ । ଲୋକ ଚରିତ୍ର ଅନୁଧ୍ୟାନ କରି ତାହାକୁ ରୂପାୟନ ପାଇଁ ସେ ଗଳ୍ପ ଓ ଉପନ୍ୟାସ ରଚନାରେ ମନୋନିବେଶ କଲେ ।

ଉଭୟ ସ୍ରଷ୍ଟାଙ୍କ ସ୍ନେହାତୁର ସ୍ପର୍ଶକାତର ନିଃସଙ୍ଗମନ ସେମାନଙ୍କୁ ଅନ୍ତର୍ମୁଖୀ କଳ୍ପନା ପ୍ରବଣା କରିଥିଲା । ମହର୍ଷି ଟଲଷ୍ଟୟଙ୍କ ସାହିତ୍ୟା ଦର୍ଶ ଦ୍ୱାରା ଉଭୟ ଶିଳ୍ପୀ ପ୍ରଭାବିତ ହୋଇଥିଲେ । ଫକୀରମୋହନ ଥିଲେ ଭାରତୀୟ ପରମ୍ପରାର ସ୍ତାବକ । ଅନ୍ୟପକ୍ଷରେ ପ୍ରେମଚନ୍ଦ ମହାତ୍ମାଗାନ୍ଧୀ ଓ ମାର୍କ୍ସୀୟ ଦର୍ଶନ ପ୍ରତି ଆକୃଷ୍ଟ ଥିଲେ । ୧୯୨୦ ରୁ ୩୦ ମଧ୍ୟରେ ଭାରତରେ ଯେଉଁ ନବ ପ୍ରଗତିବାଦୀ ଧାରା ସୃଷ୍ଟି ହୋଇଥିଲା, ପ୍ରେମଚନ୍ଦ ଥିଲେ ତାହାର ଭଗୀରଥ । ୧୯୩୬ ଅପ୍ରେଲ ମାସରେ ଲକ୍ଷ୍ନୌରେ ଅନୁଷ୍ଠିତ ଭାରତୀୟ ପ୍ରୋଗ୍ରେସିଭ ଲେଖକ ଆନ୍ଦୋଳନର ସମ୍ମେଳନରେ ପ୍ରେମଚନ୍ଦ ହୋଇଥିଲେ ସଭାପତି । ହିନ୍ଦୀ ଓ ଉର୍ଦ୍ଦୁଭାଷା-ସାହିତ୍ୟ ଉନ୍ନତି କଳ୍ପେ ସେ ଅନ୍ତରଙ୍ଗ ବନ୍ଧୁ ଜୈନେନ୍ଦ୍ର କୁମାରଙ୍କ ସହ ହିନ୍ଦୁସ୍ତାନୀ ସଭା ନାମକ ସାହିତ୍ୟ ଅନୁଷ୍ଠାନ ଗଢ଼ିଥିଲେ ।

ତୁଳନାତ୍ମକ ଭାବେ ବିଚାର କଲେ କଥାଶିଳ୍ପୀ ଦ୍ୱୟଙ୍କ ଜୀବନ ଦୃଷ୍ଟି ଓ ସୃଷ୍ଟି ଆଭିମୁଖ୍ୟରେ ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ । ଉଭୟ ସ୍ରଷ୍ଟା ସଂସାର କ୍ଷେତ୍ରରେ ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହୋଇ ବାସ୍ତବ ଜୀବନର ନିବିଡ଼ ପରିଚୟ ଲାଭ କରିଥିଲେ । ଯଥାର୍ଥ ଜୀବନର ଆଲେଖ୍ୟ ଅଙ୍କନ, ସତ୍ୟ ଓ ନ୍ୟାୟରେ ପ୍ରତିଷ୍ଠା ଉଭୟଙ୍କ ସାହିତ୍ୟ ସୃଷ୍ଟିର ଲକ୍ଷ୍ୟ ଥିଲା । କିନ୍ତୁ ପରିଣତ ବୟସରେ ଫକୀରମୋହନ ଭାଗ୍ୟବାଦୀ, ଈଶ୍ୱର ବିଶ୍ୱାସୀ ଓ ଧର୍ମ ପରାୟଣ ହୋଇ ପଡ଼ିଥିଲା ବେଳେ ପ୍ରେମଚନ୍ଦ ଆମରଣ ଥିଲେ ବିପ୍ଳବୀ ଓ ନିରୀଶ୍ୱରବାଦୀ ।

ଫକୀରମୋହନ ଓ ପ୍ରେମଚନ୍ଦଙ୍କ ପ୍ରତ୍ୟକ୍ଷ ପ୍ରେରଣାଦାୟିନୀ ବୀଣାପାଣି ହେଲେ ଅଧଃପତିତ ଜାତି ଓ ଭାଷା । ଉଭୟ କଥାଶିଳ୍ପୀ ପରାଧୀନ ଜାତିର ଶୋଷଣ କଷଣ ଅନ୍ୟାୟ ଅତ୍ୟାଚାର ପିଷ୍ଟ ମଣିଷର ଚିତ୍ର ଅଙ୍କନ ଉପରେ ଅଧିକ ଧ୍ୟାନ ନିବେଶ କରିଛନ୍ତି । ଶିଳ୍ପୀ ଦ୍ୱୟଙ୍କ କଥାଶିଳ୍ପରେ ନଗର ତଥା ପଲ୍ଲୀ ପୃଷ୍ଠଭୂମିରେ ସଞ୍ଚରଣ କରୁଥିବା ସାଧାରଣ ଜନତାର ବାସ୍ତବ ଚିତ୍ର ଉପଲବ୍ଧ । ଫକୀରମୋହନ ବା ପ୍ରେମଚନ୍ଦ କେହି ପ୍ରଥମ ଓଡ଼ିଆ ବା ହିନ୍ଦୀ ଔପନ୍ୟାସିକ ନୁହନ୍ତି ଉଭୟ କଥା ସାହିତ୍ୟରେ ପୂର୍ବ ପ୍ରଚଳିତ କଳ୍ପନା ପ୍ରବଣତା ଓ ରୋମାନ୍ସ ଧର୍ମିତାକୁ ପରିହାର କରି ବାସ୍ତବ ମଣିଷର ଚିନ୍ତା କଳ୍ପନା କାର୍ଯ୍ୟ-କରଣିର ଜୀବନ୍ତ ଆଲେଖ୍ୟ ଅଙ୍କନରେ ମନୋନିବେଶ କରିଛନ୍ତି । ଏଥିରେ ରହିଛି ସ୍ୱାଭାବିକତା ଓ ବିଶ୍ୱାସଯୋଗ୍ୟତା ଉପରେ ପ୍ରାଧାନ୍ୟ । ପୁଣି ନଗରଜୀବନ ନୁହେଁ, ପଲ୍ଲୀଜୀବନ ଚିତ୍ରଣ ଦିଗରେ କଥାଶିଳ୍ପୀ ଦ୍ୱୟ ଅଧିକ ତତ୍ପର ହୋଇଛନ୍ତି । ଫକୀରମୋହନ ଓ ପ୍ରେମଚନ୍ଦଙ୍କ ନିବିଡ଼ ଅନୁଭୂତି ଓ ଉପଲବ୍ଧି ପଲ୍ଲୀ ଜୀବନ ଉପରେ ଥିବାରୁ ସେମାନଙ୍କ ଗଳ୍ପ-ଉପନ୍ୟାସ ହୋଇଛି ଜୀବନ୍ତ ଓ ଉପଭୋଗ୍ୟ ।

'ଛମାଣ ଆଠଗୁଣ୍ଠ'ରେ ଅବହେଳିତ ପଲ୍ଲୀବାସୀ ଜୀବନ୍ତମଣିଷ ଏବଂ ସେମାନଙ୍କ ମୁଖର ଭାଷା ଭାରତୀୟ ସାହିତ୍ୟରେ ପ୍ରଥମଥର ପାଇଁ ବିଶିଷ୍ଟ ସ୍ଥାନ ଅଧିକାର କଲା । କଥାସାହିତ୍ୟକୁ ଗଣତାନ୍ତ୍ରିକ କଳାରେ ପରିଣତ କରିବାରେ ଫକୀରମୋହନ ହିଁ ଭାରତୀୟ ସାହିତ୍ୟରେ ଅଗ୍ରଣୀ ହେଲେ । ପ୍ରେମଚନ୍ଦଙ୍କ ଉତ୍ତର ଜୀବନରେ ରଚିତ ଉପନ୍ୟାସ ଓ ଶ୍ରେଷ୍ଠ କୃତି 'ଗୋଦାନ'ରେ ଏହି ଆଭିମୁଖ୍ୟର ବିବର୍ତ୍ତିତ ରୂପ ପ୍ରତିଫଳିତ । ଉଭୟ ସ୍ରଷ୍ଟାଙ୍କ ଚିତ୍ରିତ ପୁରୁଷ ଓ ନାରୀଙ୍କ ଚରିତ୍ର କୌଣସି ଆଦର୍ଶ ଲୋକର ପ୍ରତିବିମ୍ବନ ନୁହେଁ-ବାସ୍ତବ ଜଗତର ମୁକୁର; ଏଥିରେ ଉଚ୍ଚ, ଧର୍ମ ନିର୍ବିଶେଷରେ ସମାଜରେ ସମ୍ମାନନୀୟ ବା ଅପାଙ୍‌କ୍ତେୟ ଜନତା ସମସ୍ତେ ସ୍ଥାନ ପାଇଛନ୍ତି । ଉଭୟ ଶିଳ୍ପୀଙ୍କ କଥା ଜଗତରେ ସମସାମୟିକ ସମସ୍ୟାର ବିଶ୍ଳେଷଣ ମୁଖ୍ୟସ୍ଥାନ ଗ୍ରହଣ କରିଛି । ଏ ସମସ୍ୟା କେବଳ ଓଡ଼ିଆ ବା ଉତ୍ତର ଭାରତର ସମସ୍ୟା ନୁହେଁ, ଗଭୀର ଦୃଷ୍ଟିରେ ତାହାଥିଲା ତଦାନୀନ୍ତନ ସମଗ୍ର ଭାରତବର୍ଷର ସମସ୍ୟା ।

ଫକୀରମୋହନ ଏବଂ ପ୍ରେମଚନ୍ଦଙ୍କ କଥାସାହିତ୍ୟରେ ଉତ୍‌ଥାପିତ ସମସ୍ୟାମାନଙ୍କ ମଧ୍ୟରେ ଶୋଷଣ ହିଁ ଥିଲା ମୁଖ୍ୟ ସମସ୍ୟା । ବ୍ରିଟିଶରାଜର ପରିବର୍ତ୍ତିତ ପରିବେଶରେ ରାଜା, ଜମିଦାର, ସାହୁକାର, ସରକାରୀ କର୍ମଚାରୀ, ଜମିଦାରଙ୍କ କର୍ମଚାରୀ, ପୁଲିସ, ଓକିଲ, ଧର୍ମଧ୍ୱଜୀ ଉଚ୍ଚବର୍ଗ ପ୍ରଭୃତି ଏଦେଶର ନିଃସ୍ୱ ନିଃସମ୍ବଳ, ଦୀନ ଦରିଦ୍ର, କୃଷକ, ଶ୍ରମିକ, ସାଧାରଣ ଜନତା ପ୍ରଭୃତିଙ୍କ ଉପରେ ଶୋଷଣର ଜାଲ ବିଛାଇ ଦେଇଥିଲେ । ପରମ୍ପରା ଓ ଧର୍ମୀୟ କୁସଂସ୍କାର ବିଶ୍ୱାସୀ ଅଶିକ୍ଷିତ ସରଳ ଜନତା ହୋଇଥିଲେ ଏହି ଧୂର୍ତ୍ତ ପରସ୍ୱ ଅପହାରୀ, ଅତ୍ୟାଚାରୀ, ଶୋଷକବର୍ଗର ଶରବ୍ୟ

ଜମିଦାର ମାନଙ୍କ ଶୋଷଣ ଥିଲା ଅତୀବ ତୀବ୍ର । ଉଭୟ ସ୍ରଷ୍ଟାଙ୍କ କଥା ସାହିତ୍ୟରେ ମୁଖ୍ୟତଃ ଦୁଇ ଶ୍ରେଣୀୟ ଜମିଦାରଙ୍କୁ ପାଠକ ସାକ୍ଷାତ କରେ । ଅଭିଜାତ୍ୟ ମଧ୍ୟରେ ପ୍ରଜାପାଳନ କରି ଆସୁଥିବା ପତନୋନ୍ମୁଖୀ ପାରମ୍ପରିକ ଜମିଦାର ଏବଂ କୌଳୀନ୍ୟହୀନ ନବୋତ୍ଥିତ ଜମିଦାର । ପ୍ରଥମୋକ୍ତ ଶ୍ରେଣୀର ଜମିଦାର ମାନଙ୍କ ଅପବ୍ୟୟ, ଅପାରଗତା, ଅପରିଣାମଦର୍ଶିତା ଓ ଆଡ଼ମ୍ବର ପ୍ରିୟତା ଫଳରେ ସେମାନଙ୍କ ଜମିଦାରି, ଧନସମ୍ପତ୍ତି ଓ ପ୍ରତିପତ୍ତି କ୍ରମଶଃ ଧ୍ୱଂସ ପାଉଥିଲା । ସେମାନଙ୍କ ସ୍ଥାନରେ ଇଂରେଜ ଶାସନ ଓ ଆଇନର ଦୁର୍ବଳତା ସୁଯୋଗରେ ବୁନିଆଦି ନଥିବା ଏକ ଧୂର୍ତ୍ତ ନୂଆ ଗମିଦାରି ଗୋଷ୍ଠୀର ସୃଷ୍ଟି ହୋଇଥିଲା । ପ୍ରଥମଗୋଷ୍ଠୀର ଜମିଦାର ପରୋପକାରୀ, ପ୍ରଜାବତ୍ସଳ ଓ ଉଦାର ଥିଲେ । ସେମାନଙ୍କ ସୁନାମ ଓ ସ୍ୱାଭିମାନକୁ ଶ୍ରେୟ ମନେକରୁଥିଲାବେଳେ ଦ୍ୱିତୀୟ ଗୋଷ୍ଠୀର ଜମିଦାର ଓ ତାଙ୍କ କର୍ମଚାରୀମାନେ ମୁଖ୍ୟତଃ ଥିଲେ ପ୍ରଜାପୀଡ଼କ । ପ୍ରଜାମାନଙ୍କୁ ଏହି ଅର୍ଥଗୃଧ୍ନୁ ଗୋଷ୍ଠୀ ବହୁ ଭାବରେ ଶୋଷଣ କରୁଥିଲେ । 'ଛମାଣ ଆଠଗୁଣ୍ଠ' ବର୍ଣ୍ଣିତ ବାଘସିଂହ ବଂଶ ଓ 'ମାମୁଁ' ଉତ୍ତରରାୟ, ସେବାଶ୍ରମର ଜଟାଶଙ୍କର ଓ ପ୍ରଭାଶଙ୍କର ଆଦି ପ୍ରଥମ ଗୋଷ୍ଠୀଭୁକ୍ତ । ଅନ୍ୟପକ୍ଷରେ 'ଛମାଣ ଆଠଗୁଣ୍ଠ'ର ନରାଧମ ରାମଚନ୍ଦ୍ର ମଙ୍ଗରାଜ, ପ୍ରାୟଶ୍ଚିତ୍ତର ସଙ୍କର୍ଷଣ ମହାନ୍ତି, 'ମାମୁଁ'ର ନାଜର ନଟବର ପ୍ରଭୃତି ଫକୀରମୋହନଙ୍କ ଚିତ୍ରିତ ଦ୍ୱିତୀୟ ଶ୍ରେଣୀ ଜମିଦାର, ପ୍ରେମଚନ୍ଦଙ୍କ ବର୍ଣ୍ଣିତ ଜ୍ଞାନଶଙ୍କର (ପ୍ରେମାଶ୍ରମ) ସୂର୍ଯ୍ୟପ୍ରତାପ ଓ ରାୟସାହେବ

(ଗୋଦାନ), ବିଶାଳସିଂହ (କାୟାକଳ୍ପ) ମହନ୍ତ ଆଶାରାମ (କର୍ମଭୂମି) ଆଦି ଦ୍ୱିତୀୟ ଶ୍ରେଣୀଭୁକ୍ତ । ଏମାନେ ସମସ୍ତେ ଅନୁଦାର, ପ୍ରଜାପୀଡ଼କ, ଧୂର୍ତ୍ତ ଏବଂ ନରରକ୍ତଲିପ୍ସୁ ।

ଅବଶ୍ୟ ଉଭୟ କଥାଶିଳ୍ପୀଙ୍କ କଥାଶିଳ୍ପରେ ପ୍ରତାପ ଉଦିତମଲ୍ଲ, ଉତ୍ତରରାୟ(ମାମୁ) ପ୍ରଭାଶଙ୍କର ଓ ଜଟାଶଙ୍କରଙ୍କ ପରି ଉଦାର, ପ୍ରଜାବତ୍ସଳ ପରୋପକାରୀ, ପ୍ରଗତିକାମୀ ଜମିଦାର ପରିଦୃଷ୍ଟ ହୋଇଥା'ନ୍ତି । କିନ୍ତୁ ସେମାନଙ୍କ ସଂଖ୍ୟା ନଗଣ୍ୟ ।

ଉଲ୍ଲିଖିତ ପ୍ରଜାପୀଡ଼କ ଜମିଦାର ଗୋଷ୍ଠୀରେ ଧୂର୍ତ୍ତତା, ସ୍ୱାର୍ଥପରତା ଓ ଖଳତାର ସମୟ କ୍ରମେ ଅଭିବୃଦ୍ଧି ଲକ୍ଷ୍ୟ କରାଯାଏ । ସ୍ୱଳ୍ପ ଶିକ୍ଷିତ ରାମଚନ୍ଦ୍ର ମଙ୍ଗରାଜ ଅପେକ୍ଷା ଇଂରେଜୀ ଶିକ୍ଷାପ୍ରାପ୍ତ ନାଜର ନଟବର ଦାସର ଖଳତା ଅଧିକ କୁଟିଳ ଓ ତୀବ୍ର । ଅନୁରୂପ ଭାବେ ମହନ୍ତ ଆଶାରାମ ଗିରି (କର୍ମଭୂମି-୧୯୩୧) ଅପେକ୍ଷା ରାୟସାହେବ (ଗୋଦାନ-୧୯୩୨-୩୬) ଅଧିକ ପ୍ରବଞ୍ଚନା ମାଧ୍ୟମରେ ଶୋଷଣର ଜାଲ ବିସ୍ତାର କରିଛନ୍ତି । ଆଶାରାମ କଅଁଳ କଥା କହି ପ୍ରଜାମାନଙ୍କ ଧନଲୁଣ୍ଠନ କରୁଥିବାବେଳେ ରାୟସାହେବ କୁମ୍ଭୀର କାନ୍ଦଣା ମଧ୍ୟରେ ଜନସାଧାରଣଙ୍କ ପ୍ରିୟଭାଜନ ହୋଇ ଲୁଣ୍ଠନ କରିଛନ୍ତି । ସେ ଜନସେବାର ଆଳ ଦେଖାଇ ମନ୍ତ୍ରୀ ମଧ୍ୟ ହୋଇପାରିଛନ୍ତି । ଆଶାରାମ, ମଙ୍ଗରାଜ ବା ଜ୍ଞାନଶଙ୍କର ଠାରୁ ଅଧିକ ଚତୁର ଓ ଧୂର୍ତ୍ତ । ପୁଣି ରାୟସାହେବ, ଆଶାରାମ ଠାରୁ ଅଧିକ ଖଳ ଓ କୌଶଳୀ । ସମୟ ଦୃଷ୍ଟିରୁ ବିଚାର କଲେ ସେନାପତିଙ୍କ ବର୍ଣ୍ଣିତ ଉପନ୍ୟାସରେ ଅର୍ଥାତ୍ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଜମିଦାରଙ୍କ ଶୋଷଣ ମାତ୍ରା ଯାହାଥିଲା ତାହା ବିଂଶଶତାବ୍ଦୀର ତୃତୀୟ-ଚତୁର୍ଥ ଦଶକ ବା ଗାନ୍ଧୀ ଯୁଗରେ (୧୯୧୬ ପରବର୍ତ୍ତୀ) ଆହୁରି ବଢ଼ିଯାଇଛି । ଏ ଦୃଷ୍ଟିରୁ ବିଚାର କଲେ ପ୍ରେମଚନ୍ଦଙ୍କ ଉପନ୍ୟାସରେ ବର୍ଣ୍ଣିତ ଶୋଷଣ ସେନାପତିଙ୍କ ଚିତ୍ରିତ ସେହି ଚିତ୍ରର ବିବର୍ତ୍ତିତ ରୂପ । ଏଣୁ ପ୍ରବନ୍ଧରେ ଆଲୋଚିତ ଶିଳ୍ପୀଦ୍ୱୟଙ୍କ ଉପନ୍ୟାସ ତଥା ଗଳ୍ପ ସମୂହ ପରସ୍ପରର ପରିପୂରକ ମନେହୁଏ । ପ୍ରେମଚନ୍ଦ ଫକୀରମୋହନଙ୍କ ଅପେକ୍ଷା ବହୁ ଗଳ୍ପ ଉପନ୍ୟାସ ଲେଖିଛନ୍ତି । ସେଥିରେ ଶୋଷଣାର ସ୍ୱରୂପ ବ୍ୟାପକ ଭାବେ ଉପଲବ୍ଧ ହେବା ସ୍ୱାଭାବିକ । ପ୍ରେମଚନ୍ଦଙ୍କ କଥାଶିଳ୍ପରେ ଶୋଷଣାର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ମଧ୍ୟ ଉପଲବ୍ଧ । ଅଥଚ ବ୍ୟାପକ ବର୍ଣ୍ଣନା ନୁହେଁ, ବ୍ୟଞ୍ଜନା ମଧ୍ୟରେ ବିଷୟ ବା ଚରିତ୍ର ମାନଙ୍କର ଉପସ୍ଥାପନା ଫକୀରମୋହନଙ୍କ ଶୈଳୀଗତ ବୈଶିଷ୍ଟ୍ୟ । ପୁଣି ହାସ୍ୟ ଓ ବ୍ୟଙ୍ଗ୍ୟ ଆଧାରରେ ବିଷୟବସ୍ତୁର ପ୍ରକାଶ ତାଙ୍କର ଅନ୍ୟତମ ସ୍ୱାତନ୍ତ୍ର୍ୟ । ମହାଜନ ମାନଙ୍କ ଶୋଷଣ କ୍ଷେତ୍ରରେ ମଧ୍ୟ ଏଇ ପ୍ରବିଧି ପରିଦୃଷ୍ଟ ।

ରାମଚନ୍ଦ୍ର ମଙ୍ଗରାଜ ଉଭୟ ଜମିଦାର ଓ ସାହୁକାର । ଫକୀରମୋହନଙ୍କ 'ଅଧର୍ମବିତ୍ତ' ପରି ଗଳ୍ପରେ କେତେକ ସାହୁକାର ଦେଖାଯାଆନ୍ତି । ପ୍ରେମଚନ୍ଦଙ୍କ ଅଧିକାଂଶ ଉପନ୍ୟାସ ଓ ବହୁଗଳ୍ପରେ ସାହୁକାର ମାନଙ୍କ ଶୋଷଣର ଚିତ୍ର ପରଲକ୍ଷିତ । ଗୋଦାନର ଝିଙ୍ଗୁରସିଂହ, ନୋଖେରାମ, ଦାତାଦୀନ, ପାଟେଶ୍ୱରୀ ଏଇ ଋଣଦାତା ମହାଜନ୍ ଶ୍ରେଣୀଭୁକ୍ତ ।

'ଛମାଣ ଆଠଗୁଣ୍ଠ'ର ନାୟକ ହିଁ ନିଜେ ଖଳନାୟକ । ସେ ମଧ୍ୟ ଜଣେ

ସୁଧଖୋର ମହାଜନ । ତାଙ୍କଠାରୁ ଭିକାରିପଣ୍ଡା ୫ଟଙ୍କା ଋଣ ନେଇଥିଲା । ଚକ୍ରବୃଦ୍ଧି ହାରରେ ପରିଶୋଧ ବେଳକୁ କେବଳ ସୁଧହେଲା ୧୨ଟଙ୍କା ୫ ଅଣା ଏଗାରଗଣ୍ଡା ଦୁଇକଡ଼ା ମୂଳକୁ ମିଶାଇ ଶୁଝାଗଲା । ୧୭ଟଙ୍କା ୬ଅଣା ଦୁଇପଇସା । ମଙ୍ଗରାଜ ଦୟା ପରବଶ ହୋଇ ଛାଡ଼ିଲେ ୨ଗଣ୍ଡା । (ଛ.ଆ.ଫ.ମୋ, ଗ୍ର-ପୃ-୨୩୨) ।

ସେହିପରି ଶୋଷକ ମହାଜନ ଜାଲରେ ଛନ୍ଦି ହୋଇ ହୋରୀ କହିଛି । "ନିଜରକ୍ତ ବୁହାଇ ବଡ଼ଲୋକ ମାନଙ୍କର ଘରପୂର୍ଣ୍ଣ କରିବା ପାଇଁ ଆମ୍ଭମାନଙ୍କର ଜନ୍ମ । (ଗୋଦାନ ପୃ ୨୭) । ପୁଣି ହୋରୀ ଦାତା ଦୀନଠାରୁ ତିରିଶ ଟଙ୍କା କରଜ ନେବା ପରେ ତାର ପୁଅ ଗୋବରା କହିଛି- 'ତିରିଶ ଟଙ୍କା ବାବଦକୁ ୨୦୦ ଟଙ୍କା ଦେବ ଏବଂ ତୁମକୁ କାମ କରାଇବ । (ଗୋଡି ଖଟାଇବ) କାମ କରାଇ କରାଇ ମାରିଦେବ ।'

ପ୍ରେମଚନ୍ଦଙ୍କ ଚିତ୍ରିତ ସାହୁକାର ମାନଙ୍କ ମଧ୍ୟରେ କରଜ ଲଗାଇବାକୁ ପ୍ରତିଯୋଗିତା । ପରସ୍ପର ମଧ୍ୟରେ ଈର୍ଷ୍ୟା-ଦ୍ୱେଷ । କିନ୍ତୁ ଖାତକର ରକ୍ତ ଶୋଷଣ ବେଳେ ସେମାନଙ୍କ ମଧ୍ୟରେ ଅସମ୍ଭବ ଏକତା । ଗୋଦାନରେ ବିଧବା ଝୁନିଆ ଓ ଗୋବରାର ସମ୍ପର୍କକୁ ନେଇ ହୋରୀ ଠାରୁ ଜୋରିମାନା ଆଦାୟ ବେଳେ ସବୁ ମହାଜନ ଏକାଠି ହୋଇ ଯାଇଛନ୍ତି । ସେମାନେ ଧନୀ, ମାନୀ, ଗାଆଁର ମୁରବି, ସେମାନଙ୍କ ନିଷ୍ପତ୍ତି ହିଁ ନ୍ୟାୟ । ଉଭୟ କଥାଶିଳ୍ପୀ ମହାଜନଙ୍କ ଶୋଷଣକୁ କଳାତ୍ମକ ରୂପ ଦେଇଛନ୍ତି । ବସ୍ତୁତଃ ପ୍ରେମଚନ୍ଦଙ୍କ ସମୟକୁ ଅତ୍ୟାଚାରର ମାତ୍ରା ବଢ଼ିଯାଇଛି । ତାଙ୍କ ଉପନ୍ୟାସରେ ଜମିଦାରଙ୍କ ପରି ମହାଜନଙ୍କ ସଂଖ୍ୟା ଅଧିକ ।

କୃଷି ପ୍ରଧାନ ଭାରତ ବର୍ଷରେ କୃଷକମାନେ ସଂଖ୍ୟାଗରିଷ୍ଠ । ଏହି ସରଳ ଦୀନ ଦରିଦ୍ର କୃଷକମାନେ ହୋଇଆସୁଛନ୍ତି ଶୋଷଣର ଶଢ଼୍ୟ । କଳେବଳେ କୌଶଳେ ଜମିଦାର, ସାହୁକାର, ରାଜକର୍ମଚାରୀମାନେ ସେମାନଙ୍କ ବଞ୍ଚିବାର ସମ୍ବଳ ଭୂସମ୍ପତ୍ତି, ଏହାର ଉତ୍ପାଦନ, ଗୋଧନ ଆଦିକୁ ଲୁଣ୍ଠନ କରୁଥିଲେ, ମଙ୍ଗରାଜ ତନ୍ତୀ ଭଗିଆର ଛମାଣଆଠଗୁଣ୍ଠ ଜମି କୌଶଳରେ ଆତ୍ମସାତ୍ କରିଛନ୍ତି । ବଳ ପ୍ରୟୋଗ କରି ବିଚରା ଶ୍ୟାମ ଗୋଛାୟତର ଜମିରୁ ଧାନ ଚାରା ନେଇ ନିଜ ଜମିରେ ରୋଇଛନ୍ତି । ଅନୁରୂପ ଭାବେ ଗୋଦାନରେ ହୋରୀ ଶୋଷିତ ହୋଇଛି ।

ଜମିପରି ଗୋଧନ ହେଉଛି କୃଷକର ଅନ୍ୟତମ ଆଧିକାରିକ ବସ୍ତୁ । ଯାହା ସହିତ ଚାଷୀର ଆବେଗିକ ସମ୍ପର୍କ ରହିଛି । ଭଗିଆ-ସାରିଆଙ୍କ ପ୍ରାଣପ୍ରିୟ ନେତ ଗାଈକୁ ମଙ୍ଗରାଜ ପ୍ରରୋଚନାରେ ଧୂର୍ତ୍ତା ଚମ୍ପା ଅପହରଣ କରିନେଇଛି । ନେତ ପାଇଁ ସାରିଆ ପ୍ରାଣ ଦେଲା ଓ ଭଗିଆ ପାଗଳ ହେଲା । ଗୋଦାନରେ ମଧ୍ୟ ଗାଈ ହିଁ ମୁଖ୍ୟ ଆଧାର । ଉପନ୍ୟାସଟିର ନାମକରଣରୁ ଏହି ଭାବ ସୂଚିତ । ଗାଈ ପାଇଁ ଭୋଲା ଓ ହୋରୀର ବନ୍ଧୁତା ଓ ଶତ୍ରୁତା ମଧ୍ୟ । ଗାଈ ପାଇଁ ହୋରୀକୁ ସର୍ବସ୍ୱାନ୍ତ ହେବାକୁ ପଡ଼ିଛି । ଭୋଲା ହୋରୀର ବଳଦକୁ ଜବରଦସ୍ତ ନେଇଯାଇଛି । ଦୟନୀୟ ଅବସ୍ଥା ମଧ୍ୟରେ ଗତିକରି ହୋରୀ କୃଷକରୁ ଦିନ ମଜୁରିଆ ହୋଇଛି । ସେ 'ମଙ୍ଗଳ' ପାଇଁ ଗାଈଟିଏ କିଣିବାକୁ ଯାଇ କଠିନ ପରିଶ୍ରମ କରିଛି ଏବଂ ଏଥିପାଇଁ ସେ ପ୍ରାଣପାତ୍ କରିଛି ।

ବିଂଶ ଶତାବ୍ଦୀ ବେଳକୁ କ୍ରମଶଃ କଳକାରଖାନା ପ୍ରତିଷ୍ଠା ହୋଇଛି । ଶୋଷକ

ଶ୍ରେଣୀ ବଢ଼ିଚାଲିଛି । ମିଲ୍ ମାଲିକ, ପାର୍ଟନର ତଥା ମାଲିକ ଶ୍ରମିକ ମଧ୍ୟରେ ଦଲାଲ ଶ୍ରେଣୀ ସୃଷ୍ଟି ହୋଇଛନ୍ତି । ଫକୀରମୋହନଙ୍କ ଗଳ୍ପ ଉପନ୍ୟାସ ରଚନା ସମୟରେ ଭାରତରେ ବିଶେଷତଃ ଓଡ଼ିଶାରେ କାରଖାନା ଓ ଏଇଶ୍ରେଣୀୟ ଶୋଷକମାନଙ୍କ ସୃଷ୍ଟି ହୋଇ ନ ଥିବାରୁ ସେନାପତିଙ୍କ କଥାସାହିତ୍ୟରେ ଏଇ ନବଶୋଷକ ଗୋଷ୍ଠୀଟି ଦେଖାଯାଆନ୍ତି ନାହିଁ । ଅଥଚ ପ୍ରେମଚନ୍ଦଙ୍କ କେତେକ ଉପନ୍ୟାସରେ ଏମାନଙ୍କ ଶୋଷଣର ବାସ୍ତବ ଚିତ୍ର ପରିଲକ୍ଷିତ । ଗୋଦାନରେ ଶ୍ରମିକମାନଙ୍କ ଦାବି ପୂରଣ ନ ହେବାରୁ ହରତାଳ ହୋଇଛି । ମଜୁରିଆ ମାନଙ୍କୁ ମାଡ଼ଦେଇ ଦମନ କରିବାକୁ ଅପଚେଷ୍ଟା କରାଯାଇଛି କିନ୍ତୁ ସେମାନେ ଉତ୍ତ୍ୟକ୍ତ ହୋଇ କାରଖାନାରେ ନିଆଁ ଲଗାଇ ଦେଇଛନ୍ତି । ପ୍ରେମଚନ୍ଦ 'ଗୋଦାନ'ରେ ଶ୍ରମିକ ମାନଙ୍କ ଉପରେ ଅତ୍ୟାଚାରର ଚିତ୍ର ସଂକ୍ଷେପରେ ପ୍ରଦାନ କରିଥିଲା ବେଳେ 'ରଙ୍ଗଭୂମି' ରେ ଏହାର ବ୍ୟାପକ ରୂପ ପ୍ରଦାନ କରିଛନ୍ତି । 'ପ୍ରେମାଶ୍ରମ' ଓ 'କର୍ମଭୂମି'ରେ ମଧ୍ୟ ବିଦ୍ରୋହର ସ୍ୱର ରହିଛି ।

ପ୍ରେମଚନ୍ଦ ମାର୍କ୍ସ ଓ କଂଗ୍ରେସ ଚରମପନ୍ଥୀଙ୍କ ବୈପ୍ଳବିକ ଆଭିମୁଖ୍ୟକୁ ସମର୍ଥନ କରି ପ୍ରଗତିଶୀଳ ସାହିତ୍ୟ ସୃଷ୍ଟି ପାଇଁ ଆହ୍ୱାନ ଦେଇଥିଲେ । ସେ କେତୋଟି ବିପ୍ଳବୀ ଚରିତ୍ର ମଧ୍ୟ ସୃଷ୍ଟି କରିଛନ୍ତି । ଅନ୍ୟପକ୍ଷରେ ଫକୀରମୋହନଙ୍କ ଗଳ୍ପ-ଉପନ୍ୟାସରେ ଏକମାତ୍ର ବିପ୍ଳବୀ ଚରିତ୍ର 'ମାମୁଁ'ର ହରିବୋଲ ବାରିକ । କିନ୍ତୁ ସେନାପତି ସାରିଆର ଅନଶନରେ ପ୍ରାଣ ବିସର୍ଜନ ଓ ଭଗିଆ ପାଗଳ ହୋଇ ଦାନ୍ତରେ କାମୁଡ଼ି ମଙ୍ଗରାଜଙ୍କ ନାକକାଟିବା ମଧ୍ୟରେ ଶାନ୍ତିପୂର୍ଣ୍ଣ ସତ୍ୟାଗ୍ରହ ତଥା ରକ୍ତାକ୍ତ ପ୍ରତିଶୋଧର ସୂଚନା ପ୍ରଦାନ କରିଛନ୍ତି । ପ୍ରେମଚନ୍ଦ ଶୋଷିତ ମାନଙ୍କ କରୁଣ ଚିତ୍ରର ବାସ୍ତବ ଆଲେଖ୍ୟ ଅଙ୍କନ କରିଛନ୍ତି ସିନା ବିଦ୍ରୋହ ବା ବିପ୍ଳବର ବିଶେଷ ଆହ୍ୱାନ ଦେଇନାହାନ୍ତି । ବୋଧହୁଏ ତତ୍‌କାଳୀନ ସମାଜରେ ଏହା ସମ୍ଭବ ନଥିବାରୁ ସେ ନୀରବ ରହିଛନ୍ତି । ଫକୀରମୋହନ ଓ ପ୍ରେମଚନ୍ଦ ଉଭୟ ବିଭିନ୍ନ ଆଙ୍ଗିକରେ କଥାସାହିତ୍ୟ ସୃଷ୍ଟି କରିଥିଲେ ବି ସେମାନଙ୍କ ପ୍ରତିଟି କୃତିରେ କିଛି ନା କିଛି ସାମାଜିକ ସମସ୍ୟା ରହିଛି । ସ୍ତ୍ରୀ-ପୁରୁଷ ମଧ୍ୟରେ ଥିବା ବିଭିନ୍ନ ସମ୍ପର୍କର ହୃଦ୍ୟ ଚିତ୍ର ଉଭୟ ଶିଳ୍ପୀଙ୍କ କଥାଶିଳ୍ପରେ ଉପଲବ୍ଧ ।

ସେନାପତିଙ୍କ ସୃଷ୍ଟି ରୂପଜମୋହ ବା ଯୌନଜୀବନ ଚିତ୍ରଣ ଠାରୁ ଦୂରେଇ ଯାଇନାହିଁ । କିନ୍ତୁ ସେ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ମଧ୍ୟରେ ନୁହେଁ; ବ୍ୟଞ୍ଜନା ମଧ୍ୟରେ ଅସାମାଜିକ ପ୍ରେମର ସୂଚନା ଦେଇଛନ୍ତି । ତାଙ୍କ ସାହିତ୍ୟରେ ମୁଖ୍ୟ ଉପଜୀବ୍ୟ ହୋଇଛି, ଅମାନବିକ ଦୁଷ୍ପ୍ରବୃତ୍ତି; ଲୋଭ, ମୋହ, କ୍ରୋଧ, ହିଂସା, ଈର୍ଷ୍ୟା, ଦ୍ୱେଷାଦିରେ ଚଞ୍ଚଳ ଆଧୁନିକ ମଣିଷ । କିନ୍ତୁ ପ୍ରେମାନନ୍ଦଙ୍କ ଅଧିକାଂଶ ଉପନ୍ୟାସ ଓ ବହୁଗଳ୍ପରେ ସାମାଜିକ ଓ ଅସାମାଜିକ ପ୍ରେମର ବିସ୍ତୃତ ବର୍ଣ୍ଣନା ରହିଛି ।

ଉଭୟ ଶିଳ୍ପୀଙ୍କ କଥାକୃତିରେ ନାରୀମାନଙ୍କ ଦୁଃଖ ଦୁର୍ଦ୍ଦଶାର ଜୀବନ୍ତ ଚିତ୍ର ପରିବେଷିତ । ବହୁ ନାରୀଙ୍କ ଦୁଃଖ ଯାତନା ବୃଦ୍ଧିର ଏକ ମୁଖ୍ୟ କାରଣ ହୋଇଛି ଅକାଳ ବୈଧବ୍ୟ । ପୁରୁଷ ପ୍ରଧାନ ସମାଜରେ ପୋଷକ ଅଭାବରୁ ନାରୀ କେବଳ ଅସହାୟ ହୁଏ ନାହିଁ । ବିଧବା ହେଲେ ତାହାର ସାମାଜିକ ସମ୍ମାନ ମଧ୍ୟ କ୍ଷୁଣ୍ଣ ହୁଏ । ନିର୍ଦ୍ଦୋଷ ବାଳିକା ବିଧବାମାନେ ଅନାଦର ହତାଦର ଭିତରେ ଦୈହିକ ଅତ୍ୟାଚାର

ତଥା ମାନସିକ ଯନ୍ତ୍ରଣା ମଧ୍ୟରେ କାଳାତିପାତ କରିବାକୁ ବାଧ୍ୟ ହୋଇଥାନ୍ତି । ଏହି ଅସହାୟ ନାରୀଙ୍କ ପୁନର୍ବିବାହର ଆବଶ୍ୟକତା ପ୍ରଶ୍ନ ଫକୀରମୋହନ 'ଛମାଣ ଆଠଗୁଣ୍ଠ' ପ୍ରେମଚନ୍ଦଙ୍କ 'ଗୋଦାନ' ଓ 'ପ୍ରତିଜ୍ଞା' ପ୍ରଭୃତି ଉପନ୍ୟାସରେ ହୋଇଛି ଉତ୍ଥାପିତ । ସାମାଜିକ ନିୟମ ବିରୋଧରେ ଯାଇ ମଙ୍ଗରାଜ ତାଙ୍କ କନ୍ୟାକୁ ପୁନର୍ବିବାହ ଦେଇ ପାରିନାହାନ୍ତି । ମଗୁଆ ପରି କେତେକ ବିଧବା, ବାଳବିଧବାଙ୍କୁ ମଙ୍ଗରାଜ ଉଆସରେ ରଖିଛନ୍ତି, କିନ୍ତୁ ସତ୍ ଉଦ୍ଦେଶ୍ୟରେ ନୁହେଁ । ମଗୁଆ ତାହାର ବୟସର ମଦ ଓ ଯୌନ ତାଡ଼ନାରେ ବାବାଜୀ ଲଳିତା ଦାସଙ୍କ ସାଥିରେ ଉଭାନ ହୋଇଛି । କିନ୍ତୁ 'ମାମୁଁ' ରେ ସରସ୍ୱତୀ ଦେଈ ତାଙ୍କର ସଂଯମ, ଶୁଚିତା ଓ ସ୍ନେହଶୀଳତା ଗୁଣରେ ବୈଧବ୍ୟ ବେଦନାକୁ ଭୁଲିଯାଇ ସାର୍ବଜନୀନ ମାତୃତ୍ୱର ପରିଚୟ ଦେଇଛନ୍ତି ।

ଗୋଦାନରେ ବିଧବା ଝୁନିଆ ଗୋବରା ସହିତ ଦୈହିକ ସମ୍ପର୍କ ରଖିଛି, କଠୋର ସାମାଜିକ ନିୟମ ବିରୋଧରେ ଯାଇ ଗୋବରା ତାହାକୁ ବିବାହ କରିବାକୁ ପ୍ରସ୍ତୁତ ହୋଇନାହିଁ । ଶେଷରେ ଝୁନିଆ ତାହାର ରକ୍ଷିତା ହୋଇ ରହିଛି । 'ପ୍ରତିଜ୍ଞା'ରେ ପୂର୍ଣ୍ଣା ବିଧବା ହେବା ପରେ ଅବସ୍ଥା ଅତି ଦୟନୀୟ ହୋଇଛି, ପ୍ରେମଚନ୍ଦ ବିଧବାଶ୍ରମ ଖୋଲାଇଛନ୍ତି । କିନ୍ତୁ ଏଥିରେ ସମସ୍ୟାର ଯଥାର୍ଥ ସମାଧାନ ହୋଇପାରି ନାହିଁ । କଥାଶିଳ୍ପୀ ନିଜେ ବାଲ୍ୟବିଧବା ଶିବରାଣୀଙ୍କୁ ବିବାହ କରି ଏ କ୍ଷେତ୍ରରେ ଆଦର୍ଶ ହୋଇଛନ୍ତି । କିନ୍ତୁ ତାଙ୍କ ରଚନାରେ ବିଧବା ସମସ୍ୟା ସମାଧାନର ଉପଯୁକ୍ତ ପଥ ଦର୍ଶାଇ ନାହାନ୍ତି ।

ବହୁନାରୀ ପରିସ୍ଥିତି ଚକ୍ରରେ ପତିତା ହୋଇ ବେଶ୍ୟା ବୃତ୍ତି କରିଥାଆନ୍ତି । ବେଶ୍ୟା ସମସ୍ୟା ଏକ ବୀଭତ୍ସ ସମସ୍ୟା । ପ୍ରେମଚନ୍ଦଙ୍କ 'ସେବାସଦନ'ରେ ବିଶଦଭାବେ ଏବଂ 'ଗବନ'ରେ କିଛି ମାତ୍ରାରେ ଏଇ ଘୃଣ୍ୟଚିତ୍ରର ଉପସ୍ଥାପନା କରାଯାଇଛି । ନର୍ତ୍ତକୀ ମୁଖରେ ଲେଖକ କହିଛନ୍ତି, "ରୂପ ବ୍ୟବସାୟକୁ ସେଇ ସ୍ତ୍ରୀ ଲୋକମାନେ ଆସନ୍ତି ଯେଉଁମାନଙ୍କୁ ନିଜ ଘରେ କୌଣସି କାରଣରୁ ସମ୍ମାନ ଅଥବା ମର୍ଯ୍ୟାଦା ମିଳେ ନାହିଁ ।" ଆର୍ଥିକ ସଂକଟ ମଧ୍ୟ ପତିତା ହେବାର ଅନ୍ୟ ଏକ କାରଣ । 'ସେବାସଦନ'ରେ ଜଣେ କୁଳବଧୂ କିପରି ବେଶ୍ୟାରେ ପରିଣତ ହୋଇଛି, ତାହାର କରୁଣ କାହାଣୀ ବର୍ଣ୍ଣିତ । ବୃଦ୍ଧ ଧନିକମାନଙ୍କ ନିଜସ୍ୱୀ ଥାଇ ତରୁଣୀ ସ୍ତ୍ରୀ ଗ୍ରହଣ ମଧ୍ୟ ଚରିତ୍ରହୀନା ବା ବେଶ୍ୟା ହେବାର ଅନ୍ୟ ଏକ କାରଣ (ନିର୍ମଳା) । ପ୍ରେମଚନ୍ଦ ସେବାସଦନରେ ବେଶ୍ୟା ବା ପତିତାମାନଙ୍କ ପାଇଁ ସେବାସଦନ ଖୋଲିଛନ୍ତି । ଭବିଷ୍ୟତରେ ତାହା ସଫଳ ହୋଇପାରିନାହିଁ । ବରଂ କୁଫଳ ମିଳିଛି । 'ଗୋଦାନ'ରେ ଲେଖକ ମେହେତା ମୁଖରେ କହିଛନ୍ତି, "ଯଦି, ସାମାଜିକ ନିୟମ ଉପରସ୍ତରରୁ ନିମ୍ନସ୍ତର ପର୍ଯ୍ୟନ୍ତ ପରିବର୍ତ୍ତନ କରାଯାଇନପାରେ, ଏହା ନିରୋଧ ପାଇଁ ଆଇନ କରିବା ନିରର୍ଥକ ।"

ସେନାପତିଙ୍କ କଥାସାହିତ୍ୟରେ ପତିବ୍ରତାଙ୍କ ସହ ପତିତାଙ୍କ ଚିତ୍ର ମଧ୍ୟ ଅଙ୍କିତ । କେବଳ ପେଟେଣ୍ଟ ମେଡ଼ିସିନ୍‌ରେ ବେଶ୍ୟାଳୟ ତଥା ବେଶ୍ୟା ଉସ୍‌ମାନ ତାରା ସହ ନଷ୍ଟ ଚରିତ୍ର ମଦ୍ୟପ ଚନ୍ଦ୍ରମଣିଙ୍କ ମିଳନ ବର୍ଣ୍ଣିତ । ଚନ୍ଦ୍ରମଣିଙ୍କୁ ସତ୍‌ପଥକୁ ଆଣିବାକୁ ପତ୍ନୀ ସୁଲୋଚନା ବହୁ ଚେଷ୍ଟା ସତ୍ତ୍ୱେ ବିଫଳ ହେବାରୁ ସେ ସମାର୍ଜନୀ ପ୍ରହାର କରି

ସ୍ୱାମୀଙ୍କ ଚରିତ୍ରରେ ପରିବର୍ତ୍ତନ ଆଣିଛନ୍ତି । 'ଗୋଦାନ'ରେ ଅନୁରୂପ ଏକ କାହାଣୀ ପରିଦୃଷ୍ଟ । ମୀନାକ୍ଷୀ ତାହାର ବେଶ୍ୟାସକ୍ତ ସ୍ୱାମୀ ଦିଗବଜୟ ସିଂହକୁ ନିର୍ମମ ପ୍ରହାର କରିଛି । କିନ୍ତୁ ଦିଗ୍‌ବିଜୟ ସିଂହର କୌଣସି ପରିବର୍ତ୍ତନ ହୋଇନାହିଁ । ବରଂ ସେ ପତ୍ନୀପ୍ରତି ପ୍ରତିଶୋଧ ପରାୟଣ ହୋଇଛି । ବେଶ୍ୟାଳୟ ସାମନ୍ତବାଦୀ ବିଳାସର ପ୍ରତୀକ । ଏବେ ତାହା କ୍ଲବମାନଙ୍କରେ ପରିଲକ୍ଷିତ । ଏ ଦିଗରେ ସାମାଜିକ ସଚେତନତା ଆବଶ୍ୟକ । ଫକୀରମୋହନ ବେଶ୍ୟା ଠାରୁ ମାରାତ୍ମକ ଚମ୍ପା, ଚିତ୍ରକଳା ପରି ଭ୍ରଷ୍ଟା ପତିତାଙ୍କ ଖଳ ସ୍ୱଭାବର ବର୍ଣ୍ଣନା କରିଛନ୍ତି । ଆଲୋଚ୍ୟ ଉଭୟ କଥାଶିଳ୍ପୀ ଥିଲେ ସମାଜ-ସଚେତନ । ସାମାଜିକ ଦୋଷ ଦୁର୍ବଳତାର ବାସ୍ତବ ସ୍ଥିତି ଉଭୟ ପ୍ରଦର୍ଶନ କରିଛନ୍ତି । ସେନାପତି ଏହି ସାମାଜିକ ଦୁଷ୍ଟବ୍ରଣ ଗୁଡ଼ିକର ମୁଖ ତୀକ୍ଷ୍ଣ ବ୍ୟଙ୍ଗ୍ୟ ବିଦ୍ରୂପ ଅସ୍ତ୍ରରେ ଖୋଲି ଦେଉଥିଲା ବେଳେ ପ୍ରେମଚନ୍ଦ ମୁଖ୍ୟତଃ ତାହାର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ମଧ୍ୟରେ ବାସ୍ତବ ଚିତ୍ର ଦେଇ ଜନସମାଜକୁ ସଚେତନ କରିବାକୁ ଉଦ୍ୟମ କରିଛନ୍ତି ।

ବହୁ ବିବାହ ଏକ ସାମନ୍ତବାଦୀ ପରମ୍ପରା । କେତେ ପ୍ରୌଢ଼ ଧନୀ କାମୁକ ପରିଣତ ବୟସରେ ଏକାଧିକ ତରୁଣୀ ସ୍ତ୍ରୀଙ୍କୁ ବିବାହ କରିଥାନ୍ତି । ପ୍ରେମଚନ୍ଦଙ୍କ 'ଗୃହୀରାଣୀ' କାୟାକଳ୍ପ'ରେ ବହୁ ବିବାହର କୁପରିଣତି ଦର୍ଶାଇଛନ୍ତି । ପଚାଶୋତ୍ତର ଝୁଗୁରସିଂହ ତାଙ୍କର ଦୁଇ ଯୁବତୀ ସ୍ତ୍ରୀଙ୍କ କାମପିପାସାକୁ ତୃପ୍ତ କରିପାରନ୍ତି ନାହିଁ । ପ୍ରେମଚନ୍ଦ ବ୍ୟଙ୍ଗ୍ୟ କରି କହନ୍ତି, "ତାଙ୍କ ସ୍ତ୍ରୀମାନେ ପରଦା ଆଢୁଆଳରେ ଥାଆନ୍ତି, କିନ୍ତୁ ପରଦା ଭିତରେ ଯେ ବହୁକିଛି ଚାଲେ, ତାହା ପତିଦେବତା ଜାଣି ପାରନ୍ତି ନାହିଁ (ଗୋ.ପୃ.୧୨୧) ।

ସମାଜରେ ମଣିଷ ମଣିଷ ମଧ୍ୟରେ ଥିବା ଏକତା ନଷ୍ଟ ହେବାର କାରଣ ଛୁଆଁ, ଅଛୁଆଁ ଓ ସାମ୍ପ୍ରଦାୟିକ ମନୋଭାବ । ଫକୀରମୋହନ ଜାତି ଧର୍ମ ନିର୍ବିଶେଷରେ ଅନ୍ୟାୟ, ଅନୀତି ଓ ଭ୍ରଷ୍ଟାଚାରକୁ ଘୃଣା କରିଛନ୍ତି । ତାଙ୍କ ଦୃଷ୍ଟିରେ ଅତ୍ୟାଚାରୀ ହିନ୍ଦୁ ବର୍ଗୀମାନେ ହୋଇଛନ୍ତି ଘୃଣ୍ୟ । ସେ ଅନ୍ୟଧର୍ମର କୌଣସି ବ୍ୟକ୍ତିପ୍ରତି ଘୃଣା ପ୍ରକାଶ କରିନାହାନ୍ତି । ସେ ପ୍ରତ୍ୟକ୍ଷଭାବେ କିଛି କହିନଥିଲେ ବି ବଗଲା ବଗୁଲୀ ଗଳ୍ପରେ ଅଛବ ବିଦିଆ ଚେମୀଙ୍କ ଦାମ୍ପତ୍ୟ ଜୀବନରେ ଦେଖିଛନ୍ତି ମହାନ୍ ଆଦର୍ଶର ଝଲକ । ଧର୍ମପ୍ରାଣ ବିଦିଆ ହୋଇଛି ଗୀତୋକ୍ତ ନିଷ୍କାମ ଧର୍ମର ଜ୍ୱଳନ୍ତ ଆଦର୍ଶ । ପ୍ରେମଚାନ୍ଦ ଚମାରୁଣୀ ସହିତ ବ୍ରାହ୍ମଣର ପ୍ରେମ ସମ୍ପର୍କ ସ୍ଥାପନ କରି ଭେଦଭାବ ଦୂର କରିବାକୁ ଉଦ୍ୟମ କରିଛନ୍ତି । ବ୍ରାହ୍ମଣ ଦାତାଦୀନ ସୁଧଖୋର ମହାଜନ, ସେମାନଙ୍କ ବିଦ୍ୱେଷୀ ବ୍ୟକ୍ତିଭାବେ ଚିତ୍ରିତ । କିନ୍ତୁ ପରେ ସେ ଏକ ପରିବର୍ତ୍ତନଶୀଳ କର୍ତ୍ତୃକ ଚରିତ୍ରରେ ପରିଣତ ହୋଇଛି ସେ ଚମାରୁଣୀ ସିଲିଆ କୁଡ଼ିଆରେ ରହି ଘୋଷଣା କରିଛି- " ଏହା ମୋ ପାଇଁ ଦେବୀ ମନ୍ଦିର । (ଗୋ.ପୃ.୩୫୦) । ପୁଣି ସେ କହିଛି, " ଯେ ସ୍ୱଧର୍ମ ପାଳନ କରେ ସେ ବ୍ରାହ୍ମଣ, ଯେ ଧର୍ମଠାରୁ ଦୂରେଇ ଆସେ ସେ ଚମାର," (ଗୋ.ପୃ. ୩୫୧) । ପୁନରାୟ ସେ ଶ୍ରୀକ୍ଷେତ୍ର ପୁରୀରେ ଭେଦଭାବ ଭୁଲି ସବୁ ଜାତି ଏକତ୍ର ମହାପ୍ରସାଦ ସେବନ କରୁଥିବାର ଦୃଷ୍ଟାନ୍ତ ଦେଇଛନ୍ତି (ଗୋ.ପୃ.୩୫୨) ।

ସେ ସମୟରେ ସାରା ଭାରତରେ କନ୍ୟା ସୁନା ଥିଲା ଏକ ସାମାଜିକ

ବ୍ୟାଧି । ବୃଦ୍ଧ ଧନୀଲୋକମାନେ ଟଙ୍କା ବଳରେ ଯୁବତୀ କନ୍ୟାକୁ କିଣି ବିବାହ କରୁଥିଲେ । ହୋରୀ ଦାରିଦ୍ର୍ୟ ବଶତଃ ପ୍ରୌଢ଼ ରାମ ସେବକ ସହିତ ନିଜ କନ୍ୟାକୁ ବିଭା ଦେଇଥିଲା । ଏହି ସମସ୍ୟ ଉପରେ ଫକୀରମୋହନ ଦୁଇଟି ଗଳ୍ପ, ବିରେଇ ବିଶାଳ ଓ ରାମାଧ ମହାନ୍ତିଙ୍କ କନ୍ୟାସୁନା ରଚନା କରିଛନ୍ତି । ରାଘବ ପାତ୍ର ୭୦୦ଟଙ୍କା ନେଇ ସାନଝିଅ କମଳୀକୁ ବିରେଇ ସହିତ ବିବାହ ଦେଇଛି । କମଳୀ ଶାଶୁଘରକୁ ଗଲାବେଳେ ପିତାର ସମସ୍ତ ସଞ୍ଚୟ ଧନ ନେଇ ମହାକୃପଣ ଅମଣିଷ ପିତାକୁ ଶାସ୍ତି ଦେଇଛି । କଥାଶିଳ୍ପୀ ଏଇ ଗଳ୍ପ ମାଧ୍ୟମରେ ସନ୍ଦେଶ ଦେଇଛନ୍ତି କନ୍ୟାମାନେ ସତ୍ ସାହସ ଦେଖାଇଲେ, ଏ କୁପ୍ରଥା ଦୂର ହୋଇପାରେ ।

ଯୌତୁକ ଭାରତୀୟ ସମାଜରେ ଏକ ମାରାତ୍ମକ ବ୍ୟାଧି । ସେନାପତିଙ୍କ ସାହିତ୍ୟ ସୃଷ୍ଟି ସମୟରେ ବୋଧହୁଏ ଏହା ଓଡ଼ିଶାରେ ନଥିଲା । ଦାଶରଥି ଦାସଙ୍କ କନ୍ୟା ଚାନ୍ଦମଣିଙ୍କ ସହିତ ଜମିଦାର ପ୍ରତାପ ଉଦିତମଲ୍ଲଙ୍କ ବିବାହ ପ୍ରସଙ୍ଗରେ ଯୌତୁକ ନୁହେଁ କୋଷ୍ଠୀ ବିଚାର ଉପରେ ପ୍ରାଧାନ୍ୟ ଦିଆଯାଇଛି । ନଟବର ମଧ୍ୟ କୋଷ୍ଠୀମୋହକ ହେବାରୁ ସେ ବିନା ଯୌତୁକରେ ଦରିଦ୍ର ବାପନ୍ଥେଉଣ୍ଡ କନ୍ୟା ବିଶାଖା ଦେଈକୁ ବିବାହ କରିଛି । କାରଣ ଜ୍ୟୋତିଷ କହିଛନ୍ତି କନ୍ୟାଟି ଭାଗ୍ୟବତୀ ।

ପ୍ରେମଚନ୍ଦଙ୍କ ଯୌତୁକ ସମ୍ପର୍କୀୟ ଅଭିମତ ଗୋଦଦାନରେ ପ୍ରକାଶିତ । ତାଙ୍କ ଦୃଷ୍ଟିରେ- କନ୍ୟା ବିରୋଧ କଲେ ଯୌତୁକ ଏକ ସମସ୍ୟା ହୁଅନ୍ତା ନାହିଁ । ହୋରୀର ଝିଅ ସୋନା ଏହାର ବିରୋଧ କରି ସିଲାଆକୁ ପଠାଇ ଭାବୀସ୍ୱାମୀ ମଥୁରାକୁ ଯୌତୁକ ବିରୋଧରେ ପ୍ରଭାବିତ କରିଛି । ଫଳରେ ଭାବୀ ଶ୍ୱଶୁର ଗୋରୀରାମ ହୋରୀ ନିକଟକୁ ପତ୍ରଲେଖି ଶପଥ କରି କହିଛି- 'ସେ ବିନା ଯୌତୁକରେ ପୁଅକୁ ସୋନା ସହିତ ବିବାହ ଦେବାକୁ ଚାହୁଁଛି ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଶାରେ ଇଂରାଜୀ ଶିକ୍ଷାବସ୍ଥାର ଆରମ୍ଭ ଏବଂ ବିଂଶ ଶତାବ୍ଦୀରେ ଏହାର ପ୍ରସାର କଲେଜ ସ୍ତରରେ ଘଟିଛି । କେତେକ ଇଂରାଜୀ ଶିକ୍ଷାପ୍ରାପ୍ତ ଯୁବକ ହୋଇଛନ୍ତି ଆମ ପରମ୍ପରାର ବିରୋଧୀ । କୁସଂସ୍କାରଚ୍ଛନ୍ନ ପାରମ୍ପରିକ ସମାଜ ହୋଇଛି ନାରୀ ଶିକ୍ଷାର ପରିପନ୍ଥୀ । ଏସବୁର ହୃଦୟସ୍ପର୍ଶୀ ରୂପ ସେନାପତିଙ୍କ 'ମାମୁଁ' 'ପ୍ରାୟଶ୍ଚିତ୍ତ., ଉପନ୍ୟାସ ଏବଂ'ରେବତୀ', 'ଡ଼ାକମୁନିସୀ', 'ପାଠୋଇ ବୋହୂ' ଆଦି ଗଳ୍ପରେ ଅଭିବ୍ୟକ୍ତ । ବିଶେଷତଃ ପ୍ରତିଭା ପଣ୍ୟ ହେବାର ଭୟାବହତା ରାଜୀବ ସଦାନନ୍ଦ ପ୍ରଭୃତି ଚରିତ୍ର (ପ୍ରାୟଶ୍ଚିତ୍ତ) ମାଧ୍ୟରେ ପ୍ରଦର୍ଶିତ ।

ପ୍ରେମଚନ୍ଦ ବୃତ୍ତିରେ ଥିଲେ ଶିକ୍ଷକ । ତତ୍‌କାଳୀନ ଶିକ୍ଷା ଓ ଶିକ୍ଷକଙ୍କ ଚିତ୍ର ତାଙ୍କ କୃତି ଗୁଡ଼ିକରେ ଉପଲବ୍ଧ । ଫକୀରମୋହନଙ୍କ ସମୟରେ ଓଡ଼ିଶାରେ କଲେଜ ଶିକ୍ଷାର ବିକାଶ ଘଟି ନଥିଲା । ତେଣୁ ତାଙ୍କ ରଚନାରେ ଅଧ୍ୟାପକ ଚରିତ୍ର ପରିଦୃଷ୍ଟ ନହେବା ସ୍ୱାଭାବିକ । ସେନାପତି ବେତ୍ରଧାରୀ ନିର୍ମମ, ସ୍ୱାର୍ଥୀ ଅବଧାନଙ୍କ ଚିତ୍ର ରାଣ୍ଡୀପୁଅ ଅନନ୍ତାରେ ଅଙ୍କନ କରିଛନ୍ତି । ଏଥିରେ ତାଙ୍କ ଚାଟଶାଳୀରେ ପଢୁଥିବା ଅବଧାନ ଚରିତ୍ର କଳାତ୍ମକ ରୂପ ପରିଗ୍ରହ କରିଛି । ଅନ୍ୟ ପକ୍ଷରେ ପ୍ରେମଚନ୍ଦଙ୍କ 'ଗୋଦାନ', 'କର୍ମଭୂମି' ଓ 'ପ୍ରତିଜ୍ଞା'ରେ କେତେଜଣ ଅଧ୍ୟାପକଙ୍କୁ ଦେଖିବାକୁ ମିଳିଥାଏ ।

'ପ୍ରତିଜ୍ଞା'ରେ ଅଧ୍ୟାପକ ଦୀନନାଥ ବ୍ୟକ୍ତିତ୍ୱ ହୀନ, 'କର୍ମଭୂମି'ରେ ଶାନ୍ତି କୁମାର କେବଳ ଅଧ୍ୟାପକ ଭାବେ ନୁହେଁ, ଜଣେ ଜନସେବକ ଓ ରାଜନୀତିଗ ନେତାଭାବେ ଦେଖାଯାନ୍ତି । 'ଗୋଦାନ'ରେ ଡକ୍ଟର ମେହେତା ଜଣେ ଆଦର୍ଶ ବ୍ୟକ୍ତି । ପ୍ରେମଚନ୍ଦ ଜଣେ ଶିକ୍ଷକ । ସେ ଅଧ୍ୟାପକ ମାନଙ୍କ ଦୁର୍ଗୁଣ ଚିତ୍ରଣ କରିନାହାନ୍ତି । ଅଥଚ ନିଜେ ପତ୍ରିକା ସମ୍ପାଦକ ଏବଂ ତାଙ୍କର ସାହିତ୍ୟ ସାଧନା ପ୍ରାରମ୍ଭରୁ 'ଜମନା'ର ସମ୍ପାଦକ ଜୟ ନାରାୟଣ ନିଗମ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଓ ପରାମର୍ଶ ଦାତା ଥିଲେ । ତାଙ୍କ କଥାସାହିତ୍ୟରେ କେତେକ ଭ୍ରଷ୍ଟ ଚରିତ୍ରହୀନ ସାହିତ୍ୟ ପତ୍ରିକା ସମ୍ପାଦକଙ୍କ ବ୍ୟଙ୍ଗ୍ୟଚିତ୍ର ଉପଲବ୍ଧ । 'ଗୋଦାନ'ରେ କଳ୍ପିତ 'ବିଜୟୀ' ସମ୍ପାଦକ ଓଁକାରନାଥ ଚରିତ୍ରଟି ବିଶେଷ ଆକର୍ଷଣୀୟ । ମାତାଲ ଅବସ୍ଥାରେ ସେ କହିଛନ୍ତି - "ଆମେ ସମସ୍ତଙ୍କ ଦାସ । ଆପଣମାନଙ୍କ ପଦରଜ, ମାଲତୀ ଦେବୀ ଆମର ଲକ୍ଷ୍ମୀ,ସରସ୍ୱତୀ, ଆମର ରାଧା (ଗୋ. ପୃ. ୭୨) ପୁଣି କହନ୍ତି ମୁଁ ତାଙ୍କ (ମାଲତୀ ଦେବୀ) ପାଦପଦ୍ମରେ ହଜାର ହଜାର ଧର୍ମକୁ ସମର୍ପଣ କରିଦେଇଛି । (ତତ୍ରୈବ ପୃ.୭୩) ।

ଉଭୟ ସ୍ରଷ୍ଟା ସମାଜର ଉଚ୍ଚବର୍ଗ ବିଶେଷତଃ କେତେକ ଧର୍ମଧ୍ୱଜୀବ୍ରାହ୍ମଣ ପଣ୍ଡିତମାନଙ୍କୁ ସମାଲୋଚନା କରିଛନ୍ତି । ସେମାନଙ୍କ ମତରେ ମାନବ ସମାଜର ସୁସ୍ଥ ବିକାଶରେ ଏମାନେ ବାଧକ । ପ୍ରେମଚନ୍ଦଙ୍କ ଦୃଷ୍ଟିରେ ଏମାନେ ଧର୍ମକର୍ମହୀନ କୁଟିଳ । ଏମାନେ ଅଭିଶାପର ଭୟ ଦେଖାଇ ଜନତା ଉପରେ ପ୍ରଭାବ ବିସ୍ତାର କରିଥାନ୍ତି । ଇହଲୋକ, ପରଲୋକ, ପାପ ପୁଣ୍ୟ କଥା କହି ସମସ୍ତଙ୍କୁ ପ୍ରତାରିତ କରନ୍ତି । ଏମାନେ ଧନ ପାଇଁ ଧନିକ ମାନଙ୍କ ଗୋଲାମ, ପୁଣି ଗରିବମାନଙ୍କ ଶୁଭ ଚିନ୍ତକ ସାଜି ଜୋକପରି ରକ୍ତ ଶୋଷଣ କରିଥାନ୍ତି । ସେ 'ନିମନ୍ତ୍ରଣ' ଗଳ୍ପରେ ଦୁଇଜଣ ବ୍ରାହ୍ମଣଙ୍କ ଧୂର୍ତ୍ତତା ଓ ଲୋଭୀ ପଣିଆ ଏବଂ 'ଗୋଦାନ'ରେ ଦାତାଦୀନର ଶୋଷଣ ଓ ଭ୍ରଷ୍ଟାଚାରର ମନୋଜ୍ଞ ଚିତ୍ର ପ୍ରଦାନ କରିଛନ୍ତି । ସେ ଚଣ୍ଡାଳ ପରି ହୃଦୟହୀନ, ବିବେକହୀନ, ସ୍ୱାର୍ଥୀବ୍ରାହ୍ମଣ ଗୋଷ୍ଠୀର ପ୍ରତୀକ ଭାବେ ମୋଟେରାମ ଶାସ୍ତ୍ରୀ ଚରିତ୍ର ଚିତ୍ରଣ କରିଛନ୍ତି ।

ଫକୀରମୋହନ ବ୍ୟଙ୍ଗ୍ୟ, ବିଦ୍ରୂପ ଓ ଶ୍ଳେଷ ମଧ୍ୟରେ କ୍ରିୟାକର୍ମହୀନ ମୂର୍ଖ ବ୍ରାହ୍ମଣ ଗୋଷ୍ଠୀର ପ୍ରାଣବନ୍ତ ଚିତ୍ରପ୍ରଦାନ କରିଛନ୍ତି-

ବିଲ ବାଛିବାକୁ ଆଗ । ଦହି ଚୁଡ଼ାକୁ ବାଘ ।
ସନ୍ଧ୍ୟା ଗାୟତ୍ରୀହୀନ । ବିଲରୁ ଚିପନ୍ତି ମୀନ ।
ପୋଥିରୁ ନ ଫିଟେ ଡ଼ୋରି ।
ଯଜମାନ ଚାଉଳ ଚୋରୀ... ଇତ୍ୟାଦି (ଛମା. ପୃ. ୨୫୧) ।

ଫକୀରମୋହନଙ୍କର ସମସ୍ତ ବ୍ରାହ୍ମଣ ଜାତିପ୍ରତି ବିଦ୍ୱେଷ ନଥିଲା । 'ମାମୁ'ର ପଣ୍ଡିତ ସଭାରେ ଉପସ୍ଥିତ ପଣ୍ଡିତମାନଙ୍କ ପାଣ୍ଡିତ୍ୟ ଓ ବିଦ୍‌ବତ୍ତାର ଉଚ୍ଚ ପ୍ରଶଂସା କରିଛନ୍ତି । ଉଭୟ କଥାଶିଳ୍ପୀ ଜାତି ଗୋତ୍ର ବିଦ୍ୱେଷରୁ ଉର୍ଦ୍ଧ୍ୱରେ ରହି ବ୍ରାହ୍ମଣ ପଣ୍ଡିତଙ୍କ ଚିତ୍ର ଅଙ୍କନ କରିଛନ୍ତି । ଅଧିକନ୍ତୁ ଫକୀରମୋହନ ଭଣ୍ଡ ସନ୍ନ୍ୟାସୀଙ୍କ ଛଳନା ଓ ପ୍ରତାରଣାର ମନ୍ମୟ ଆଲେଖ୍ୟ ଆଙ୍କିଛନ୍ତି (ଧୂଳିଆ ବାବା) । ଉଲ୍ଲିଖିତ ଗୋଷ୍ଠୀଙ୍କ ଚିତ୍ରଣରେ ଉଭୟଶିଳ୍ପୀଙ୍କ ମଧ୍ୟରେ କିଞ୍ଚିତ୍ ଦୃଷ୍ଟିଗତ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ । ପ୍ରେମଚନ୍ଦ ବ୍ରାହ୍ମଣମାନଙ୍କ

ଶୋଷକ ସ୍ୱରୂପ ଓ ଲାମଟ୍ୟ ଉପରେ ଅଧିକ ବର୍ଣ୍ଣନା କଲାବେଳେ ଫକୀରମୋହନ ସେମାନଙ୍କ ମୂର୍ଖତା, ଲୋଭ, ପ୍ରବୃତ୍ତି ଓ ଭଣ୍ଡାମି ଉପରେ ପ୍ରାଧାନ୍ୟ ଆରୋପ କରିଛନ୍ତି ।

ଯୁଗଜୟୀ ସ୍ରଷ୍ଟା ଫକୀରମୋହନ ଓ ପ୍ରେମଚନ୍ଦଙ୍କ କଥାସୃଷ୍ଟିରେ ଚିତ୍ରିତ ସମକାଳୀନ ଭାରତୀୟ ସମାଜର ସାମଗ୍ରିକ ସମଗ୍ରତା (Total aggregate) ପରିଲକ୍ଷିତ । ପୁଣି ସେମାନଙ୍କ ଗଳ୍ପ-ଉପନ୍ୟାସରେ ଉପସ୍ଥାପିତ ବାସ୍ତବ ସମାଜର ଚିତ୍ର ମଧ୍ୟରେ ସାମାଜିକ ଦୋଷ ଦୁର୍ବଳତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରାଯାଇଛି । ଏତଦ୍ ସତ୍ତ୍ୱେ ସ୍ରଷ୍ଟାଦ୍ୱୟ ସଂସ୍କାରକ ନଥିଲେ, ଥିଲେ ଦିବ୍ୟଦ୍ରଷ୍ଟା ଶିଳ୍ପୀ । ସେମାନଙ୍କ କଥାଶିଳ୍ପରେ ପୁରୋଦୃଷ୍ଟି ସହିତ ଶୈଳ୍ପିକ ନିପୁଣତା ଯେପରି ରହିଛି, ସେହିପରି ସେଥିରେ ଅତୀତ ଓ ବର୍ତ୍ତମାନର ପୃଷ୍ଠଭୂମିରେ ଭବିଷ୍ୟତର ମାର୍ଗଦର୍ଶନ ମଧ୍ୟ ଉପଲବ୍ଧ ।



# ଉଠାମାଞ୍ଚ

ମିନ୍ଟୁ ଦଳେଇ ବିଡ଼ି ଖଣ୍ଡକ ଶେଷଥର ପାଇଁ ଟାଣିନେଇ ଚଟାଣରେ ଘଷି ଲିଭାଇ ଦେଲେ । ଆଉ ମାତ୍ର ଦେଢ଼ ଆଙ୍ଗୁଳି ବାକିଥାଏ । ଘଣ୍ଟାକ ଭିତରେ ବିଡ଼ି ଖଣ୍ଡକ ଥର ଥର କରି ତିନିଥର ଲଗାଇ ଶୋଷି ସାରିଲେଣି । ପାନ ଡ଼ବାରୁ ଦୋକତାଟିକେ ଚୂନ ଦେଇ ଦଳି ଲାଗିଲେ । ସେଥିରୁ କଳେ ପଡ଼ିଲେ ସମୟଟା କଟିଯିବ ।

ସଂଜ ବୁଡୁବୁଡୁ ସେ ସଜ ପଖାଳ କଂସେ ଓ ଶାଗ ଖରଡ଼ା ଟିକେ ଖାଇ ଦାଣ୍ଡରେ କେତେଥର ଏପଟ ସେପଟ ହେଲେଣି । ଦାଣ୍ଡ ଘରକୁ ଆସି ଦେଖନ୍ତି ବୋହୂ କେତେବେଳେ ବିଛଣା ପାରିଦେଇ ଗଲାଣି । ହେଁସ ଉପରେ ପଡ଼ିଛି ଅଧାଚିରା କନ୍ଥା, ତା ଉପରେ ଖଣ୍ଡେ ହାତବୁଣା ଖଦି ଚଦର । ଗତମାସରେ ରାମ ମଳିକର ସଫେଇ ସାକ୍ଷୀ ହୋଇ ଖିଆପିଆ ବାଟଖର୍ଚ୍ଚ ବାହାରେ ତିରିଶଟଙ୍କା ପାଇଥିଲେ ସେଥିରେ ଏଇ ଚଦରଟା କିଣା ହୋଇଥିଲା ।

ବୁଢ଼ୀ ଚାଲିଯିବାର ତିନିବର୍ଷ ହେଲାଣି । ବୋହୂ ଆସିବା ଦିନରୁ ନିୟମିତ ବିଛଣା ପକାଇ ଦିଏ ଆଉ ତାଙ୍କ ଗୋଡ଼ ଘଷି ନଦେଲେ ନିଦ ହୁଏନି । ଆଜି ସେ ଦୁଇଥର ଏପଟ ସେପଟ ହେଉଥିଲା । ଦଳେଇ ମନାକଲେ ମୋ ଶୋଇବା ଡ଼େରି ହେବ, ତୁ ଯା' ଶୋଇପଡ଼ । ସେ ବୋଧେ ଶୋଇ ପଡ଼ିବଣି । ପୁଣି ଭାବି ଲାଗିଲେ ଏବେ ପୁଷମାସ, ପାଞ୍ଚ ବର୍ଷପରେ ପାଳି । ଫନ୍ଦି ଫିକର ନକଲେ ଧନ କ'ଣ ବଳେ ବଳେ ଆସି ଘରେ ପଶିବ ?

ପୁଅତ ଅଯୋଗ୍ୟ ହେଲା । ତିନିଥରରେ ମେଟ୍ରିକ ପାଶ୍ କରି ଘରେ ବସିଛି । ଘର ନ ଚଳିବାରୁ ତାକୁ ହାତକୁ ଦିହାତ କଲି । ବାହାଘର ବର୍ଷେ ପୂରିଲା ବେଳକୁ ନାତି, ଏବେ ପୁଣି କ'ଣ ହେବ ? ଘରେ ଅଭିଆଡ଼ି ଝିଅ । କୁଟୁମ୍ବ ବଢ଼ି ଚାଲିଛି । ମୁଣ୍ଡ ଉପରେ ବୋଝ । ପୁଅ ଚାକିରୀ ନ କଲେ ବି ସାତ ପୁରୁଷ ଜମିତକ ଚଷନ୍ତା ।ପାଠୁଆ ପିଲା ପୁଣି ହଳ ଧରିବେ ? ଲଗାନାହିଁକି ପଘା ନାହିଁ । ସେ ଫୁଲା ଫାଙ୍ଗୁଲା ହୋଇ ସାଙ୍ଗ ସରିସା ସହିତ ମଉଜ ମଜଲିସରେ ଭୋଳ । ପଇସାଟେ ଅର୍ଜନ ନାହିଁ ବରଂ ଧାନ ଚାଉଳ ବିକି ହାତ ଖରଚ କରୁଛି । ତିନିମାଣ ଜମି ଉପରେ ସବୁ ନିର୍ଭର କରି ଚଳି ହେବ ବା କିପରି ? ଦି'ପଇସା ଉପୁରି ନହେଲେ ନହୁଏ । ଲୋକେ ଏବେ ତରଙ୍କ ଗଲେଣି । ଟରଣିଗିରି ଆଉ ଚଳୁନି । ପାଠୁଆ ଟୋକାଗୁଡ଼ାକ ସବୁ ବିଗାଡ଼ି ଦେଉଛନ୍ତି । ମକଚ ଦୋକତାକୁ ପାଟିରେ ପକାଇ ଦଳେଇ କାନ ଡ଼େରିଲେ । ମଟର ହର୍ଣ୍ଣ ଶୁଭିଲା କି ? ରାତି ଆସି ସାତଘଡ଼ି, ସାଇଟା ଶୂନଶାନ, ମଝିରେ କେତେବେଳେ କିମିତି ଚିପା ପାଦ ଶବ୍ଦ ଏବଂ ଫୁସ୍ ଫୁସ୍ କଥା ।

ଦଳେଇ ଆଉଜା କବାଟଟା ମେଲାଇ ଅଧା ପରଳ ଆଖିରେ ନିରେଖି ଚାହିଁଲେ କାହିଁ ଆଲୁଅ ପଡୁନି । ପୁଣି ଯାଇ ଶେଯ ଉପରେ ବସିଲେ । ଡିଆସିଲିଟା ଅଣ୍ଟାରେ ଖୋସିଲେ ଓ ଲଣ୍ଠନଟା କମାଇଦେଲେ ରାତି ପାଇଲେ ଭୋଟ । ହାକିମମାନେ

କାଲି ସଞ୍ଜରୁ ଆସି ସ୍କୁଲଘରେ ଡେରା ପକାଇଲେଣି । କାଲି ରାତିରେ ସେମାନଙ୍କ ପାଖକୁ  ଯାଇଥିଲି । ସେମାନଙ୍କର ଯାହାସବୁ ଦରକାର ଶସ୍ତାରେ ଯୋଗାଇ ଦେବି ବୋଲି କହିଲି । ପରିବା, ଦୁଧ, କାଳ ଆଦି ସାଇରୁ ମାଗିଯାଚି ପଠାଇଲି । ଦଶ ପାଞ୍ଚ ପନ୍ଦର ଟଙ୍କା ମିଳିଗଲା । ଦୀପ ନ ତେଜିଲେ ହାତ କ'ଣ ଚିକ୍‌କଣ ହୁଏ !

ଜାତିପୁଅଟା ଏସନ ଭୋଟରେ ଠିଆ ହୋଇଛି । ଛତା ପାର୍ଟି ନୁହେଁ କି ସାଇକେଲ ପାର୍ଟି ନୁହେଁ । କହିଲା କ'ଣ ନା ପାର୍ଟି ଫାଟି କିଛି ନୁହେଁ, ସ୍ୱାଧୀନ । ପାର୍ଟିରୁ କ'ଣ ମିଳିବ । 'ମୁଁ କହିଲି-ସବୁ ହେଉଛି ଟଙ୍କା । ଲୋକେ କହୁଛନ୍ତି ନୋ'ଟ ଦିଅ ଭୋ'ଟ ନିଅ । ଭାବିଲି – ଜାତିପୁଅଟା, ମୁହଁ ମୁଲେଇଜା ଅଛି । କହିଲି-ବାବୁ ଆମେ ଆପଣଙ୍କୁ ଭୋ'ଟ ନଦେଇ ଆଉ କାହାକୁ ଦେବୁ । ସବୁ ଯାଉ ଜାତି ଥାଉ । କ'ଣ କି ମୁଁ ସିନା ଜାତିପୁଅମାନଙ୍କୁ ବଳେଇ କରି କହିବି । କିନ୍ତୁ ଅଣସଜାତିରତ ବେଶି ଭୋ'ଟ । ସେମାନଙ୍କ ପାଇଁ କିଛି ବ୍ୟବସ୍ଥା ନକଲେ ନହୁଏ । ହାତଗୁଞ୍ଜା, ନିଶାପାଣି ଅଫିମ କେଇଟେଲା ନ ଦେଲେ କ'ଣ ହେବ? ସେ ଦୋଦୋ ପାଞ୍ଚ ହେଲା । ମୁଁ ଠଉରେଇ ନେଇ କହିଲି- ବିଶ୍ୱାସ ହେଉନି । ତମ ଶ୍ୱଶୁର ପରା ମୋର ଭିଣେଇଙ୍କ ଶଳା । ମୋ ପୁଅ ନାରେଣିଆ ତମର ଏଜେଣ୍ଟ ହେବ । କିନ୍ତୁ ବାବୁ, ତୁମକୁ ବେଶି ପଇସା ଖର୍ଚ୍ଚ କରେଇ ଦେବି ନାହିଁ । ତିନିଶଟଙ୍କା କାଢ଼ । ସେତିକିରେ ମୁଁ ସବୁ ଚଳେଇ ନେବି । ସେ ଥ, ଥ,  ମ, ମ, ହୋଇ କାଢ଼ିଲା ମାତ୍ର ଶହେଟା ଟଙ୍କା । ମୁଁ କହିଲି ଏତିକିରେ ହେବ କିମିତି ? ସେ ପୁଣି କହିଲା, ମଉସା ପଛରେ ଆଉଦେବି । ମୁଁ କହିଲି ଯେତେବେଳେ ଯୋଉକଥା ।  ଓହ୍ଲେଇଲା ହାଣ୍ଡି ଶୀତଳ । ମୁଁ କ'ଣ ମୋ ପାଇଁ ମାଗୁଛି । ହରେ ରାମ । ବନ୍ଧୁ ବାନ୍ଧବଙ୍କଠାରୁ ପଇସା ଖାଇଲେ ଧର୍ମ ସହିବ ? ମଲା ବେଳକୁ ପାପ । ସେ ମୋ ମୁହଁକୁ ଟିକେ ଚାହିଁ ପୁଣି ପଚାଶ ଟଙ୍କା ବାହାର କଲା । ଭାବିଲି ହଉ ଯେତିକି ମିଳିଲା । ଚୋରଠାରୁ ବିଧାଟେ ମିଳିଲେ ବିସିଲ । ତାକୁ ପଚାରିଲି ତମର ବାବୁ କି ଚିହ୍ନ ? ସେ କହିଲା – 'ମାଠିଆ' । ହିଁ ଏଥର ମାଠିଆ ପୂରିଲା ବୋଲି ଜାଣ । ଭୋ'ଟ ଗଣିଲାବେଳେ ଦେଖିବ ! କିନ୍ତୁ ଗୋଟିଏ ଭୟ, ଆରପକ୍ଷରୁ ରାତି ଅଧିଆ ଯଦି ଆଖିଦୃଶିଆ ମିଳେ ମୁଁ ନାଚାର । ସବୁ କଥା ଥାଉ ଭାଗ୍ୟ ହେଉଛି ବଡ଼ । ରାଜଯୋଗ ନଥିଲେ କିଏ ଭୋ'ଟରେ ଜିତିଲାଣି ? ଯାହାହେଉ ମୋ ଦୋଷ ଛଡ଼େଇ ଦେଇଛି ।

ଦିପହରିଆ ବିଲୁଆଗୁଡ଼ାକ ଭୁକି ଉଠିଲେ ହୁକେ ହୋ, ହୋ ... । ସେମାନଙ୍କ ସହିତ ଦୁହା ମେଳିଲେ ସାଇ କୁକୁରଗୁଡ଼ାକ । ନାତିଟା ଭୟରେ କାନ୍ଦି ଉଠିଲା । ଦଳେଇ ଅସ୍ଥିର ହୋଇ ଗାଁ ଟୋକାଗୁଡ଼ାଙ୍କୁ ଗାଳିଦେଇ ଲାଗିଲେ- ଝଉରାଏ ସାଇକେଲ ପାର୍ଟିକି ତରକେଇ ଦେଲେ । ତାଙ୍କୁ କହିଲେ କ'ଣ ନା ଏ ବୁଢ଼ା ହଡ଼ା ମୂର୍ଖଙ୍କ କଥା ଆଜି କିଏ ମାନୁଛି । ହଉ ଦେଖିବା ସାଇକେଲପାର୍ଟି କେମିତି ଭୋ'ଟ ପାଇବ ! ନ୍ୟାୟ ନିଶାପ ପଞ୍ଚୁଆତି କରି ଦିହକଗଲା । ବାଳ ପାଚିଲାଣି । ସବୁ ପେଞ୍ଚ ମିଛୁ ଦଳେଇ ହାତରେ । ଘର ଘର ବୁଲି କହି ଆସିଛି – ସାଇକେଲ ପାର୍ଟି ପାଣିପରି ପଇସା ବିଞ୍ଚୁଛି । ଗାଁ ଟୋକାଦଳ ଅତି କମରେ ଦଶ ପନ୍ଦର ହଜାର ଟଙ୍କା ପକାଇଛନ୍ତି । କହୁଛନ୍ତି କ'ଣ

ନା ବଇଠକ ଘର କରିବେ, ଜନ୍ତାଳ କରିବେ । ଲୋକଙ୍କୁ ବୁଝେଇ ଦେଲି- ଏମିତି ତ କାହା ବାଡ଼ିରେ ଫଳ ଫୁଲୁରି, ପୋଖରୀରେ ମାଛ, ଘରେ କୁକୁଡ଼ା ଏପରିକି ଛେଳି ଖାସି ରହୁନି । ବଇଠକ ଘର ହେଲେ ଦୁନିଆଁ ଉଜୁଡ଼ି ଯିବହିଁ ଯିବ । ସତ କହୁଛି ଭାଇମାନେ ଖଣ୍ଡେ ଭୋ'ଟକୁ ଶହେ ଟଙ୍କା ନହେଲେ ରଖିବେନି । ପୁଣି ଟୋକାଦଳଟା କହିବୁଲି ଲାଗିଛି - ସାଇକେଲ ପାର୍ଟିରେ ଭଲଲୋକ ଜଣେ ଠିଆ ହୋଇଛି । ମୁଁ ବୁଝେଇ ଦେଲି - ସମସ୍ତେ ଦେଖିବେ ଯେ ଯାହାର ସ୍ୱାର୍ଥ । ପ୍ରଥମେ ଭୋ'ଟ ମାଗିଲା ବେଳକୁ ସମସ୍ତେ ଭଲ ! କିନ୍ତୁ ଭୋଟ ପାଇବାପରେ କେହି ଆମକୁ ପଚାରିବେନି । ହଇଏ, ଆମେ ସାଇକେଲ ପାର୍ଟିକି ଧରିଲେ କ'ଣ ହେବ ? ମୁଁ ସହରରେ ଦେଖିଲି ଛତା ପାର୍ଟିର ଜୟ ଜୟକାର । ହାକିମ ହୁକୁମାଠାରୁ ଆରମ୍ଭ କରି ରିକ୍ସାବାଲା ପର୍ଯ୍ୟନ୍ତ ସମସ୍ତେ ଢ଼ଳିଛନ୍ତି ସେଇ ଆଡକୁ । ଆମେ ଦିଏ ବା ନ ଦିଏ, ଏଥର ଛତାପାର୍ଟି ଭୋଟ ନିଶ୍ଚେ ପାଇବ ।

ଦଳେଇ ଫତେଇ ମୁଣିରୁ ଆଉଖଣ୍ଡେ ବିଡ଼ି ବାହାର କରି ନିଆଁ ଧରାଇଲେ । ବାହାରକୁ ଆସି ଆକାଶକୁ ଚାହିଁଲେ । ଦଶମୀ ଜହ୍ନଟା । କଳାପଡ଼ି ଆସିଲାଣି । ମନଟା ଟିକେ ମରିଗଲା, ହତାଶ ହୋଇ ଏଣିକି ଚାହିଁଲେ । ଟିକିଏ ଦୂରରୁ ଚିପା ପାଦଶବ୍ଦ ଶୁଣି ପରିସ୍ତାକରି ବସିଲେ । ବୋଧେ ତାଙ୍କୁ ଦେଖି ସେମାନେ ଫେରିଗଲେ । କବାଟ ଆଉଯାଇ ଘର ଭିତରକୁ ଆସିଲେ । ମନେ ହେଲା ଖାଇ ବସିଲା ବେଳକୁ କିଏ ଯେପରି ତାଙ୍କ ଭାତ ଥାଳିଟା ଛଡ଼ାଇ ନେଉଛି ।

ଦଳେଇ ଗୁମ ହୋଇ ବସି ଚିନ୍ତାକଲେ - ଛତା ପାର୍ଟିର ବାବୁ ସରକାରୀ ଦଳର । ଗାତୁଆ ମୂଷା । ବ୍ୟବସାୟୀ ଲୋକ । ଠିକ୍ ସମୟରେ ନିଶ୍ଚୟ ଆସିବ । ତନ୍ଦ୍ରା ଓ କ୍ଳାନ୍ତିରେ ବୁଢ଼ା ଟିକିଏ ଢୁଳେଇ ପଡ଼ିଲେ । କିଛିକ୍ଷଣପରେ ଘୁମଟା ହଠାତ୍ ଭାଙ୍ଗିଗଲା । ବାହାରକୁ ଆସି ଦେଖିଲେ ଟିକିଏ ଦୂରରେ କିଏ ଦୁଇ ଚାରିଜଣ ଟୁପ୍ ଟାପ କଥାବାର୍ତ୍ତା ହୋଇ ଆସୁଛନ୍ତି । ସେମାନେ ପାଖେଇ ଆସିବାରୁ ଦଳେଇ ତିନିଥର ଖଣ୍ଡିକାଶ ମାରିଲେ । ସେମାନଙ୍କ ମଧ୍ୟରୁ ବାବୁଜଣେ ଆଗେଇ ଆସି ଯୋଡ଼ ହସ୍ତରେ କହିଲେ- 'ମଉସା ନମସ୍କାର' । ଦଳେଇ ଟିକିଏ ନିରେଖି ଚାହିଁଲେ ଆଉ ଭାବିଲେ ଶେଉଳଟା ଉଠିଛି, ଏଥର ଛକି, ମୁଣ୍ଡରେ ଦିକାଠ ଦେବା ଦରକାର ।

ବାବୁ କହିଲେ - 'ମଉସା ! ଆପଣଙ୍କ ଉପରେ ଭରସା ରଖି ଏତେ ରାତିରେ ଆସିଛି । ଦଳେଇ ଏଇ କଥା ପଦକରେ ପୁଲକି ଉଠିକହିଲେ- ବାବୁ, ମୋର ବଡ଼ ଭାଗ୍ୟ ଯେ ଆପଣଙ୍କ ପାଦ ଏଇ ଗରିବ କୁଡ଼ିଆରେ ପଡ଼ିଲା । ଭିତରକୁ ଆସ । ସେ ଘର ଭିତରକୁ ପଶିଯାଇ କମେଇ ରଖିଥିବା ଲଣ୍ଠନ ଶିଖାଟାକୁ ତେଜିଦେଲି । ଦେଖିଲି ବାବୁଙ୍କ ସହିତ ଗାଁ ଟୋକା ଦଳରୁ ଦୁଇଜଣ ଅଛନ୍ତି । ଦଳେଇଙ୍କ ମୁହଁ ଫିକା ପଡ଼ିଗଲା, ପୁନେଇଁ ଚନ୍ଦ୍ରକୁ ହଠାତ୍ କଳା ଘୁମର ମେଘଖଣ୍ଡ ଘୋଡ଼େଇ ଦେଲା କିନ୍ତୁ ଦଳେଇ ହଟିଯିବାର ଲୋକ ନୁହନ୍ତି । ଟିକିଏ ସତର୍କ ହୋଇ ଏକାନ୍ତ ଆପଣାର ପରି କଥା ଆରମ୍ଭ କଲେ ।

ମୁଁ ସବୁ ଠିକ୍ ଠାକ କରି ରଖିଛି । ବାଉରି ସାଇଟା ହାତରୁ ଖସିଯାଉଥିଲା,

ତାଙ୍କୁ ବୋଧ ଶୋଧ ଦେଇ ସମ୍ଭାଳିଛି । ବାସେଳି ଠାକୁରାଣୀଙ୍କୁ ଡାକୁଥିଲି, ବାବୁ କେମିତି ଶୀଘ୍ର ଆସନ୍ତୁ । ଯାହା ହେଉ ଠିକ୍ ସମୟରେ ଆସିଗଲେ । ଭୋ'ଟ ଖଣ୍ଡିକୁ ୫୦ଟଙ୍କା ନ ଦେଲେ ନହୁଏ । ବୋହୂ-ଭୂଆସୁଣୀ ଯିବା ପାଇଁ ଭଡ଼ା ଶଗଡ଼ ଗାଡ଼ି କେଇଟା ଦରକାର । ବାବୁ ଗାଆଁର ଟୋକା ଦିଟାଙ୍କ ଆଡକୁ ଋହିଁ କହିଲେ ଏ ବାବୁ ଦୁହିଁଙ୍କ ସହିତ ବାଉରି ସାଇଟା ବୁଲି ଆସିଲିଣି । ଦଳେଇ ବୁଢ଼ା ଭାବିଲା - ମୁଁ ଶୁଣିଥିଲି ସଞ୍ଜବେଳେ ଟଙ୍କା ବଣ୍ଟରା ନେଇ ଟୋକା ଦଳକ ମଧ୍ୟରେ ହାଙ୍ଗାମା ଲାଗିଥିଲା । ଟୋକା ଦିଟା ଗୋଠରୁ ଫିଟି ଆସି ମୋର କଣ୍ଢା ହେଲେ । ଦଳେଇ ଘଡ଼ିଏ ପର୍ଯ୍ୟନ୍ତ କ'ଣ କହିବେ କିଛି ସ୍ଥିର କରି ପାରିଲେ ନାହିଁ । ଶେଷକୁ ଥମ ଥମ ହୋଇ କହିଲେ, 'ମୋ ହାତରେ ଛଅଟା ଭୋଟ । ସେଥିପାଇଁ କିଛି ମିଳୁ । 'ଗାଆଁ ଟୋକାଙ୍କ ଭିତରୁ ଜଣେ କହିଲା, ବଡ଼'ପା ତମଘରେ ତ ଋରିଟା ଭୋ'ଟ । ସଞ୍ଜବେଳେ ଆମେ ନାରଣକୁ ଋରିଟା ଚିରୁକୁଟି ଦେଇଛୁ । ଚତୁର ଦଳେଇ ସାଥି ସାଥି କହିଲେ, ମୋ ଘର ଭୋ'ଟ କେଇଟା ପାଇଁ ଟଙ୍କା ନେବି ? ଗାଆଁର ଅନ୍ଧ ଛୋଟା ମୂଲିଆ-ମଜୁରିଆଙ୍କ ହିସାବ ନେଇଛ କି ? ସେମାନେ ବିଋରା ନିକିମା ହେବେ ! ପ୍ରାର୍ଥୀ ବାବୁ ଟିକିଏ କ'ଣ ଭାବି ଦୁଇଖଣ୍ଡ ଶହେ ଟଙ୍କିଆ ନୋଟ ଗୁଞ୍ଜି ଦେଲେ । ଦଳେଇ କୃତ୍ୟ କୃତ୍ୟ ହୋଇ ଦି'ଖଣ୍ଡକୁ ଫତେଇ ପକେଟରେ ରଖି କହିଲେ, ଏଥିରେ ମୋର ପଇସାଟିଏ ବି ମୁନାଫା ନାହିଁ । ବାବୁ ଜିତିଲେ ଯାଇ ମୋ ମାଗୁଣି । ସାଇକେଲ ଗଡ଼ିବ, ମାଠିଆ ଫମ୍ପା ପଡ଼ିବ, ଆଉ ବାବୁଙ୍କ ମୁଣ୍ଡରେ ଛତି ନିଷ୍ଚେ ଉଠିବ । ବାବୁ ନିଷ୍ଚୟ କହି ହାତଯୋଡ଼ି ବିଦାୟ ନେଲେ ।

X X X

ଛତାପାର୍ଟି ବହୁ ଭୋଟରେ ଜିତିଲା । ଛତା ହେଲେ ଶିକ୍ଷା ମନ୍ତ୍ରୀ । ଦୁଇ ମାସ ପରେ ଦଳେଇ ବୁଢ଼ା ଯାଇ ମନ୍ତ୍ରୀଙ୍କ କୋଠି ଆଗରେ ହାଜର । ଗେଟ ଜଗିଥିବା ଦରୁଆନ ତାଙ୍କୁ ଛାଡ଼ିଲା ନାହିଁ । ଦଳେଇ କହିଲେ, ମୁଁ ମନ୍ତ୍ରୀଙ୍କ ଖାସ ଲୋକ । ସମସ୍ତେ ତ ସେଇଆ କହୁଛନ୍ତି । ଆମେ କ'ଣ ଦୁଆରେ ଜଗି ରହିଛୁ । ମନ୍ତ୍ରୀ ଏବେ ଗୋଟେ ଜରୁରୀ ପ୍ରୋଗ୍ରାମରେ ବାହାରିଛନ୍ତି । ସହରରେ ଏକ ଶୌଚାଳୟର ଶୁଭ ଦେବେ । ଦଳେଇ ବୁଝିଗଲେ ଏସବୁ ଅଣ୍ଟାଗୁଞ୍ଜା ପାଇବାର ଫିକର । କିନ୍ତୁ ସେ ଦେହର ମଳି ଛାଡ଼ିବାର ଲୋକ ନୁହନ୍ତି ।

ଟିକିଏ ଭାବି ମିଛୁ ଦଳେଇ କହିଲେ, ହଉ ବାବୁ ଭିତରକୁ ନଗଲେ ନାହିଁ, ମୁଁ ଏଇଠି ଟିକେ ବସି ପଡୁଛି । ଦଳେଇ ବସି ପଡ଼ିବାରୁ ଦରୁଆନ ରାଗି ତୋନାଲ । 'ତୁମେ ନିଷ୍ଚୟ ବିରୋଧୀ ପକ୍ଷର' । ନହେଲେ ଗେଟ୍ ପାଖେ ଧାରଣା ଦିଅନ୍ତ କାହିଁକି ? ବୁଢ଼ା ! ତୋର ମାମୁଁ ଘରକୁ ଯିବାକୁ ଇଚ୍ଛା ହେଲାଣି କି ? ଏମିତି ବସି ରହିଲେ ପୋଲିସ ଗାଡ଼ି ଆସି ମାମୁଁ ଘରକୁ ଟେକି ନେବ । ଦଳେଇ ବୁଢ଼ା ଚମକି ଉଠି ପଡ଼ିଲେ- ହଉ ତେବେ ଗଛ ପାଖରେ ଠିଆ ହେଉଛି

ଅଧଘଣ୍ଟାକ ପରେ ମନ୍ତ୍ରୀ ସଦଳବଳେ ବାହାରିଲେ । ଗେଟ୍ ପାଖରୁ ଗାଡ଼ି ବାହାରିଲା ବେଳକୁ ଦଳେଇ ମନ୍ତ୍ରୀଙ୍କ ଗାଡ଼ି ଆଗକୁ ଧାଇଁ ଆସିଲେ । ବୁଢ଼ା ଭାଗ୍ୟଭଲ ଡ୍ରାଇଭର ସଡ଼ନ ବ୍ରେକ ଦେଇ ଗାଡ଼ିଟା ରଖିଦେଲା । ବୁଢ଼ା ସେତେବେଳକୁ ଛାନିଆରେ

ପଡ଼ିଯାଇଥିଲେ । ମନ୍ତ୍ରୀ ଆଉ ତାଙ୍କ ପାଖ ଲୋକେ ଗାଡ଼ିରୁ ଓହ୍ଲାଇ ପଡ଼ିଲେ । ବୁଢ଼ା ଧଡ଼ ପଡ଼ ହୋଇ ମନ୍ତ୍ରୀଙ୍କୁ ଚାହିଁ କହିଲେ ଆଜ୍ଞା ମୁଁ ମିଛୁ ଦଳେଇ । ମନ୍ତ୍ରୀ ଦୋ ଦୋ ଚିହ୍ନା ହୋଇ ବୁଢ଼ା ମୁହଁକୁ ଚାହିଁ ରହିଥାନ୍ତି । ମନ୍ତ୍ରୀଙ୍କ ସାଥିରେ ଦଳେଇଙ୍କ ସାଇ ଟୋକା ମଧ୍ୟରୁ ଜଣେ ଥିଲା । ସେ କହିଲା, 'ବଡ଼'ପା ତମେ ଏଠି କାହିଁକି ' ? ମନ୍ତ୍ରୀ ଏଥର ଦଳେଇଙ୍କ ମୁହଁକୁ ଚାହିଁ କହିଲେ, ମଉସା ମୁଁ ଏକ ଜରୁରୀ କାର୍ଯ୍ୟରେ ଯାଉଛି । ଫେରିଲା ବେଳକୁ ସଞ୍ଜ ହେବ । ତୁମେ ସେତେବେଳେ ଆସି ଦେଖା କରିବ ।

ଦଳେଇ ସଞ୍ଜ ହେବାର ବହୁ ଆଗରୁ ଆସି ଅପେକ୍ଷା କରିଥିଲେ । ମନ୍ତ୍ରୀ ଫେରିଲେ ରାତି ନଅରେ । ଭାଗ୍ୟକୁ ଦେଖା ମିଳିଲା । ଦଳେଇ ବଡ଼ କାକୁତି ହୋଇ ମନ୍ତ୍ରୀଙ୍କୁ ଜଣାଇଲେ- ବାବୁ ମୋ ନାରଣ କଥା ଟିକେ ବୁଝନ୍ତୁ । ସେ ମେଟ୍ରିକ ପାଶ କରି ଘରେ ବସିଛି । ଆପଣଙ୍କ କଲମ ଗାରରେ ସେ କୂଳରେ ଲାଗିଯିବ । ଗୋଟେ ସ୍କୁଲରେ ରଖି ଦିଅନ୍ତୁ । ମନ୍ତ୍ରୀ କହିଲେ, 'ମଉସା ଆପଣ ସମସ୍ତଙ୍କ ପରି ଅବୁଝା ହେଉଛନ୍ତି । ପାଠପଢ଼ି ସମସ୍ତେ ଚାହୁଁଛନ୍ତି ଚାକିରୀ । ଏତେ ଚାକିରୀ ଆସିବ କୁଆଡୁ ? ହଉ ମୁଁ ମଙ୍ଗୁ ବାବୁଙ୍କୁ କହୁଛି । ସେ ତମକଥା ବୁଝିବେ । ଏତିକି କହି ମନ୍ତ୍ରୀ ମହାଶୟ ଉଠି ପଡ଼ିଲେ ।

ମନ୍ତ୍ରୀଙ୍କ ଅତି ଆପଣାର ଲୋକ ମଙ୍ଗୁ ବାବୁ । ସେ ଦଳେଇଙ୍କୁ ଅଫିସ ବାରଣ୍ଡାର ଗୋଟିଏ କ'ଣକୁ ଡାକି କହିଲେ 'ମଉସା, ଚାକିରୀ କ'ଣ ଏମିତି କଥାରେ ହୁଏ ? ଏବେ ଆମ ଶିକ୍ଷା ଜିଲାର ଡ଼ିଆଇଙ୍କ ଅଣ୍ଡରରେ ମାତ୍ର ୧୨ଟା ଶିକ୍ଷାକର୍ମୀ ପୋଷ୍ଟ ଖାଲି ଅଛି । ସେଥିପାଇଁ ହଜାର ହଜାର ଲୋକ ମନ୍ତ୍ରୀଙ୍କ ପାଖକୁ ଦଉଡୁଛନ୍ତି । ସେ ତମ ପାଇଁ ଗୋଟେ ଫୋନ କରିଦେଇ ପାରନ୍ତି । ସେତିକିରେ କ'ଣ ହେବ ? ଏମିତି କେତେ ଫୋନ କଲେଣି । ଆଜିକାଲି ମନ୍ତ୍ରୀଙ୍କ ଫୋନକୁ ଅଫିସରମାନେ ମାନୁ ନାହାନ୍ତି । ସେମାନଙ୍କର ପୁଣି ପେଟ ପାଟଣା ଅଛି । ସମସ୍ତେ ପୁଣି ନପାଇଲେ ନହୁଏ । ମନ୍ତ୍ରୀ ବା କ'ଣ କରିବେ? ଦେଖିଲ ତ ଭୋଟରେ କେତେ ଖର୍ଚ୍ଚ କଲେ । ଆଗ ଭୋଟ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ସେତେବେଳେ ଆପଣମାନେ ଭୋଟ ଖଣ୍ଡିକୁ ୧୦୦ ଟଙ୍କା ଦାବୀ କରିବେ । ମନ୍ତ୍ରୀଙ୍କ ଉପରେତସବୁ ଚାପ । ନିୟମିତ ମୋଟା ପାର୍ଟିଚାନ୍ଦା, ନଗାହାରୀ କର୍ମୀମାନଙ୍କୁ ମାସିକ ଭତ୍ତା, ତା ବାହାରେ ସଭା ସମିତି, ଚାନ୍ଦା ଭେଦା ଓ ଦାନ ଖଇରାତ ଅଛି । ଆସନ୍ତା ଭୋଟରେ ପୁଣି ଜିଣି ଆସିବାର କିଛି ନିଶ୍ଚିନ୍ତତା ଅଛି ? ତେଣୁ ଭବିଷ୍ୟତ ନଦେଖିବେ କିପରି ? ସେ ଯାହା ହେଉ ଗୋଟିଏ ଶିକ୍ଷା କର୍ମୀ ଚାକିରୀ ପାଇଁ, ନଗଦ ନାରାୟଣ ଦଶହଜାର ନଦେଲେ ନହୁଏ । ତୁମେ ମନ୍ତ୍ରୀଙ୍କ ନିର୍ବାଚନ ମଣ୍ଡଳିର ଲୋକ । ଏଣୁ ତୁମକୁ ୩୦୦ ବା ୫୦୦ ଛାଡ଼ ମିଳିପାରେ ।

ଦଳେଇ ମଙ୍ଗୁବାବୁଙ୍କ ମୁହଁକୁ ଏକଲୟରେ ଚାହିଁ ଠିଆ ହୋଇଥାନ୍ତି । ଶେଷ କଥା ପଦକ ଶୁଣି ଲଥ କରି ବସି ପଡ଼ିଲେ ।



# କାଙ୍ଗାଳିମାଷ୍ଟ୍ରେ

ମାସକେତୋଟି ପୂର୍ବରୁ ପୁରୀ ଜିଲ୍ଲାସ୍କୁଲରେ ସହକାରୀ ଶିକ୍ଷକ ଭାବରେ ଯୋଗଦେଇଥାଏ । ୧୯୬୯ ମସିଆ କଥା । ମାର୍ଚ୍ଚମାସ । ଖେଳଛୁଟି ଘଣ୍ଟା ବାଜିବାରୁ ସବୁଦିନ ପରି ସେଦିନ ସ୍କୁଲସାମ୍ନା ମୁଚୁକୁନ୍ଦ ଗଛମୂଳ ଚଉତରାରେ ଗୋଡ଼ତଳକୁ ଝୁଲାଇ ବସିଥାଏ । ଦେଖିଲି ଜଣେ ବୃଦ୍ଧ ସତୁରୀରୁ ଉର୍ଦ୍ଧ୍ୱ ବୟସ୍କ ଜଣେ ବୃଦ୍ଧ ମୁଣ୍ଡ ଉପରେ ପଡ଼ିଥାଏ ଖଣ୍ଡେ ଅଧାଚଉଡା ମଇଳା ଗାମୁଛା । କପାଳତଳକୁ କୋଟରଗତ ଦୁଇଆଖି । ପିନ୍ଧିଥାନ୍ତି ମଇଳା ମସିଆ ଧୋତି ଓ କାମିଜ । ତାଙ୍କ ମୁହଁରୁ କିଛି ପଚାରିଲା ପଚାରିଲା ଭାବ ବାରିହୋଇ ପଡୁଥାଏ । ସେ ମୋ ପାଖରେ ଅଟକିଯାଇ ପଚାରିଲେ, "ଏ ସ୍କୁଲର ଶିକ୍ଷକ ଲକ୍ଷ୍ମୀକାନ୍ତ ଦାସଙ୍କୁ ଦେଖା କରିବାକୁ ଚାହେଁ" ମୁଁ ଏକଥା ଶୁଣି ଥ, ଥା, ମା ମା ହୋଇ ଚାହିଁ କହିଲି, ଆଜ୍ଞା, ମୁଁ ସେହି ଲକ୍ଷ୍ମୀକାନ୍ତ... ।"

ମୋ କଥା ପଦକ ଶୁଣି ବୃଦ୍ଧଙ୍କ ପାକୁଆପାଟି ଚହଲିଗଲା-ଫୁଟି ଉଠିଲା ଚେନାଏ ହସ । ସେ ଆବେଗରେ ମୋତେ କୁଣ୍ଢାଇପକାଇ କହିଲେ, " ବାବୁ, ତୁମେ ବୋଧହୁଏ ମୋତେ ଚିହ୍ନିପାରୁନ ? ଚିହ୍ନିବ ବା କେମିତି ? ତମେ ସେତେବେଳେ ଛୋଟ ପିଲାଟିଏ । କୋଡ଼ିଏ ବାଇଶିବର୍ଷ ହେଲା ତମ ସହିତ ଆଉ ଦେଖାହୋଇନି । ତମେ ଦ୍ୱିତୀୟଶ୍ରେଣୀ ପାସ୍ କଲାବେଳକୁ ମୁଁ ଗାଁ ସ୍କୁଲରୁ ବଦଳି ହୋଇଗଲି । ତଥାପି ମୁଁ ତମର ଓ ତମପରିବାରର ଖବର ରଖିଛି । ଆରପାଲି ହାଟରେ ତମ ବଡ଼ଭାଇ ରାମବାବୁଙ୍କ ସାଥୀରେ ମୋର ଦେଖା ହୋଇଥିଲା । ତମେ ଏଠାରେ ଶିକ୍ଷକତା କରୁଛ, ତାହା ତାଙ୍କଠାରୁ ଜାଣି ଆସିଛି । ଛାତ୍ରହିଁ ତ ଶିକ୍ଷକର ଗୌରବ । କେତେ କଠୋର ସାଧନା ମଧ୍ୟରେ ତମେ ଏଯାଏ ଆସିଛ ଜାଣିମୋର ଛାତି କୁଣ୍ଢେମୋଟ ହୋଇଯାଇଛି । ସାଧନାପଥରେ ଆଗେଇ ଚାଲ, ଜଗଦୀଶ୍ୱରଙ୍କ କୃପାକଣିକା ନିଶ୍ଚୟ ଲାଭ କରିବ ।" ଏତିକି କହି ସେ ସ୍ନେହରେ ମୋ ମୁଣ୍ଡରେ ହାତ ବୁଲାଇବାକୁ ଲାଗିଲେ ।

ଟିକିଏ ପରେ ସେ ପ୍ରକାଶ କଲେ ତାଙ୍କ ଆସିବାର ଅଭିପ୍ରାୟ । ସେ ବାରମ୍ବାର ବାବୁ ସମ୍ବୋଧନ କହି କଥା ଆରମ୍ଭ କରିବାରୁ ମୁଁ ତାର ବିନମ୍ର ପ୍ରତିବାଦ କଲି । ସେ ମୋ ମୁହଁକୁ ଚାହିଁ ହସିଦେଇ କହିଲେ, " ହେଲା ମୁଁ ଏଥର ଲକ୍ଷ୍ମୀକାନ୍ତ ବୋଲି କହିବି । ଲକ୍ଷ୍ମୀକାନ୍ତ ମୁଁ ବଡ଼ ଦୁରାବସ୍ଥାରେ ଅଛି ! ଚାକିରି ଯିବା ବାର ତେର ବର୍ଷ ହେଲାଣି । ସରକାର ତ ଧକ୍‌କା ଦେଇ ବାହାର କରିଦେଲେ । ସରକାରୀ କର୍ମଚାରୀ ଚାକିରିରୁ ଅବ୍ୟାହିତି ନେଲେ କେତେକ'ଣ ପାଆନ୍ତି । ବଞ୍ଚିବାଯାଏ ପେନ୍‌ସନ୍, ପୁଣି ମୃତ୍ୟୁପରେ ଫ୍ୟାମିଲି ପେନସନ୍ ଅଛି । ଆମେ ସରକାରଙ୍କ ଠାରୁ ଦରମା ପାଉଥିଲେ ବି ସରକାରି କର୍ମଚାରି ହୋଇପାରିଲୁ ନାହିଁ । ପେନସନ୍ ମିଳିବ କୁଆଡୁ ? କର୍ତ୍ତବ୍ୟ କରିବା ପାଇଁ ଶକ୍ତି ସାମାର୍ଥ୍ୟ ଥିବା ସତ୍ତ୍ୱେ ଷାଠିଏ ବର୍ଷ ହୋବାରୁ ଚାକିରିରୁ ତଡ଼ିଦେଲେ, ବଞ୍ଚିବୁ କିପରି ? ଏବେ ସରକାର ପ୍ରାଥମିକ ଶିକ୍ଷକମାନଙ୍କୁ ପେନସନ୍ ଦେବେ ବୋଲି ଶୁଣିବାକୁ ମିଳୁଛି କିନ୍ତୁ ବନସ୍ତରେ ବେଲ ପାଚିଲେ, କାଉର କି ଲାଭ !

"ମୋର ତ ଘରଡ଼ିହ ଛଡ଼ା ବାଡ଼ି ଗୋବରେ ଗୋବେ ଜମିନାହିଁ । ପଦ୍ମ ମାଆର ବେମାରବେଳେ ପୈତୃକ ଜମି ଦି'ଟା ବିକି କଟକ ବଡ଼ ଡାକ୍ତରଖାନାରେ ଚିକିତ୍ସା କରାଇ ଥିଲି । କିନ୍ତୁ ଫଳ କିଛି ହେଲା ନାହିଁ । ଦୁଇବର୍ଷର ପୁଅକୁ ଛେଉଣ୍ଡକରି ସେ ଆରପାରିକୁ ଚାଲିଗଲା । ପଦ୍ମକୁ ପାଳିବାକୁ ନିଃସନ୍ତାନ ବିଧବା ଭଉଣୀକୁ ଆଣି ଘରେ ରଖିଲି । ସେ କୌଣସି ମତେ ମାଇନରଯାଏ ପଢ଼ିଲା । ଶେଷରେ ଭଉଣୀ ବି ଚାଲିଗଲା । ଘର ଚଳିବା ପାଇଁ ପଦ୍ମକୁ ବାହା କରିଦେଲି । ସେ ଏବେ ପିପିଲି ପାଖ ଗୋଟିଏ ପ୍ରାଇମେରି ସ୍କୁଲରେ ଶିକ୍ଷକତା କରୁଛି । ଦରମା ମାତ୍ର ପଚାଶଟଙ୍କା । ଏବେ ତ ପାଳି ବ୍ୟବସ୍ଥା ଉଠିଗଲାଣି, ସେଇଟଙ୍କାରୁ ସେ ଖାଇବ । କେତେ ବା ବଞ୍ଚିବ । ଘରେ କୁଟୁମ୍ବ ବଢ଼ିଲାଣି, ନାତି ନାତୁଣୀ ହେଲେଣି ତିନି । ଚଳିବୁ କେମିତି ? ଓଳିଏ ଖାଇଲେ ଓଳିଏ ଉପାସ । ନାତି-ନାତୁଣୀଙ୍କ କଷ୍ଟ ଜମା ସହିହେଉନି । ଆମ ଗାଆଁର ସାତଆଠଜଣ ପିଲାଙ୍କୁ ଟ୍ୟୁସନ କରି କିଛି ପାଉଥିଲି । ତମେ ଜାଣ ଏବର୍ଷ ଆମ ଅଞ୍ଚଳରେ ମରୁଡ଼ି । ବିଲକୁ ଦାଆ ଯାଇନାହିଁ । ପ୍ରାଣ ବଞ୍ଚାଇବାତ କଷ୍ଟକର, ପିଲାଙ୍କୁ ଟ୍ୟୁସନକୁ ଛାଡ଼ିବ କିଏ ? ସହର ଅବସ୍ଥା ନିଆରା । ସହରବାସୀ ପାଠର ମୂଲ୍ୟ ବୁଝନ୍ତି । ସମସ୍ତଙ୍କ ହାତରେ କଞ୍ଚା ପଇସା । ତମେ ଯଦି ମୋ ପାଇଁ ଦୁଇତିନିଟା ଟ୍ୟୁସନ ବୁଝିଦିଅନ୍ତ ତେବେ କଷ୍ଟେମଷ୍ଟେ ଚଳି ଘରକୁ ୫,୭ଟଙ୍କା ପଠାଇ ପାରନ୍ତି । ମୋ ବାପା ଯଥାର୍ଥରେ କାଙ୍ଗାଳିଚରଣ ନାଆଁ ଦେଇଥିଲେ, ମୁଁ ପ୍ରକୃତରେ ଗୋଟେ କାଙ୍ଗାଳ ।"

ସାରଙ୍କ କଥାଶୁଣି ଗଭୀର ଦୁଃଖରେ ଅଭିଭୂତ ହୋଇପଡ଼ିଲି । ଖେଳଛୁଟି ଶେଷ ହେବାର ଘଣ୍ଟାବାଜିଲା । ମୁଁ ବିବ୍ରତ କାରଣ ଏହାପରେ ଲାଗି ଲାଗି ଦୁଇଟା କ୍ଲାସ । ମୁଁ ସାରଙ୍କୁ ସଂକ୍ଷେପରେ କହିଲି, "ସାର୍ ମୁଁ ଏଠାକୁ ଅଳ୍ପଦିନ ହେଲା ଆସିଛି । ଚିହ୍ନାଜଣା ବିଶେଷ ନାହିଁ । ପୁଣି ଶିକ୍ଷାବର୍ଷ ଶେଷ ହେବା ବେଳ । ତଥାପି ଆପ୍ରାଣ ଚେଷ୍ଟାକରି ଆପଣଙ୍କ ପାଇଁ ଟ୍ୟୁସନ୍ ଯୋଗାଡ଼ କରିବି । ଯୋଗାଡ଼ ହେଲାମାତ୍ରେ ଖବର ଦେବି ।" ପକେଟ ଦେଖିଲି, ମାତ୍ର କୋଡିଏ ଟଙ୍କା ଅଛି । ସେଥିରୁ ଦଇଦିନ ଚଳିବା ଏବଂ ଶନିବାରେ ଘରକୁ ଯିବା ପାଇଁ ବସ୍‌ଭଡ଼ା ଲକ୍ଷ୍ୟରେ ଦଶଟି ଟଙ୍କା ରଖି ବାକି ଦଶଟି ଟଙ୍କା ସାରଙ୍କ ପକେଟରେ ଗୁଞ୍ଜିଦେଲି । କହିଲି, ଆପଣ ବୋଧହୁଏ ଦିପହରେ କିଛି ଖାଇନାହାନ୍ତି । ହୋଟେଲରେ ଖାଇ ଘରକୁ ଫେରନ୍ତୁ । ଆପଣଙ୍କ ପାଇଁ ନିଶ୍ଚୟ କିଛିକରିବି ।" ଏତିକି କହି ନମସ୍କାର ଜଣାଇ କ୍ଲାସ ଅଭିମୁଖେ ଦ୍ରୁତ ପଦରେ ଚାଲିଲି ।

ସ୍କୁଲ ଛୁଟିପରେ ବସାକୁ ଫେରିଲି ଏବଂ ସଂଧ୍ୟାବେଳେ ଯଥାରୀତି ଟ୍ୟୁସନକୁ ଗଲି । ଟ୍ୟୁସନରୁ ଫେରି ଗୁରିଆ ସାହୁ ଦୋକାନରେ ରୁଟି ଡାଲମା ଖାଇ ବସାକୁ ଫେରିଲି ରାତି ନଅଟାରେ । ସବୁକଥା ମୁଁ ଯେମିତି ମେସିନ୍‌ପରି କରୁଥିଲି । ରାତିରେ ଶୋଇବାକୁ ଯାଇ ବିଛଣା ଧରିଲେ ସାଙ୍ଗେସାଙ୍ଗେ ନିଦ ହୋଇଯାଏ । କିନ୍ତୁ ସାରଙ୍କ ସହିତ ଦେଖା ହେବା ପରଠାରୁ ମୋର ମନଟା ଏପରି ଅସ୍ଥିର ହେଉଥାଏ ଯେ ଆଦୌ ନିଦ ଆସୁନଥାଏ । ଆଖିଆଗରେ ଭାସି ଉଠୁଥାଏ କାଙ୍ଗାଳି ସାରଙ୍କ ବିଷଣ୍ଣ ମୁହଁ ।

ମୋର ହେତୁ ପାଇଲାବେଳକୁ କାଙ୍ଗାଳି ମାଷ୍ଟ୍ରେ ଥିଲେ ଆମଗାଆଁ ସ୍କୁଲର ଏକମାତ୍ର ସରକାରୀ ଶିକ୍ଷକ । ଆଖପାଖ ସାତ ଆଠଖଣ୍ଡ ଗାଁଆଁରେ ଏହାହିଁ ଏକମାତ୍ର

ନିମ୍ନ ପ୍ରାଥମିକ ସ୍କୁଲ । ଶିଶୁ ଶ୍ରେଣୀକୁ ମିଶାଇ ଚାରୋଟି ଶ୍ରେଣୀ । ଷାଠିଏ ସତୁରୀ ଜଣ ଛାତ୍ରଛାତ୍ରୀ । ଅବଶ୍ୟ ଛାତ୍ରୀଙ୍କ ସଂଖ୍ୟା ମାତ୍ର ଚାରି କି ପାଞ୍ଚ ହେବ । ମୋ ବାପାଥିଲେ ସ୍କୁଲର ପ୍ରତିଷ୍ଠାତା ଏବଂ ସେକ୍ରେଟାରୀ । ଆମ ଘରଠାରୁ ଷାଠିଏ ସତୁରୀ ଫୁଟ ଦୂରରେ ଆମରି ଜମିଉପରେ ସ୍କୁଲଘରଟି ନିର୍ମିତ ହୋଇଥିଲା । ବାପା ବେସରକାରୀ ଭାବେ ନବଘନ ପାତ୍ର ନାମକ ଜଣେ ଯୁବକଙ୍କୁ ଦ୍ୱିତୀୟ ଶିକ୍ଷକ ରୂପେ ନିଯୁକ୍ତ କରିଥିଲେ । ନବଘନ ସାର ଆମଘରେ ଖାଉଥିଲେ ଓ ମାସିକ ପାଞ୍ଚଟଙ୍କା ବେତନ ପାଉଥିଲେ । ସେତେବେଳେ କାଙ୍ଗାଳି ସାରଙ୍କ ଦରମା ବୋଧହୁଏ ଥିଲା ବାରଟଙ୍କା । ଆମ ଘର ସାମ୍ନା ଗୁହାଳ ଦାଣ୍ଡିକୁ ଲାଗିଥିବା ଘରେ ସାର୍ ଦୁହେଁ ରହୁଥିଲେ । ସେ ଘରକୁ ଚାହାଳୀଘର କୁହାଯାଏ । ୧୯୩୪ ସାଲରେ ସରକାରୀସ୍କୁଲ ବସିଲା । ତା ପୂର୍ବରୁ ସେଠାରେ ଚାଟଶାଳୀ ଚାଲିଥିଲା । ଏହି ଘରକୁ ଲାଗି ଚାଳିଟିଏ ଥିଲା । ସେ ଚାଳିରେ କାଙ୍ଗାଳି ମାଷ୍ଟ୍ରେ ରୋଷେଇ କରନ୍ତି ।

ଗାଆଁଲୋକେ ପାଳିକରି କାଙ୍ଗାଳି ସାରଙ୍କ ପାଇଁ ସିଧା ଦେଉଥିଲେ । ଅବଶ୍ୟ ଗରିବ ଓ ହରିଜନମାନଙ୍କୁ ପାଳିଦେବାକୁ ପଡୁନଥିଲା । କେବେ କେମିତି କେହି ପାଳିଦେଇ ନପାରିଲେ ମାଷ୍ଟ୍ରଙ୍କ ପାଇଁ ଆମଘରୁ ସିଧାଯାଉଥିଲା । ସ୍କୁଲରେ ନାମଲେଖାଇବା ପୂର୍ବରୁ ମୁଁ ସାରଙ୍କ ପାଖରେ ଘଣ୍ଟାଏ ଦେଢ଼ଘଣ୍ଟା ପଢୁଥିଲି । ଦିନେ ଦିନେ ପଢ଼ିବାକୁ ଇଚ୍ଛା ନ ହେଲେ ଗାଲେଇ ଶୋଇ ପଡୁଥିଲି । ମୁଁ ପଢ଼ିବାକୁ ନ ଗଲେ ସାର୍ ଡାକିବାକୁ ଆସୁଥିଲେ । କିନ୍ତୁ ବୋଉ ଆଢୁଆଳରେ ରହି ମାଷ୍ଟ୍ରଙ୍କୁ କହେ – 'କଅଁଳା ପିଲାଟା ହାଲିଆ ହୋଇ ଶୋଇପଡ଼ିଛି ଆଜି ପଢ଼ା ଥାଉ ।' ସାର ଫେରିଯିବାର ଦଶ, ପନ୍ଦର ମିନିଟ ପରେ ମୁଁ ଶେଯରୁ ଉଠିପଡ଼ି ହସଖୁସି କରୁଥିଲି । ବାପା ଘରେ ଥିଲା ବେଳେ ଏ ପେଖନା କରିବାକୁ ସାହସ କୁଳାଏନା । ପ୍ରତିଦିନ ଟ୍ୟୁସନ ଚାଲେ । ଏଥିପାଇଁ ମାଷ୍ଟ୍ରେ କିଛି ପାରିଶ୍ରମିକ ମଧ୍ୟ ପାଉଥିଲେ ।

ଦୁଇବେଳା ସ୍କୁଲ ଚାଲେ ସକାଳବେଳେ ଦିନ ସାତଟାରୁ ବାରଟା, ଏବଂ ଉପରବେଳା ଦିନ ତିନିଟାରୁ ପାଞ୍ଚଟା ଯାଏ । ଦିନ ଏଗାରଟା ହେଲେ ଦୁଇଜଣ ବରିଷ୍ଠ ଛାତ୍ର ଦୀନା ଓରଫ ଦୀନବନ୍ଧୁ ଏବଂ ବାନା ଓରଫ ବାନାମ୍ବର ରୋଷେଇ ପ୍ରସ୍ତୁତି ପାଇଁ ଚାହାଳୀଘରକୁ ଯାଆନ୍ତି । ସେ ଦୁହେଁ ସାତ ଆଠବର୍ଷଧରି ସ୍କୁଲରେ ପଢ଼ି ଆସୁଥିଲେ । ପାଠ ନ ହେଲେ ବି ସେମାନଙ୍କର ଗୁରୁଭକ୍ତି ଥିଲା ଅତୁଳନୀୟ । ସେମାନେ ଦୁଇବେଳା ଚୁଲୀରୁ ପାଉଁଶ କାଢ଼ିବା, ହାଣ୍ଡିପରିଷ୍କାର କରିବା, କୂଅରୁ ପାଣିଆଣିବା, ଜାଳ ସଜାଡ଼ିବା ଆଦି କାର୍ଯ୍ୟ କରିଦେଇଯାଆନ୍ତି । ସ୍କୁଲଛୁଟି ହେଲେ ମାଷ୍ଟ୍ରେ ଆସି ଚୁଲୀରେ ନିଆଁ ଧରାନ୍ତି । ପାଳିରେ ତରକାରି ପାଇଁ ପରିବା ଆସିନଥିଲେ ଆମଦାଣ୍ଡପଟ ବାଡ଼ିରୁ ପରିବା ତୋଳାହୋଇ ଆସେ । ଭାତ ଓ ଡାଲମା ଥିଲା ସାରଙ୍କ ଦୈନିକ ଖାଦ୍ୟ । ମୁଗଡାଲିରେ ଖଡ଼ା, ସାରୁ, ବାଇଗଣ, ଅମୃତଭଣ୍ଡା ପ୍ରଭୃତି ଯାହା ମିଳିଲା ପଡ଼ି ଡାଲମା ପ୍ରସ୍ତୁତ ହୁଏ । ଏପରିକି କଲରା ମିଳିଲେ ବି ସେଇ ଶୈରୀଗୌରୀ ପାକରେ ସାମିଲ ହୁଏ । ମାତ୍ରାଧିକ ହଳଦୀ ଓ କଞ୍ଚାଲଙ୍କା ଛେଚିଦିଆ ଡାଲାମା ଛୁଙ୍କରେ ଚାରିଆଡ ମହକି ଉଠେ । ରାସ୍ତାରେ ଚାଲିଯାଉଥିବା ଲୋକ ଛିଙ୍କି ଛିଙ୍କି ବେଦମ ହୋଇଯାଆନ୍ତି । ମାଷ୍ଟ୍ରେ

ବେଳେବେଳେ ମୋତେ ଖାଇବାକୁ ଡାକନ୍ତି କିନ୍ତୁ ମୁଁ ଲାଜରେ ଘରକୁ ଦଉଡି ପଳାଏ । ସେ ମୋ ପାଇଁ ଗିନାଏ ଡାଲମାନେଇ ଘରେ ଦେଇଆସନ୍ତି । ସେ ଡାଲମାର ସ୍ୱାଦ ଏବେ ବି ଭୁଲିପାରିନାହିଁ । ଆମର ମାଛ ମାଂସ ତରକାରି ହେଲେ ବାପା ନିଜେ ନେଇ ମାଷ୍ଟ୍ରଙ୍କୁ ଦେଇଆସନ୍ତି । ମୋଟ ଉପରେ ଆମପରିବାର ସହିତ ମାଷ୍ଟ୍ରଙ୍କର ଅନ୍ତରଙ୍ଗ ସମ୍ପର୍କ ଗଢ଼ି ଉଠିଥିଲା ।

ମାଷ୍ଟ୍ରଙ୍କର ଖଟାରେ ବଡ଼ ଶ୍ରଦ୍ଧା । ଡାଲମା ଅଧକଂସାଏ ଓ ପଥୁରିଏ ଖଟା ହେଲେ ତାଙ୍କର ଭୂରିଭୋଜନ ହୋଇଯାଏ । ଯେଉଁ ଦିନ କୌଣସି ପିଲାଖଟା କମଳା, କରମଙ୍ଗା, କଇଁଥ, ବରକୋଳି, ଆମ୍ବ, ଆମ୍ବୁଲ କି ତେନ୍ତୁଳି ଭେଟିଦିଏ ସେ ଦିନ ତା ପିଠିକୁ ମାଷ୍ଟ୍ରଙ୍କ ପାଞ୍ଚଫୁଟିଆ ବେତ ଛୁଏଁନି । କାହାଘରେ ଆମ୍ବୁଲ ଆଚାର କି ତେନ୍ତୁଳି ଅଛି ତାହା ମାଷ୍ଟ୍ରଙ୍କ ନଖଦର୍ପଣରେ ଥାଏ । ସେ କେଉଁ ପିଲାକୁ ତୁଣ୍ଡଫିଟାଇ ଯଦି କିଛି ଖଟା ମାଗିଥାନ୍ତି ଏବଂ ସେ କୌଣସି କାରଣରୁ ତାହା ଆଣିନପାରିଲେ ତା'ର କପାଳଫାଟିଲା ବୋଲି ଜାଣ । ଦିନେ ହରିଆ ବଡ଼ପାସ୍ ପାଇଁ ଘରକୁ ଯିବାକୁ ଚାହିଁବାରୁ ମାଷ୍ଟ୍ରେ ତା ବୋଉକୁ ମାଗି କେଇଫଡ଼ା ଆମ୍ବୁଲ ଆଣିଦେବାକୁ ଫର୍ମାସି କଲେ । ଏ ନିର୍ଦ୍ଦେଶକୁ ଅମାନ୍ୟକଲେ ଭବିତବ୍ୟ କ'ଣ ହେବ ତାହା ଅନ୍ୟମାନଙ୍କ ପରି ହରିଆକୁ ଆଗୋଚର ନ ଥିଲା । ଏକଥା ମଧ୍ୟ ଅମାଲୁମ୍ ନଥିଲା ଯେ ତା ବୋଉକୁ ଆମ୍ବୁଲ ମାଗିଲେ ସେ ତାହା କସ୍ମିନ୍ କାଳେ ଦେବନାହିଁ । ତେଣୁ ଚୋରିକରିନେବା ସବୁଠୁ ନିରାପଦ । ଏଇଆ ଭାବି ଓଳିଆଭାଡି ଉପରେ ଚଢ଼ି ଶିକାରେ ଥିବା ଆମ୍ବୁଲ ମାଠିଆରୁ ଆମ୍ବୁଲ ଆଣିବାବେଳେ ଦୈବାତ୍ ଓଳିଆଟା ଟଳି ପଡ଼ିବାରୁ ହରିଆ ସହିତ ଓଳିଆ ଓ ଆମ୍ବୁଲ ମାଠିଆ ଧଡ୍ ଧାଡ୍ ହୋଇ ତଳେ ପଡ଼ିଲା । ଶବ୍ଦଶୁଣି ରାନ୍ଧଣାଘରେ ଥିବା ତା'ର ବୋଉ ଚମ୍ପୀ ଓରଫ ସେରନ୍ତୀ ବୋଉ ଧାଇଁ ଦେଖିଲେ, ସର୍ବନାଶର ଦୃଶ୍ୟ- ତାର ପ୍ରିୟ ଆମ୍ବୁଲ ମାଠିଆ ଆଉ ଆମ୍ବୁଲ ଛିନଛତ୍ର ହୋଇ ଘରଜାକ ପଡ଼ିଛି ଏବଂ ହରିଆ ତାର ଛିଣ୍ଡିଯାଇଥିବା ଆଣ୍ଠୁ ଆଉଁସିଲାଗିଛି । ହରିଆର ଆଘାତ ପାଇଁ ଯେତେ ନୁହେଁ, ସରପଡ଼ିଯାଇଥିବା ଆମ୍ବୁଲ ମାଠିଆର ଦୁର୍ଦ୍ଦଶା ଦେଖି କଳିହୁଡ଼ୀ ସେରନ୍ତୀ ବୋଉର ରାଗ ପଞ୍ଚମକୁ ଉଠିଗଲା । ସେ ଜାଣିଗଲା ହରିଆ କାଙ୍ଗାଳିମାଷ୍ଟ୍ର ପାଇଁ ଏ କାଣ୍ଡ କରିଛି । ଚୁଲୀମୁଣ୍ଡରୁ ପୋଡ଼ା ଗୋଜଣାଟାଧରି ଆଗେ ହରିଆକୁ ଦି ଚାରି ଛାଟ ପକାଇଲା । ହରିଆ ବାଘୁଣୀମାଆଠାରୁ ରକ୍ଷାପାଇବା ପାଇଁ ପ୍ରାଣ ବିକଳରେ ଦଉଡ଼ିବାକୁ ଲାଗିଲା । ସେରନ୍ତୀ ବୋଉ ବି କମ୍ ନୁହେଁ । ସେ ମାଷ୍ଟ୍ରଙ୍କ ଉଦ୍ଦେଶ୍ୟରେ ଅଭିଧାନ ବହିର୍ଭୂତ ଗାଳି ବର୍ଷଣକରି କରି ହରିଆପଛରେ ଧାଇଁଥାଏ । ଲୁଗାକାନି ଭୂଇଁରେ ଲୋଟୁଛି, ଖୋସଣି ଅଧାଫିଟିଗଲାଣି, ସେ ଦିଗରେ ତାର ନିଘାନାହିଁ ।

ପ୍ରାଣବିକଳରେ ହରିଆ ଆସି ସ୍କୁଲ ଭିତରେ ପଶିଗଲା । ତାର ବିଶ୍ୱାସ ତା ବୋଉ ମାଷ୍ଟ୍ରଙ୍କୁ ଲାଜକରି ଘରକୁ ଫେରିଯିବ । ଅଥଚ ସେରନ୍ତୀ ବୋଉ ସିଦ୍ଧାନ୍ତ କରିନେଇଛି ଆମ୍ବୁଲ ଚୋରି ଓ ମାଠିଆଭଙ୍ଗାର ମୂଳ ମାଷ୍ଟରକୁ ସେ ଆଜି ଛାଡ଼ିବ ନାହିଁ । ସେ ଖୋସଣିଭିଡ଼ି, ଓଢ଼ଣୀ ଓ ପଣତକାନିକୁ ଟାଣି ଅଣ୍ଟାରେ ଗୁଡ଼ାଇ ଯୁଦ୍ଧଂଦେହି ଡାକରାରେ ସ୍କୁଲଘରେ ପଶି ବିଭିନ୍ନ ମୁଦ୍ରାରେ ଶ୍ରାବଣ ମାସର ବର୍ଷାଧାରପରି ମାଷ୍ଟ୍ରଙ୍କ

ଉଦ୍ଦେଶ୍ୟରେ ଗାଳିବର୍ଷଣ କରି ଲାଗିଲା । କେବଳ ମାଷ୍ଟ୍ରେ ନୁହନ୍ତି ତାଙ୍କ ବୋପା, ଅଜା, ଚଉଦପୁରୁଷଙ୍କ ଉଦ୍ଦେଶ୍ୟରେ ନାନାଦି ଅମେଧ୍ୟବସ୍ତୁ ଉତ୍ସର୍ଗ କରିବା ପରେ ବି ସେରନ୍ତୀ ବୋଉର ରାଗ ଥମିଲାନାହିଁ । ସ୍କୁଲର ଦକ୍ଷିଣରେ ତିରିଶ ଚାଳିଶଫୁଟ ଦୂରରେ ଶ୍ରୀ ଶ୍ରୀ ପତିତପାବନ ଦେବଙ୍କ ମନ୍ଦିର ଓ ପଣ୍ଡା ସାହି । ପଣ୍ଡିଆଣୀମାନେ ଦାଣ୍ଡକୁ ବାହାରି ଆସି ସ୍କୁଲର ଦକ୍ଷିଣ ପାଖ ଝରକାଦେଇ ଏଇ ଅଭାବନୀୟ ଦୃଶ୍ୟ ଉପଭୋଗ କରୁଥାନ୍ତି । ରଣଚଣ୍ଡୀ ସେରନ୍ତୀ ବୋଉକୁ ତାଗିଦ୍ କରିବାକୁ କାହାରି ସାହ ନାହିଁ । ସେରନ୍ତୀବୋଉ ହାତରେ ଧରିଥିବା ପୋଡ଼ାଗୋଇଣାଟା ପାଲାଗାୟକର ଚହଁରପରି ବୁଲୁଥାଏ । ତାହାର ବିଚିତ୍ର ଖେମଟା, ଗୋଟିପୁଅ, ଦଣ୍ଡ ଓ ପାଟୁଆନାଟ ସେମାନଙ୍କର ବେଶ ଉପଭୋଗ୍ୟ ହେଉଥାଏ । ଏ ସବୁ ନାଚ ସହିତ ହାତ, ଗୋଡ଼, ଆଖି, ନାକ, ପାଟି ଓ ମୁଖର ବିଭିନ୍ନ ମୁଦ୍ରାଦେଖି ସେମାନେ ଆବାକ୍ । ଶେଷକୁ ସେରନ୍ତୀ ବୋଉର ମୁଣ୍ଡ ଖୋଷାଟା ଫିଟିଗଲା, ଆରମ୍ଭହେଲା କାଳିଶୀ ନାଚ । କାଙ୍ଗାଳିମାଷ୍ଟ୍ରେ ଏସବୁ ଦେଖି କିଛି ସମୟ ହାତଯୋଡ଼ି କହୁଥାନ୍ତି, ମା, ଆପଣଙ୍କଠାରୁ କେଇଫଡ଼ା ଆମ୍ବୁଲ ମାଗି-ଆଣିବାକୁ ହରିଆକୁ କହିଥିଲି, ସେ ଏପରି ଅଘଟଣ ଘଟାଇଥିବାରୁ ମୁଁ ନାଚାର । ହଉ, ମୋର ସବୁ ଭୁଲ ହୋଇଛି । ସେଥିପାଇଁ କ୍ଷମା ମାଗୁଛି । ଏଥିରେ ସେରନ୍ତୀ ବୋଉର ରାଗ ଶାନ୍ତ ହେବ କ'ଣ ଆହୁରି ଜଳି ଉଠିଲା । କହିଲା, "ଅଳପେଇସା, ଘେରିକରି ପାଇକପଣ ଦେଖାଉଚୁ ।" ଏମିତି କେତେ ଗାଳିର ସୁଅ ଛୁଟୁଥାଏ । ଆମେ ଭୟ-ବିହ୍ୱଳ ଦୃଷ୍ଟିରେ ଅନେଇ ରହିଥାଉ, ଚୁପ୍‌ଚାପ୍ ।

ଗୁରୁଭକ୍ତ ଦୀନା ଓ ବାନାଙ୍କ ପକ୍ଷରେ ସେରନ୍ତୀବୋଉର ଗାଳି ହେଲା ଅସହ୍ୟ । ସେମାନେ ସ୍କୁଲବଗିଚାଭିତରୁ ଦିଖଣ୍ଡ ବତାଫାଳିଆ ଧରି ଭୀମଦର୍ପରେ ପହଞ୍ଚିଗଲେ । ସେମାନେ ସେରନ୍ତୀ ବୋଉକୁ ତାଙ୍କ ଭାଷାରେ ନାନା ତିରସ୍କାର କରି ଶେଷରେ ସାବଧାନ କରିଦେଲେ- ଆମ ମାଷ୍ଟ୍ରେ ଆଉ ସ୍କୁଲକୁ ଢ଼େର ଅପମାନ ଦେଲୁ, ସହିଲୁ । ଆଉ ପଦେ କହିଲେ ବତାଫାଳିଆରେ ତୋ ମୁଣ୍ଡକୁ ଦିଫାଳ କରିଦେବୁ । ସେରନ୍ତୀ ବୋଉର ଗାଳି ତଥାପି ଥମିଲା ନାହିଁ । ସେ ରକ୍ତ ଚକ୍ଷୁରେ ସେମାନଙ୍କୁ ଚାହିଁ ପୁଣି ଗାଳି ଆରମ୍ଭ କରିବା ମାତ୍ରେକେ ଦୁଇପଟୁ ଦୁଇଟି ବତାଫାଳିଆ ସେରନ୍ତୀବୋଉର ଦୁଇ କାନ୍ଧ ଉପରେ ପଡ଼ିଲା । ଭଗବାନ ବୋଧହୁଏ ଦୀନା ଓ ବାନାକୁ ସଦ୍‌ବୁଦ୍ଧି ଦେଇଥିଲେ । ଯାହାଫଳରେ ପାହାରଲକ୍ଷ୍ୟ ମୁଣ୍ଡ ନହୋଇ କାନ୍ଧ ହୋଇଗଲା ମାଷ୍ଟ୍ରେ ହାଁ, ହାଁ ମାରନା, ମାରନା କହୁଥାନ୍ତି । କିନ୍ତୁ ଦୀନା ଓ ବାନା ସେତେବେଳେ କିଛି ଶୁଣିବା ଅବସ୍ଥାରେ ନଥିଲେ ।

ମାଡକୁ ମହାଦେବଙ୍କର ଡର । ସେରନ୍ତୀବୋଉ ବା କିବା ଛାର ।' 'ଚୁଲୀପଶାଏ ମାରିପକାଇଲେ ଲୋ, -କହି ସେ ପ୍ରାଣବିକଳରେ ଦୌଡ଼ିବାରେ ଲାଗିଲା । କିଛିବାଟ ଗୋଡ଼େଇଯାଇ ଦୀନା ଓ ବାନା ଫେରିଆସିଲେ । ମାଷ୍ଟ୍ରେ ଘଡ଼ିଏ କାଳ ମୁଣ୍ଡରେ ହାତ ଦେଇ ବସି ରହିଲେ । ପରେ ସେ ବଡ଼ଚାଟଙ୍କୁ ପିଲାଙ୍କ ଦାୟିତ୍ୱଦେଇ ବାପାଙ୍କ ନିକଟକୁ ଗଲେ ଓ ସମସ୍ତ କଥା ଜଣାଇଲେ । ଏ ଅଦ୍ଭୁତ କାଣ୍ଡଟା ଅତିଶ୍ରୀଘ୍ର ଗାଆଁସାରା ରାଷ୍ଟ୍ର ହୋଇଗଲା ।

ସଂଧ୍ୟାବେଳକୁ ଗାଆଁ ସଭା ବସିଲା । ସାକ୍ଷ୍ୟପ୍ରମାଣର ବିଶେଷ ଆବଶ୍ୟକତା ପଡ଼ିଲା ନାହିଁ । କାରଣ ଅଘରଦୁଆରୀ ସମସ୍ତେ ଖରତୁଣ୍ଡୀ, କଳିହୁଡ଼ି ସେରନ୍ତୀ ବୋଉକୁ ହାଡ଼େ ହାଡ଼େ ଜାଣିଥିଲେ । ସେରନ୍ତୀ ବୋଉର ସ୍ୱାମୀ ବୁଲେଇ ବିଶ୍ୱାଳ ଉପରେ ପାଞ୍ଚଟଙ୍କା ଜୋରିମାନା ଧାର୍ଯ୍ୟକରାଗଲା । ସେ ନଗଦ ଦେଇ ନପାରିବାରୁ ଗାଆଁ ପିଅନ ଯାଇ ଘରୁ କଂସାଲୋଟା ଦିଟା ଘେନିଆସିଲା, ଟଙ୍କା ପଇଠ କଲେ ସେ ବାସନ ଫେରି ପାଇବ ବୋଲି ସ୍ଥିର କରାଗଲା । ଦୀନା ଓ ବାନା ଯାହାହେଲେ ବି ପିଲା, ପୁଣି ଗୁରୁ ସ୍କୁଲ ଓ ଗାଆଁର ସମ୍ମାନ ରକ୍ଷା କରିଥିବାରୁ ସେମାନଙ୍କ ଦୋଷ ଧରାଗଲା ନାହିଁ । ସେଇ ଦିନଠାରୁ ପନ୍ଦରଦିନ ପର୍ଯ୍ୟନ୍ତ ସେରନ୍ତୀ ବୋଉକୁ ଗାଆଁଦାଣ୍ଡରେ ଆଉ କେହି ଦେଖିନାହାନ୍ତି । ଗାଆଁସାରା ମାଇପେ ଭାରି ଖୁସିହେଲେ ଓ ଗାଆଁମୁଖିଆମାନଙ୍କ ବିଚାରକୁ ଧନ୍ୟଧନ୍ୟ କଲେ ।

ସାର୍‌ଙ୍କ ପୂରା ନାଆଁ କାଙ୍ଗାଳିଚରଣ ଦତ୍ତ । କିନ୍ତୁ ସମସ୍ତେ ତାଙ୍କୁ ଡାକୁଥିଲେ କାଙ୍ଗାଳିମାଷ୍ଟ୍ରେ । ସେ ଥିଲେ ଜଣେ କର୍ତ୍ତବ୍ୟ ପରାୟଣ, ଛାତ୍ରବତ୍ସଳ, ଆଦର୍ଶ ଶିକ୍ଷକ । କର୍ତ୍ତବ୍ୟରେ ସେ କେବେ ଅବହେଳା କରୁ ନଥିଲେ । ସେ ନିୟମିତ ସ୍କୁଲରେ ଉପସ୍ଥିତ ରହୁଥିଲେ । ମାଆଛେଉଣ୍ଡ ପୁଅକୁ ଦେଖିବାପାଇଁ ପ୍ରତି ଶନିବାର ଗାଆଁକୁ ଯାଉଥିଲେ କିନ୍ତୁ ସୋମବାର ଦିନ ସ୍କୁଲ ଆରମ୍ଭ ପୂର୍ବରୁ ଅର୍ଥାତ୍ ସାଢ଼େ ଛଅସାତ ମଧରେ ପାଞ୍ଚଛଅ କିଲୋମିଟର ଚାଲି ଚାଲି ଆସି ସ୍କୁଲଘର ଖୋଲୁଥିଲେ । କୌଣସି ଛାତ୍ର ବା ଛାତ୍ରୀ ଦୁଇ ତିନି ଦିନ ସ୍କୁଲରେ ଅନୁପସ୍ଥିତ ରହିଲେ ସେ ଦିପହରେ ବା ସଂଧ୍ୟାବେଳେ ଅନୁପସ୍ଥିତ ରହିଥିବା ପିଲାଘରକୁ ଯାଇ ତା'ର କାରଣ ବୁଝୁଥିଲେ, ବେମାର ପଡିଥିଲେ ନିଜେ ଜାଣିଥିବା ଟୁଟକା ଔଷଧ ଦେଉଥିଲେ ବା ରୋଗ ସାଙ୍ଘାତିକ ହୋଇଥିଲେ ଡାକ୍ତରଙ୍କ ନିକଟକୁ ଚିକିତ୍ସା ପାଇଁ ଯିବାକୁ ପରାମର୍ଶ ଦେଉଥିଲେ ।

ପ୍ରତିବିଷୟରେ ସାର୍‌ଙ୍କର ଗଭୀର ପ୍ରବେଶ ଥିଲା । ସେ ଛାତ୍ରମାନଙ୍କ ବିଷୟ ପ୍ରତି ଆଗ୍ରହ ଏବଂ ତାହା ବୋଧଗମ୍ୟ ହେବା ନିମିତ୍ତ ବିଭିନ୍ନ ବିଷୟ ଭିତ୍ତିକ ଚାର୍ଟ ଓ ଚିତ୍ର ନିଜେ ତିଆରି କରିଥିଲେ । ଚୂନ ଧଉଳାମାଟି କାନ୍ଥ ଉପରେ ସେ ଆଙ୍କିଥିଲେ ଭାରତ, ଓଡ଼ିଶା ଓ ପୁରୀ ଜିଲାର ମାନଚିତ୍ର । ସ୍କୁଲ ଗୃହର ଗୋଟିଏ ପାର୍ଶ୍ୱରେ ଭାରତ ଓ ଓଡ଼ିଶାର ରିଲିଫ୍ ମାନଚିତ୍ର କରାଯାଇ ବିଭିନ୍ନ ରଙ୍ଗରେ ପାହାଡ, ପର୍ବତ, ନଦୀ, ସମୁଦ୍ର ସମତଳଭୂମି ଓ ମାଳଭୂମି ଚିହ୍ନିତ କରାଯାଇଥିଲା ସ୍କୁଲର ସାମ୍ନା ଓ ଭିତର କାନ୍ଥରେ ବିଭିନ୍ନ ମହାପୁରୁଷମାନଙ୍କ ନୀତିବାଣୀ ଓ ସୂକ୍ତି ଲେଖାଯାଇଥିଲା । ମୁଁ କଅଁଳ ବୟସରୁ ସେହି ନୀତିବାଣୀଗୁଡ଼ିକୁ ମୁଖସ୍ଥ କରିନେଇଥିଲି । ଅଶୋକ, ମହାବୀର-ଜୀନ, ବୁଦ୍ଧଦେବ, ଆକବର ଓ ରାଣୀପ୍ରତାପଙ୍କ ଛବି ମଧ୍ୟ ସେ କାନ୍ଥରେ ଆଙ୍କିଥିଲେ ।

ସାରଥିଲେ ଆଡିସନଙ୍କ 'ଭିଲେଜସ୍କୁଲ ମାଷ୍ଟର' ପରି ଗ୍ରାମବିଦ୍ୟାବିଶାରଦ । ସେ ଅଶିକ୍ଷିତ ଗ୍ରାମବାସିଙ୍କୁ ଚିଠି ଲେଖିବା ଆଦି କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ଯେଉଁଠି ଜମିବାଡ଼ି ମାପରେ ଅମିନ ପଟୁଆରୀମାନେ ବିଫଳ ହେଉଥିଲେ ସେ ତାହା ସଠିକ୍ ଭାବେ କରିପାରୁଥିଲେ । କୋର୍ଟ କଚେରିରୁ ସମନ ବା ନୋଟିସ ଆସିଲେ ସେ ତାହା ଲୋକଙ୍କୁ ବୁଝାଇ ଦେଉଥିଲେ । ପାଞ୍ଜିଦେଖି ଓଷାବ୍ରତ, ବିବାହ ଦିନ

ଜଣାଉଥିଲେ । ସ୍କୁଲଛୁଟି ଥିଲେ ବି ଦୋଳପୂର୍ଣ୍ଣିମୀରେ ଛାନ୍ଦ-ଚଉପଦୀ ଆସରରେ ଯୋଗଦେଇ ନିଜ ରଚିତ ଚଉପଦୀ ସୁଲଳିତ କଣ୍ଠରେ ଗାଉଥିଲେ । ଗଣେଶ ଓ ସରସ୍ୱତୀ ପୂଜା ଉପଲକ୍ଷ୍ୟେ ବନ୍ଦନା ରଚନାକରି ବାଦ୍ୟଯନ୍ତ୍ରର ସଙ୍ଗତରେ ଛାତ୍ର-ଛାତ୍ରୀଙ୍କଦ୍ୱାରା ଗାନ କରାଉଥିଲେ । ପ୍ରଭୁ ଗଣେଶଙ୍କ ଉପରେ ଆଧାରିତ କୀର୍ତ୍ତନ ସ୍ୱରରେ ଲିଖିତ ତାଙ୍କର ଏକ ଚଉତିଶାର ପ୍ରଥମ ଦୁଇପଦ ଏବେ ବି ମୋର ସ୍ମୃତିର ସମ୍ପଦ ।

ମୋର ଦ୍ୱିତୀୟ ଶ୍ରେଣୀବର୍ଷ ସାରଙ୍କ ଉଦ୍ୟମରେ ପ୍ରଥମ ସ୍ୱାଧୀନତା ଦିବସ ଜାକଯମକରେ ପାଳିତ ହୋଇଥିଲା । ମନେପଡୁଛି ସେ ଦିନ ଗାଆଁର ପ୍ରତିଘରର ଦ୍ୱାରରେ ଆମ୍ରପତ୍ରର ତୋରଣ ଓ କଦଳୀ ଗଛ ସଜାହୋଇଥିଲା ଏବଂ ପୂର୍ଣ୍ଣକୁମ୍ଭ ବସିଥିଲା । ପ୍ରତିସ୍ଥଳରେ ଫରଫର ହୋଇ ତ୍ରିରଙ୍ଗାପତାକା ଉଡୁଥିଲା । ସାର ନିଜ ହାତରେ କେତେଗୁଡ଼ିଏ ପତାକା ତିଆରିକରି ପ୍ରତି ଘରକୁ ଯୋଗାଇଥିଲେ । ସେ ନଗରକୀର୍ତ୍ତନ ରେ ନିଜେ ପୁରୋଭାଗରେ ରହି, ଖୋଳ ବଜାଇ ଜାତୀୟ କବି ବାଞ୍ଛାନିଧି ଦାସଙ୍କ ରଚିତ ଜାତୀୟ ସଂଗୀତ "ଗାଅ ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ, ସ୍ୱାଧୀନ, ସ୍ୱାଧୀନ ସ୍ୱାଧୀନରେ" ଗାଉଥିଲେ ଓ ଅନ୍ୟମାନେ ତାଙ୍କୁ ଅନୁକରଣକରି ସମବେତକଣ୍ଠରେ ତାହା ଆବୃତ୍ତି କରୁଥିଲେ । ସେଦିନ ସ୍କୁଲ ପରିସରରେ ପତାକା ଉତ୍ତୋଳନ ସହିତ ଏକ ସଭା କରାଯାଇଥିଲା । ସେଦିନର ସେ ଉନ୍ମାଦନା ଆଜି ସ୍ୱପ୍ନପ୍ରାୟ ।

କାଙ୍ଗାଳି ସାରଙ୍କର ମୋ ପ୍ରତି ଥିଲା ଅଗାଧ ସ୍ନେହ । ମୋର ସ୍ମୃତିଶକ୍ତି ଓ ଗଣିତ ପ୍ରତି ଆଗ୍ରହରେ ସେ ମୁଗ୍ଧ ହୋଇଥିଲେ । ତାଙ୍କରି ପ୍ରେରଣା ଓ ଉଦ୍ୟମରେ ଦ୍ୱିତୀୟ ଶ୍ରେଣୀ ଶେଷବେଳକୁ ମୁଁ ତୃତୀୟ ଶ୍ରେଣୀ ଗଣିତବହି ଶେଷକରି ଚତୁର୍ଥଶ୍ରେଣୀ ଗଣିତ ବହିରୁ ଅଧାକସି ସାରିଥିଲି । କିନ୍ତୁ ମୋର ଅକ୍ଷର ଅସ୍ପଷ୍ଟ ଓ ଅତ୍ୟନ୍ତ କଦର୍ଯ୍ୟହେତୁ ସେ ବ୍ୟଥିତ ହୋଇପଡୁଥିଲେ ଏବଂ ମୋତେ ପାଖରେ ବସାଇ ନିୟମିତ ହସ୍ତାକ୍ଷର ଲେଖାଉଥିଲେ । ବ୍ରହ୍ମା କୁକୁର ଲାଞ୍ଜକୁ ସଳଖ କରିବାକୁ ଉଦ୍ୟମକରି ବିଫଳ ହେବାପରି ସାରଙ୍କ ଚେଷ୍ଟା ଫଳବତୀ ହୋଇପାରି ନଥିଲା । ତିନିବର୍ଷରୁ ଉର୍ଦ୍ଧ୍ୱ ମୁଁ ତାଙ୍କ ପାଖରେ ପଢ଼ିବାସତ୍ତ୍ୱେ କେବେ ତାଙ୍କ ଠାରୁ ମାଡଗାଳି ଖାଇନାହିଁ । ସେ ହିଁ ପ୍ରକୃତରେ ମୋ ପାଠପଢ଼ାର ଭିତ୍ତି ପକାଇଥିଲେ । ତାଙ୍କ ଉଦ୍ୟମ ଓ ଆଶୀର୍ବାଦରେ ମୁଁ ସର୍ବଦା ଶ୍ରେଣୀରେ ପ୍ରଥମ ହେଉଥିଲି । ସେ ବାପାଙ୍କୁ ଅନେକଥର କହିଛନ୍ତି, "ଲକ୍ଷ୍ମୀକାନ୍ତ ଭବିଷ୍ୟତରେ ଆପଣଙ୍କ ନାଆଁ ରଖିବ ।"

ଭାବୁ ଭାବୁ କେତେବେଳେ ମୋତେ ଛାଇନିଦ ଲାଗିଯାଇଛି, ତାହା ଜାଣିପାରିନି । ସ୍ୱପ୍ନରେ ଦେଖିଲି ସାରଙ୍କ ସେଇ ଦୟନୀୟ ବେଶଭୂଷା, କୋରଡ଼ ଗତ ଚକ୍ଷୁ ଓ କୁଞ୍ଚିତ କପାଳ । ମୋ ଶେଯ ପାଖରେ ବସି ମୁଣ୍ଡ ଆଉଁସୁଛନ୍ତି ଏବଂ ବିକଳ କାକୁତି ଜଣାଉଛନ୍ତି- "ମୋ କଥା ବୁଝିବ, ମୁଁ ତୁମର ଶିକ୍ଷକ । ତମେ ଥିଲ ମୋର ଜଣେ ପ୍ରିୟ ଛାତ୍ର ମୁଁ ସବୁବେଳେ ତମ ଶୁଭମନାସିଛି । ଅଧିକ କିଛି ରହେଁନି ।" ରହଁକିନା ମୋର ନିଦ ଭାଙ୍ଗିଗଲା । ମାର୍ମାନ୍ତିକ ବେଦନା ଅନୁଭବ କଲି । ସାରା ଦେହଟା ଶିହରି ଉଠୁଥାଏ । ତାରୁଣ୍ୟର ଉଦ୍ଦାମତାରେ ଯିଏ ଦିନେ ମଣିଷ ତିଆରିର ବ୍ରତ ଗ୍ରହଣ କରିଥିଲା, ସେଇ କାଙ୍ଗାଳି ସାରଙ୍କର ଏ ଦୟନୀୟ ରୂପ ମୋର

ସାରାପ୍ରାଣମନକୁ ବିଷର୍ଣ୍ଣ କରିଦେଲା । ଆଉ ଶୋଇ ପାରିଲି ନାହିଁ । ରହିରହି ଭାସି ଉଠୁଥିଲା ସାରଙ୍କ ବେଦନାଗ୍ରସ୍ତ ମୁହଁର ବିକଳ ପ୍ରତିଛବି । ଠିକ୍‌କଲି, ଯଥାଶ୍ରୀଘ୍ର ସାରଙ୍କ ପାଇଁ ଟ୍ୟୁସନ୍ ଯୋଗାଡ କରିବି ।

ବର୍ଷଶେଷ ହେତୁ ଟ୍ୟୁସନ ମିଳିବା ସମ୍ଭବ ହେଲା ନାହିଁ । ମଇମାସ ଦ୍ୱିତୀୟ ସପ୍ତାହରେ ଦୁଇଟି ଟ୍ୟୁସନ ଜୁଟିଲା । କିନ୍ତୁ ରଜପରେ ଜୁନ୍ ୧୬/୧୭ ତାରିଖ ବେଳକୁ ଟ୍ୟୁସନ ଆରମ୍ଭକରିବାକୁ ଅଭିଭାବକମାନେ କହିଲେ । ତ୍ରିମାଳିମଠର ମହନ୍ତଙ୍କୁ ସାରଙ୍କ ଅବସ୍ଥା ଜଣାଇ ବିନାଭଡ଼ାରେ ମଠରେ ସ୍ଥାନ ଦେବାକୁ ଅନୁରୋଧ କଲି ମହନ୍ତ ମହାରାଜ ସେଥିରେ ସମ୍ମତି ଜଣାଇବା ସଙ୍ଗେସଙ୍ଗେ କହିଲେ, ପଣ୍ଡିତେ ରହିବେ ଏବଂ ରାତିବେଳା ମଠରେ ମଧ୍ୟ ମହାପ୍ରସାଦ ସେବା କରିବେ । ଭାବିଲି- ଆରସପ୍ତାହରେ ଗ୍ରୀଷ୍ମଛୁଟି ହେବ । ମୁଁ ଗାଆଁରୁ ସାର୍‌ଙ୍କ ଘରକୁଯାଇ ସବୁକଥା ଜଣାଇବି । ଜୁନ୍ ୧୬ତାରିଖ ବେଳକୁ ଜିଲାସ୍କୁଲ ଖୋଲି ନଥିଲେ ବି ସାର୍‌ଙ୍କୁ ସାଥିରେ ଆଣିସବୁ ବ୍ୟବସ୍ଥା କରିଦେଇ ଘରକୁ ଫେରିଯିବି ।

ଗ୍ରୀଷ୍ମଛୁଟିରେ ଗାଆଁକୁ ଗଲି । ଘରେ ପହଞ୍ଚିବାର ଘଣ୍ଟେଦୁଇ ଘଣ୍ଟାପରେ ମୋର ପଢ଼ାସାଥୀ ଫକୀର ଘରକୁ ଛୁଟିଲି, କାରଣ ଫକୀର ଭଉଣୀର ଶାଶୁଘର ସାରଙ୍କ ଗାଆଁ ଜଳେଶ୍ୱର ପଢ଼ାରେ । ମନେ ମନେ ଠିକ୍ କରିଥିଲି ଦୁଇ ବନ୍ଧୁ କାଲି ସାଇକେଲ୍‌ରେ ଜଳେଶ୍ୱରପଢ଼ା ଯିବୁ । ଫକୀର ମୋତେଦେଖି ବହୁତ ଖୁସିହେଲା । ଦୁହେଁ ବାରଣ୍ଡାରେ ପଡିଥିବା ଚୌକିରେ ବସିଲୁ । ଫକୀର ତା'ର ସ୍ତ୍ରୀ ଉଦ୍ଦେଶ୍ୟରେ କହିଲା, "ବନ୍ଧୁ ଆସିଛନ୍ତି, ଚା ଦୁଇକପ୍ ପଠାଅ ।" କାଲି ଆମେ ସାର୍‌ଙ୍କୁ ଦେଖାକରିବାକୁ ଯିବା ପ୍ରସ୍ତାବ ବାଢ଼ିବାରୁ ଫକୀର ମୁହଁ ଶେତା ପଡ଼ିଗଲା । ତା ଆଖିରୁ ଝରି ପଡ଼ିଲା ଦୁଇଟୋପା ଲୁହ । ସେ ମୋତେ କୁଣ୍ଢାଇପକାଇ କହିଲା, "ଭାଇ, ସାର୍ ଆଉ ଇହ ଜଗତରେ ନାହାନ୍ତି । ମାସାଧିକକାଳ ମ୍ୟାଲେରିଆ ଭୋଗିଭୋଗି ବିନା ଚିକିତ୍ସାରେ ମୃତ୍ୟୁବରଣ କରିଛନ୍ତି । ଗଲା ସପ୍ତାହ ରବିବାର ଦିନ ତାଙ୍କର ଏକାଦଶାହ ହୋଇଥିଲା ।

ତା କଥା ଶୁଣି ହତବାକ୍ ହୋଇଗଲି । ସାରା ଦେହଟା ଅବଶ ଲାଗିଲା । 'ଚା ନଖାଇ ଚୁପ୍, ଚାପ୍ ଘରକୁ ଫେରିଆସିଲି । କାଙ୍ଗାଳିସାର ଆଉ 'ଇହଜଗତରେ ନାହାନ୍ତି' ଏଇକଥା ପ୍ରାଣତନ୍ତ୍ରୀକୁ ଚହଲାଇ ଦେଉଥିଲା । କାଙ୍ଗାଳି ସାର୍ ତାଙ୍କ ଜୀବ ଦଶାରେ କେତେ ମଣିଷ ତିଆରି କରିଛନ୍ତି । ଦିନପରେ ଦିନ ନିଜକୁ ତିଳ ତିଳ ଉତ୍ସର୍ଗ କରିଛନ୍ତି, ରାଷ୍ଟ୍ରନିର୍ମାଣର ଭିତ୍ତି ପତ୍ତନରେ । କିନ୍ତୁ ସେଇ କାଙ୍ଗାଳି ସାର୍ ଶେଷରେ ଅଲୋଡ଼ା- ଅଖୋଜା, ଉପେକ୍ଷା ଓ ଅବହେଳାରେ ସବୁଦିନ ପାଇଁ ହଜିଗଲେ । ତାଙ୍କ ପାଇଁ କିଛି କରିପାରିଲି ନାହିଁ- ଏଇ ଅବସୋସରେ ଦହନ ଭିତରେ ମୁଁ ଖାଲି ଛଟପଟ ହେଉଥିଲି ଆଉ ମନେମନେ ପ୍ରାର୍ଥନା କରୁଥିଲି ଗୁରୁଦେବ । ଆମ୍ଭମାନଙ୍କୁ କ୍ଷମାକର । ଆମେ କ'ଣ କରୁଛୁ ସେକଥା ବୋଧହୁଏ ନିଜେ ଜାଣୁନା ।



# ଯୁକ୍ତରାଷ୍ଟ୍ର ଯାତ୍ରାର ଅନ୍ତରାଳେ

ଆମେରିକା କହିଲେ ପଶ୍ଚିମଗୋଲାର୍ଦ୍ଧର ଉତ୍ତର ଓ ଦକ୍ଷିଣ ଆମେରିକା ଅନ୍ତର୍ଗତ ଭୂଖଣ୍ଡର ସମସ୍ତ ଦେଶକୁ ବୁଝାଏ । ଅନ୍ୟପକ୍ଷରେ ଉତ୍ତର ଆମେରିକାର ଯୁକ୍ତରାଷ୍ଟ୍ରକୁ ପୃଥିବୀର ଅନ୍ୟପ୍ରାନ୍ତର ଲୋକେ ସାଧାରଣତଃ ଆମେରିକା ବୋଲି ବୁଝିଥାନ୍ତି । ଏହି ଯୁକ୍ତରାଷ୍ଟ୍ର ଆମେରିକା ଥିଲା ମୋର କୈଶୋରର ସ୍ୱପ୍ନ ଏବଂ ଯୌବନର ଏକ ଉଦ୍ଦାମ ଅନ୍ୱେଷଣ ।

ଷଷ୍ଠ-ସପ୍ତମ ଶ୍ରେଣୀର ଭୂଗୋଳ ପ୍ରବେଶିକା ଇତିହାସ ପାଠ ମୋ ହୃଦୟରେ ସାତ ସମୁଦ୍ର ତେର ନଈ ସେପାରି ସେଇ ଦେଶପ୍ରତି ଅଦମ୍ୟ ଆକର୍ଷଣ ସୃଷ୍ଟି କରିଥିଲା । ମୋର ବୟସ ଯେତେବେଳ ୬/୭ବର୍ଷ, ସେତେବେଳେ ଗୋଟିଏ କୋକୁଆଭୟ ଆମ ଅଞ୍ଚଳରେ ସୃଷ୍ଟି ହୋଇଥିଲା । ତାହା ହେଉଛି ଜାପାନ ସୈନ୍ୟ ଆମ ଦେଶକୁ ମାଡ଼ି ଆସୁଛନ୍ତି । ଗୋରା ସରକାରଙ୍କ ଫଉଜ ସମୁଦ୍ରକୂଳ ଅଞ୍ଚଳକୁ ଜଗି ବସିଛନ୍ତି । ଅଳ୍ପକେଇ ଦିନ ପରେ ପୁଣି ଆଶ୍ୱସ୍ତିର ଖବର ବ୍ୟାପିଗଲା ଯେ, ଆମେରିକା ବୋମାମାଡ଼ରେ ଜାପାନ ଓ ଜର୍ମାନୀର ଅଣ୍ଟା ଭାଙ୍ଗିଯାଇଛି । ଏକଥା ଶୁଣିବାପରେ ମୋ କଅଁଳ ମନରେ ଆମେରିକା ହିରୋ ବନିଗଲା । କ୍ରମଶଃ ସେଇଦେଶ ବିଷୟରେ ଜାଣିବାକୁ ମୁଁ କୌତୁହଳୀ ହେଲି । ତାପ୍ରତି ମୋର ଅନୁରାଗ ବଢ଼ିବାରେ ଲାଗିଲା ।

ହେତୁ ହେବାପରେ ଜାଣିଲି ଆମେରିକା ବିଶ୍ୱରେ ସବୁକ୍ଷେତ୍ରରେ ଅଗ୍ରଣୀ । ଶିକ୍ଷ, ବିଜ୍ଞାନ, ବୈଷୟିକ ଜ୍ଞାନ, ଅର୍ଥନୀତି ଏବଂ ସାମରିକ କ୍ଷେତ୍ରରେ ତାହାର ଅଭୂତପୂର୍ବ ଉନ୍ନତି ଘଟିଛି । ତେଣୁ ସେ ଏବେ ସବୁଥିରେ ଆଗୁଆ । ଅଥଚ ଆମେରିକାଯାଇ ସେ ଦେଶର ଐଶ୍ୱର୍ଯ୍ୟ ପ୍ରାଚୁର୍ଯ୍ୟକୁ ପ୍ରତ୍ୟକ୍ଷ ଅନୁଭବରେ ଆଣିବା ମୋ ପାଇଁ ଥିଲା ଆକାଶକୁସୁମ । ତଥାପି ମନଗହନରେ କେଉଁ ନିଭୃତ କୋଣରେ ଆମେରିକାକୁ ପର୍ଯ୍ୟଟନରେ ଯିବାର ସୁପ୍ତ ବାସନା ଆସନ ଜମାଇ ରହିଥିଲା ।

ଜୀବନ ଓ ଜଗତ ସମ୍ପର୍କରେ ଅନୁଭବ ଓ ଅଭିଜ୍ଞତାରୁ ମୋର ଦୃଢ଼ ବିଶ୍ୱାସ ଯେ ବିଶ୍ୱ, ଦେଶ, ସମାଜ ଏପରିକି ବ୍ୟକ୍ତି ଜୀବନରେ ଘଟୁଥିବା ପ୍ରତିଟି ଘଟଣ-ଅଘଟଣ ବିଧି ନିର୍ଦ୍ଦିଷ୍ଟ । ମଣିଷର ଆଶା- ଆକାଙ୍କ୍ଷାର ପରିପୂର୍ତ୍ତି, ସାଧନା ଓ ସତକର୍ମ ଉପରେ ନିର୍ଭରଶୀଳ । ହେଲେ ଇଶ୍ୱରଙ୍କ ବିନା ଇଚ୍ଛାରେ ଦୂବଘାସବି କଅଁଳି ନଥାଏ । ସତ୍ କର୍ମର ଫଳ । ପରମେଶ୍ୱରଙ୍କ ବିଚାରରେ ନିର୍ଦ୍ଦିଷ୍ଟ ସମୟ ବିଶେଷରେ ଫଳପ୍ରସୂ ହୋଇଥାଏ ।

ମୋର ସାନପୁଅ ସୁମନରଞ୍ଜନ(ଗୁଗୁଲି) ଦିଲ୍ଲୀସ୍ଥିତ ଆନ୍ତର୍ଜାତୀକ ଗବେଷଣା ଅନୁଷ୍ଠାନରେ '(I.C.G.B.E)'ରେ (ବଂଶାନୁଗୁଣ ଓ ଜୀବବିଜ୍ଞାନ) ସମ୍ବନ୍ଧୀୟ ବୈଷୟିକ ଜ୍ଞାନର ଗବେଷଣା କେନ୍ଦ୍ର)-H.I.V(ଏଡ଼ସ)ଉପରେ ଗବେଷଣା କରୁଥିଲାବେଳେ ସେ ବର୍ଷକ ପାଇଁ ଆମେରିକାର ପ୍ରସିଦ୍ଧ ଆରିଜୋନା ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କରିଥିଲା । ସେ ପି.ଏଚ.ଡ଼ି ଡ଼ିଗ୍ରୀ ଲାଭପରେ ତାହାର ପରବର୍ତ୍ତୀ ଗବେଷଣା ଆମେରିକାରେ

ସୁବିଧାଜନ ହେବ ବୋଲି ବୃତ୍ତିପାଇ ୨୦୦୫ ମଇ ମାସରେ ସେଠାକୁ ଯାତ୍ରା କଲା । ସେ ସେଠାରେ ବିଭିନ୍ନ ଗବେଷଣା ଅନୁଷ୍ଠାନରେ କାମକରି କୃତିତ୍ୱର ଅଧିକାରୀ ହୋଇପାରିଛି ।

ପୁଅ ଆମେରିକାରେ ରହୁଥିବାରୁ ସେଠାକୁ ବୁଲିଯିବାକୁ ସୁପ୍ତଆକାଙ୍‌କ୍ଷା କ୍ରମଶଃ ଚେଇଁଉଠିଲା । ମୁଁ ଓ ତାର ବୋଉ ଆମେରିକା ବୁଲିଯିବାକୁ ସୁମନ ବାରମ୍ବାର ଅନୁରୋଧ କରିବାରେ ଲାଗିଲା । ଆମେ ଗୋଟିଏ କଥାରେ ଅଟଳ ରହିଲୁ ଯେ, ସେ ବିବାହ କରି ବୋହୂକୁ ସେଠାକୁ ନନେବା ପର୍ଯ୍ୟନ୍ତ ଆମେ ଆମେରିକା ମାଟି ମାଡ଼ିବୁ ନାହିଁ । କାରଣ ଆମେ ଦୁଃଖିତ ଥିଲୁ ପୁଅର ବିବାହ ବୟସ ଗଡ଼ି ଯାଉଛି । ଆମେ ଆଦୌ ଚାହୁଁନଥିଲୁ ପୁଅ ବିବାହ ବିମନା ହୋଇ ଗବେଷଣାରେ ଲାଗିରହୁ । ପୁଅର ବିବାହ ୨୦୦୯ରେ ସମ୍ପନ୍ନ ହେଲା । ସେ ବୋହୂ ସ୍ମୃତି ସହିତ ଯାଇ ତାହାର କର୍ମସ୍ଥଳୀ ମେରିଲ୍ୟାଣ୍ଡର ରକଭିଲରେ ରହିଲା । ଏଣେ ଆମର ଆମେରିକା ଯିବା ନିଶା ବଢ଼ି ଲାଗିଥାଏ । କିନ୍ତୁ ଏତେ ଶୀଘ୍ର ଆମେ ଅମେରିକା ଯିବା ଈଶ୍ୱରଙ୍କ ଇଚ୍ଛା ନଥିଲା । 'Man proposes God disposes' ଆମର ଆମେରିକା ଯାତ୍ରା ହେଲା ଏକ ଲମ୍ବା କାହାଣୀ ।

ବିଦେଶ ଯିବାପାଇଁ ପାସପୋର୍ଟ ଓ ଭିସା ନିତାନ୍ତ ଦରକାର । ଆମେ ପାସପୋର୍ଟ ପାଇଁ ଆବେଦନ କଲୁ । ମୋର ସାନଜ୍ୱାଇଁ ବାଦଲ ମହାନ୍ତି ଏକାମରେ ବଡ଼ ଧୁରନ୍ଧର । ସେ ବୁଝାସୁଝା କରୁଥାନ୍ତି । ଏଥିପାଇଁ ପୁଲିସ ରିପୋର୍ଟ ଜରୁରି । ମୁଁ ତାଙ୍କ ଅନୁରୋଧରେ ସେ ଦାୟିତ୍ୱ ନେଲି । ପୂଜାପୂଜି କରି କାମହାସଲ କରିବା ମୋ ଜାତକରେ ନାହିଁ । ମୋ ସ୍ଥାୟୀ ବାସସ୍ଥାନ ଗାଆଁର ଥାନା, ଗୋପରୁ ରିପୋର୍ଟ ଆସିବା ସତ୍ତ୍ୱେ ପୁରୀ ଏସ୍.ପିଙ୍କ ଅଫିସରୁ ତାହା ପଠାଗଲା ନାହିଁ । ମୁଁ ତତ୍‌କାଳୀନ ପୁରୀ ଏସ୍.ପି. ସୋମେନ୍ଦ୍ର ପ୍ରିୟଦର୍ଶୀଙ୍କୁ ସାକ୍ଷାତ କଲି । ସେ ଥିଲେ ମୋର ପରିଚିତ । ସେ ସଂପୃକ୍ତ ଅଫିସରଙ୍କୁ ଡାକି ସେଇଦିନ ପାସ୍‌ପୋଟ୍ ଅଫିସକୁ ରିପୋର୍ଟ ପଠାଇବାକୁ ଆଦେଶ ଦେଲେ । ୩/୧୨/୦୯ରେ ମୋର ପାସପୋର୍ଟ ଇସୁ ହେଲା । ମୁଁ ତାହା ପାଇଲାପରେ ଆଶା କଲି, ହୁଏତ ପରବର୍ତ୍ତୀ ଡାକରେ ଶ୍ରୀମତୀଙ୍କ ପାର୍ସପୋର୍ଟ ଆସିଯିବ । କିନ୍ତୁ ତାହା ହେଲାନାହିଁ । ପଦ୍ମଘୁଞ୍ଚ ଘୁଞ୍ଚ ଯାଉଥାଏ, ଦିନ ପରେ ଦିନ ବିତିଲା । ପ୍ରାୟ ଦେଢ଼ମାସ ପରେ ବାଦଲ ପାସପୋର୍ଟ ଅଫିସରେ ବୁଝାବୁଝି କରିବାରୁ ସଂପୃକ୍ତ କ୍ଲର୍କ ପୋଲିସ ରିପୋର୍ଟ ଆସିନାହିଁ ବୋଲି ସ୍ଲି ନେଲେ । ମୁଁ ପୁଣି ଏସ୍.ପି.ଙ୍କ ଅଫିସକୁ ଦଉଡ଼ିଲି । ରିପୋର୍ଟ ପଠାଯାଇଥିଲା ଚିଠି ନମ୍ବର ନେଇ ବାଦଲକୁ ଦେଲି । ଗୋଟିଏ ଚିଠିରେ ମୋର ଓ ଶ୍ରୀମତୀଙ୍କ ସମ୍ପର୍କରେ ଅନୁକଳ ରିପୋର୍ଟ ଯାଇଥିଲା ।

ବହୁ ଖୋଜା ସତ୍ତ୍ୱେ ସେ ରିପୋର୍ଟ ମିଳିଲା ନାହିଁ । ସଂପୃକ୍ତ କ୍ଲର୍କ ନିଜଦୋଷ ଘୋଡ଼ାଇବା ପାଇଁ ସ୍ନେହଲତାଙ୍କ ଆବେଦନକୁ ଫାଇଲ କରିଦେଲେ । ବାଦଲ କିନ୍ତୁ ନଛୋଡ଼ ବନ୍ଧା । ଉପରିସ୍ଥ ଅଫିସର ନିକଟରେ ଫେରାଦ ହେଲୁ । ଆଠଦିନ ପରେ ଆମେ ଆଉଥରେ ସାକ୍ଷାତ କରିବାକୁ ସେ କହିଲେ । ବାଦଲ ଇତି ମଧ୍ୟରେ ରିପୋର୍ଟ ଖୋଜାଇଲା । ବହୁ ସନ୍ଧାନ ପରେ ପୁରୀର ସ୍ନେହଲତା ଦାସଙ୍କ ରିପୋର୍ଟ ଖୋର୍ଦ୍ଧାର

ସ୍ନେହଲତା ପଟ୍ଟନାୟକଙ୍କ ଫାଇଲରୁ ଆବିଷ୍କୃତ ହେଲା । ଆମେ ପୁନଃ ସାକ୍ଷାତ କଲାବେଳକୁ ରିପୋର୍ଟ ମିଳି ଯାଇଥିବାରୁ ଶ୍ରୀମତୀଙ୍କ ପାସପୋର୍ଟ ଇସୁ ପାଇଁ ଅର୍ଡ଼ର ହେଲା । ଆମେ ଆଶ୍ୱସ୍ତ ହେଲୁ ଏବଂଯୁକ୍ତରାଷ୍ଟ୍ର ଯିବା ଉଦ୍ଦେଶ୍ୟରେ ଭିସାପାଇଁ ଆବେଦନ କଲୁ ।

ବିଘ୍ନପରେ ବିଘ୍ନ । ଆମେ ଦରଖାସ୍ତ କରିବାର ଦୀର୍ଘ ୫ମାସ ବିଳମ୍ବରେ ଭିସା ଇଣ୍ଟରଭିୟୁର ଡାକରା ଆସିଲା । ଇତି ପୂର୍ବରୁ ଓଡ଼ିଶା ବାସୀଙ୍କର ୟୁ.ଏସ୍.ଏ ଭିସା ପାଇଁ କଲକତା ଏମ୍ବାସିରେ ଇଣ୍ଟରଭିୟୁ ହେଉଥିଲା । ଓଡ଼ିଆମାନଙ୍କ ପାଇଁ କଲିକତାରେ ଭିସାଇଣ୍ଟରଭିୟୁରେ ଯୋଗଦେବା ବିଶେଷ ଅସୁବିଧା ଜନକ ନଥିଲା । ମୋର ମଝିଆଁ ପୁଅ ସୌମ୍ୟ ସପରିବାର କଲିକତାରେ ରହୁଥିବାରୁ ତାହା ଆମପାଇଁ ଥିଲା ବିଶେଷ ସୁବିଧା ଜନକ । କିନ୍ତୁ ଓଡ଼ିଆମାନଙ୍କ ପାଇଁ ଭିସା ଇଣ୍ଟରଭିୟୁର ସ୍ଥାନ ହାଇଦ୍ରାବାଦ୍ ହେଲା । ଅନ୍ୟ ଓଡ଼ିଆମାନଙ୍କ ପାଇଁ ତାହାହେଲା ଅସୁବିଧା ଜନକ ଅଥଚ ମୋ ଝିଆରୀ ଓ ଝିଆରୀ ଜ୍ୱାଇଁ ଲୋପାମୁଦ୍ରା(ଝିଲ୍ଲୀ) ଏବଂ ରବିନାରାୟଣ ସେଠାରେ ରହୁଥିବାରୁ ଭିସା ଇଣ୍ଟରଭିୟୁ ହାଇଦ୍ରାବାଦରେ ଦେବାରେ ଆମର ଅସୁବିଧା ନଥିଲା ବରଂ ହାଇଦ୍ରାବାଦ ବୁଲିଯିବା ପାଇଁ ସେମାନେ ବାରମ୍ବାର କରୁଥିବା ନିମନ୍ତ୍ରଣକୁ ରକ୍ଷା କରିବା ଏବଂ ଭାରତର ଅନ୍ୟତମ ପ୍ରସିଦ୍ଧ ସହର ହାଇଦ୍ରାବାଦ୍ ବୁଲିବାର ସୁଯୋଗ ମିଳିଲା ଭାବିଲି ଭଲ ହେଲା । ଏକାଥରକେ ଠାକୁରଦେଖା ଓ କଦଳୀ ବିକା ହୋଇପାରିବ । ଇଣ୍ଟରଭିୟୁ ତାରିଖ ଥିଲା ମାର୍ଚ୍ଚମାସ ୨୦ତାରିଖ, ଆମେ ୧୭ତାରିଖରେ ଭୁବନେଶ୍ୱରରୁ ହାଇଦ୍ରାବାଦ୍ ଅଭିମୁଖେ ଗମନ ହେଲୁ ।

ହାଇଦ୍ରାବାଦ୍ ଆମପାଇଁ କେବଳ ନୂଆ ସହର ଥିଲା । ପ୍ଲେନରେ ଯାତ୍ରାକରିବା ମଧ୍ୟ ଆମ ପାଇଁଥିଲା ପ୍ରଥମ । ଆମର ଏଇ ନୂଆଯାତ୍ରାର ସହଯାତ୍ରିଣୀ ଓ ଗାଇଡ୍ ହେଲେ ସାନଝିଅ ଜ୍ୟୋତିଶ୍ରୀ(ଲୁଲୁ) । ଧରାବନ୍ଧା ଚେକିଂପରେ ଆମେଯାଇ ଆମ ପାଇଁ ଉଦ୍ଦିଷ୍ଟ ସିଟ୍‌ରେ ବସିଲୁ ଏବଂ ବେଲଟ୍ ବାନ୍ଧିବା ପାଇଁ ସତର୍କବାଣୀ ଶୁଣି ବେଲଟ ବାନ୍ଧିଲୁ । ବିମାନଟିର ଉଡ଼ାଣ ଆରମ୍ଭ ହେଲା । ତାହା ଭୂମିସହ ଶାଗୁଣାପରି ସମାନ୍ତରରେ କିଛି ସମୟଉଡ଼ି ଆସ୍ତେ ଆସ୍ତେ ଉପରକୁ ଉଠିଲା । ସ୍ନେହଲତା କାନ ଓ ପଛପଟ ମୁଣ୍ଡରେ ଅସ୍ୱାଭାବିକତା ଅନୁଭବ କରି କାନରେ ତୁଳାଦେଇ ଦୁଇହାତରେ ମୁଣ୍ଡକୁ ଚିପିଧରିଥାନ୍ତି । ମୁଁ ଝରକା କାଚରେ ବାହାରକୁ ଲକ୍ଷ୍ୟ କରୁଥାଏ । ଭୁବନେଶ୍ୱର ନଗରର କୋଠାବାଡ଼ି, ପଡ଼ିଆ ଓ ପାହାଡ଼ ଚର୍ତୁପାର୍ଶ୍ୱର ଗଛଲତା ବିଲମାଳି ଆଦି କ୍ରମେ ସଂକୁଚିତ ହେବାରେ ଲାଗିଲା । କିଛି ସମୟ ପରେ ବିମାନବନ୍ଦରର ଚାରିପାଖ ଶିଳ୍ପୀ ଅଙ୍କିତ ଏକ ସୁଦୃଶ୍ୟ ଚିତ୍ରପଟ ପରିବୋଧେ ହେଲା । ପ୍ଲେନଟି ଉପରକୁ ଉଠିବାପରେ ଦୃଷ୍ଟିରେ ପଡ଼ିଲା ଧଳା, କଳା, ନୀଳ, ଧୂସର ବାଦଲର ମେଳା । ବାଦଲଗୁଡ଼ିକ ବେଳେବେଳେ ବିଭିନ୍ନ ଜ୍ୟାମିତିକ ଆକୃତିର ସାନ, ବଡ଼ତୁଳା ଗଦାପରି ଦେଖାଯାଇଥାନ୍ତି । ଭୁବନେଶ୍ୱରରୁ ହାଇଦ୍ରାବାଦକୁ ଆକାଶପଥ ମୁଖ୍ୟତଃ ମାଳଭୂମି ଓ ପର୍ବତ ମାଳା ଉପରେ ଲମ୍ବିଛି । ଉଚ୍ଚପାହାଡ଼ ପର୍ବତଗୁଡ଼ିକ ବିମାନ ଝରକାରୁ ମଧ୍ୟ ବଉଦ ପରି ଦେଖାଯାଇଥାନ୍ତି ।

ହାଇଦ୍ରାବାଦ ବିମାନ ବନ୍ଦର କ୍ରମେ ନିକଟତର ହେଲା । ସେତେବେଳକୁ

ଦିନ ବାରଟା । ଇତିପୂର୍ବରୁ ଆକାଶରେ ବଉଦ ଭେଳାମାନ ଦେଖାଯାଉଥିଲା । ପ୍ଲେନଟି ନିମ୍ନମୁଖୀ ହେବାରୁ ଲକ୍ଷ୍ୟକଲି ଭୂମିକୁ ଲାଗିରହିଛି । ବଉଦ ଖଣ୍ଡପରି ସ୍ଥିର ପଦାର୍ଥ । ବିମାନ ବନ୍ଦରରେ ଅବତରଣ ପୂର୍ବରୁ ସେଗୁଡ଼ିକ କ୍ଷୁଦ୍ର-ମଧ୍ୟମ ଶିଳାଖଣ୍ଡ ପରି ଜଣାଗଲା । କାରରେ ନଗର ମଧ୍ୟକୁ ଗଲାବେଳେ ସେ ସବୁହେଲେ ଆହୁରି ସ୍ପଷ୍ଟ । ଜାଣିଲି ସେଗୁଡ଼ିକ କ୍ଷୟୀଭୂତ ଶିଳାଖଣ୍ଡ । କାଳକ୍ରମେ ସେଗୁଡ଼ିକ କୋମଳ ମୃତ୍ତିକାଂଶ କ୍ଷୟ ହେବାରୁ ପଥର ଉପରେ ପଥର ଖଞ୍ଜା ହେଲାପରି ରହିଛନ୍ତି । ଓହ୍ଲାଇବାପରେ ବେଲଟରୁ ବ୍ୟାଗେଜ ନେଇ ଗେଟ୍‌କୁ ଆସିଲୁ । ସେଠାରେ ଆମକୁ ପାଛୋଟି ନେବାପାଇଁ ଅପେକ୍ଷା କରିଥିଲେ ଜ୍ୱାଇଁ, ଇଞ୍ଜିନିଅର ରବିନାରାୟଣ ଓ ନାତି ବିଭାସ(ରିଶି) । ଆମେ କାରରେ ନଗର ଉପକଣ୍ଠଦେଇ ୪୦କି:ମି ଯାଇ ନଗର ମଧ୍ୟସ୍ଥ ମିଆଁପୁରରେ ପହଞ୍ଚିଲୁ ୧୨ଘ.୪୦ମି.ରେ ବସାରେ ଝିଲ୍ଲୀ ପ୍ରତୀକ୍ଷାରେ ଥିଲା । ପହଞ୍ଚିବାପରେ ଆବେଗିକ ସ୍ୱାଗତ ଜଣାଇ ଆମ ଚର୍ଚ୍ଚାରେ ଲାଗିପଡ଼ିଲେ ।

ଇଣ୍ଟରଭିୟୁ ୨୦ତାରିଖରେ, ହାତରେ ଥାଏ ଦୁଇଦିନ ୧୮ ଓ ୧୯ ତାରିଖ । ୧୮ତାରିଖରେ ଚିଲକୁର ବାଲାଜୀଙ୍କ ଦର୍ଶନ ଆମପାଇଁ ଏକ ସ୍ମରଣୀୟ ଘଟଣା । ଭକ୍ତମାନେ ଭିସାପାଇଁ ସ୍ୱାମୀଙ୍କ ପାଖେ ମନାସିଲେ ତାହା ପୂର୍ଣ୍ଣ ହୋଇଥାଏ । ତାଙ୍କୁ ଭିସାବାଲାଜୀ ବୋଲି ମଧ୍ୟ କୁହାଯାଏ । ଆମେରିକା ଯାଇ ପ୍ରଭୂତ ଅର୍ଥ ଅର୍ଜନ କରିବା, ଆନ୍ଧ୍ରବାସୀଙ୍କ ପାଇଁ ଏକ ରଙ୍ଗୀନ ସ୍ୱପ୍ନ । ଛାତ୍ରମାନେ କେବଳ ନୁହନ୍ତି ସେମାନଙ୍କର ବାପା ମାଆ ଓ ଆତ୍ମୀୟମାନେ ମଧ୍ୟ ଏଥିପାଇଁ ବ୍ୟଗ୍ର- ବ୍ୟାକୁଳ । ସେମାନେ ପିଲାମାନଙ୍କୁ ଶୈଶବରୁ ଏହି ଲକ୍ଷ୍ୟ ପଥରେ ଆଗେଇଯିବାକୁ ପ୍ରବର୍ତ୍ତାଇଥାନ୍ତି । ଫଳତଃ ଆମେରିକାରେ ଏବେ ଭାରତର ଅନ୍ୟ ରାଜ୍ୟର ଛାତ୍ର ଅପେକ୍ଷା ତେଲଗୁ ଛାତ୍ରଙ୍କ ସଂଖ୍ୟା ଅଧିକ । ଆମେରିକା ଭୂଖଣ୍ଡରେ ଏବଂ ପୃଥିବୀର ଭିନ୍ନ ଭିନ୍ନ ଦେଶରେ ଥିବା ଆମେରିକାର ଦୂତାବାସମାନଙ୍କ ଉପରେ ଆତଙ୍କବାଦୀଙ୍କ ବାରମ୍ବାର ଆକ୍ରମଣ ଫଳରେ ଏବେ ଭିସା ପ୍ରଦାନରେ ଆମେରିକା ଖୁବ ସତର୍କତା ଅମଲମ୍ବନ କରୁଛି । ଟିକିଏ ସନ୍ଦେହ ହେଲେ ଭିସା ଆବେଦନକୁ ପ୍ରତ୍ୟାଖ୍ୟାନ କରାଯାଉଛି । ଏଣୁ ଭିସା ମଞ୍ଜୁର ନହେବା ପର୍ଯ୍ୟନ୍ତ ଆବେଦନକାରୀ ଆଶଙ୍କାରେ ରହିଥାଆନ୍ତି । ଧର୍ମଭୀରୁ ଲୋକମାନଙ୍କ ମଧ୍ୟରେ ଦୃଢ଼ବିଶ୍ୱାସ ରହିଛି ଚିଲକୁର ବାଲାଜୀଙ୍କ ମନ୍ଦିର ବେଢ଼ାରେ ୨୧ଥର ପ୍ରଦକ୍ଷିଣ କରିବାପରେ ଯାହା ପ୍ରାର୍ଥନା କରାଯାଏ ତା ନିଶ୍ଚିତ ପ୍ରାପ୍ତ ହୋଇଥାଏ । ଏଣୁ ଆମ ମନସ୍କାମନା ପୂରଣ ପାଇଁ ବାଲାଜୀଙ୍କ ମନ୍ଦିରରେ ପହଞ୍ଚିଲୁ । ପହଞ୍ଚି ଦେଖିଲି ବହୁ ସକାମୀଭକ୍ତ ମନ୍ଦିର ଚାରିପାର୍ଶ୍ୱ ପ୍ରଦକ୍ଷିଣ କରୁଛନ୍ତି । ପ୍ରଦକ୍ଷିଣ ପରେ ଆମେ ଯୋଡ଼ହସ୍ତରେ ଭିସା ପାଇବାକୁ ପ୍ରାର୍ଥନା କରି ଠାକୁରଙ୍କ ଉପରେ ଭରସାରଖି ଫେରିଲୁ ।

ଇଣ୍ଟରଭିୟୁ ପୂର୍ବରାତି । ମୁଁ ଭାବନା ରାଜ୍ୟରେ ବୁଡ଼ିଗଲି । ମୋର ଜଣେ ଅନ୍ତରଙ୍ଗ ଅଧ୍ୟାପକ ବନ୍ଧୁଙ୍କ ପରାମର୍ଶ ମନେ ପଡ଼ିଲା । ସେ ଛଅବର୍ଷ ପାଇଁ ଆମେରିକାର ଭିସା ଚାହିଁଥିଲେ । କିନ୍ତୁ ତାଙ୍କୁ ମାତ୍ର ୩ବର୍ଷ ପାଇଁ ଭିସା ମିଳିଲା । ସେ ମୋତେ ପରାମର୍ଶ ଦେଇଥିଲେ ଅଧିକ ସମୟ ପାଇଁ ଭିସା ମାଗିବାକୁ । ସୁମନର ପରାମର୍ଶ ଥିଲା ଅନ୍ୟପ୍ରକାର । ଏ ସମ୍ପର୍କରେ ତା'ର ଥିଲା ବାସ୍ତବ ଅଭିଜ୍ଞତା । ସେ କହିଥିଲା ଆମେରିକା

ବୟସ୍କ ଓ ବୁଦ୍ଧିଜୀବୀଙ୍କୁ ଭିସା ପ୍ରଦାନ କ୍ଷେତ୍ରରେ କୋହଳ ନୀତି ଅମଲମ୍ବନ କରେ । ତଥାପି ଆପଣ ସତର୍କତା ଅବଲମ୍ବନ କରିବେ । ଆପଣ ଆମେରିକା ଯିବାକୁ କାହିଁକି ଚାହାଁନ୍ତି ବୋଲି ପଚାରିଲେ କହିବେ ଆମେ ପୁଅ ବୋହୂ ବିଶେଷତଃ ଶିଶୁ ନାତିକୁ ଦେଖିବାକୁ ଯାଉଛୁ । ସେଠାରେ ୨,୩ମାସରହି ଭାରତ ଫେରିଯିବୁ । କାରଣ ଭାରତରେ ମୋର ସମସ୍ତ ଆତ୍ମୀୟ ଓ ବନ୍ଧୁ ବାନ୍ଧବ ଅଛନ୍ତି । ଏପରି କହିଲେ ଭିସା ଅଫିସରେ ଭିସାର ଭାଲିଡ଼ିଟିକାଳ ଉପରେ ଗୁରୁତ୍ୱ ଦେବେନାହିଁ । ଏପରିକି ଭିସାର ପୂରା ସମୟ ଅର୍ଥାତ୍ ୧୦ବର୍ଷ ପାଇଁ ଆପଣ ଭିସା ପାଇପାରନ୍ତି । ମୁଁ ଅକ୍ଷରେ ଅକ୍ଷରେ ପୁଅ କଥାକୁ ପାଳନ କଲି । ଅବଶେଷରେ ଆମକୁ ୧୦ବର୍ଷ ପାଇଁ ଭିସା ମଞ୍ଜୁର ହୋଇଥିଲା ।

ଭିସାଇଣ୍ଟଭିୟୁ ଥିଲା ଆମପାଇଁ ଏକ ଚମକପ୍ରଦ ଅନୁଭୂତି । ସକାଳ ନଅଘଣ୍ଟାସୁଦ୍ଧା ଆମେ ଦୂତବାସ ପରିସରରେ ପହଞ୍ଚିବାକୁ ନିର୍ଦ୍ଦେଶ ଥିଲା । ଦୂତାବାସର ଅଫିସ ସିକନ୍ଦରାବାଦରେ ଆମେ ଠିକ୍ ସମୟରେ ଉଦ୍ଦିଷ୍ଟସ୍ଥାନରେ ପହଞ୍ଚି ଯାଇଥିଲେ ବି କାରପାର୍କିଙ୍ଗ ନେଇ ଅସୁବିଧାର ସମ୍ମୁଖୀନ ହେଲୁ । ପ୍ରାୟ ଦେଢ଼ ଫର୍ଲିଙ୍ଗ ଦୂରରେ କାରଟି ପାର୍କିଂ କରି, ଚାଲି ଚାଲି ପହଞ୍ଚିଲାବେଳକୁ ୯ଟା ବାଜିବାକୁ ମାତ୍ର ୧୨ମିନିଟ୍ ବାକି ଥିଲା । ସେଦିନ ୯ଘଣ୍ଟା, ୧୧ଘଣ୍ଟା ଓ ଅପରାହ୍ନ ୧ଘଣ୍ଟାରେ ୩ଟି ଦଳରେ ପ୍ରାର୍ଥୀମାନଙ୍କୁ ଇଣ୍ଟରଭିୟୁ କରିବାର କାର୍ଯ୍ୟକ୍ରମ ଥାଏ । କିନ୍ତୁ ସମସ୍ତ ବ୍ୟାଚର ପ୍ରାର୍ଥୀମାନେ ପ୍ରାୟ ଗୋଟିଏ ଲାଇନରେ ରହିଥାଆନ୍ତି । ପୋଲିସ ବ୍ୟବସ୍ଥା କଡ଼ାକଡ଼ି । ସେମାନେ କଲଲେଟରରୁ ନିର୍ଦ୍ଧାରିତ ସମୟ ଦେଖି ପ୍ରାର୍ଥୀମାନଙ୍କୁ ଛାଡୁଥାନ୍ତି । ଆମେ ଗେଟ୍ ପାଖରେ ପହଞ୍ଚିଲାବେଳକୁ ୯ଟା ବାଜିବାକୁ ମାତ୍ର ୨/୩ମି. ଅଛି । ପୋଲିସ କଲଲେଟରରୁ ସମୟ ଦେଖି ଆମକୁ ଆଗ ଛାଡ଼ିଦେଲା ।

ଆରମ୍ଭ ହେଲା ପ୍ରବଶେ ପଥରେ ପ୍ରଥମ ଚେକିଂ । ପ୍ରବେଶରୁମ୍‌ର ଆରମ୍ଭରେ ରଖାଯାଇଥିବା ଟ୍ରେରେ ପାଖରେ ଥିବା ରୁମାଲ, ପର୍ସ, ଜୋତା, ଘଣ୍ଟା, ଅଳଙ୍କାର ଆଦିକୁ ରଖିବାକୁ ହୁଏ । ସେସବୁ ନେଇ ଗେଟ୍ ଅତିକ୍ରମ କରିବା ପୂରାମନା । ଦୂତାବାସମଧ୍ୟଙ୍କୁ ମୋବାଇଲ ଆଣିବା ସବୁଠାରୁ ବଡ଼ ଅପରାଧ । ସୁମନ ପୂର୍ବରୁ ସତର୍କ କରିବା ସତ୍ତ୍ୱେ ଶ୍ରୀମତୀ ଭୁଲରେ ତାଙ୍କ ମୋବାଇଲକୁ ସାଥିରେ ଆଣିଥିଲେ । ଚେକିଂ ବେଳେ ତାହା ଜଣାପଡ଼ିବାରୁ ବଡ଼ ଅଡୁଆ ପରିସ୍ଥିତିରେ ପଡ଼ିଲୁ । ଚେକ୍ କରୁଥିବା ଅଫିସର ମୋତେ ନିର୍ଦ୍ଦେଶ ଦେଲେ ଯଥାଶ୍ରୀଘ୍ର ମୋବାଇଲଟି ନେଇ ସାମ୍ନାରେ ଥିବା ବ୍ୟାଙ୍କର ତଳମହଲାରେ ଏଥିପାଇଁ ନିର୍ଦ୍ଦିଷ୍ଟ ସ୍ଥାନରେ ମୋବାଇଲଟି ଜମାଦେଇ ଅସନ୍ତୁ । ମୁଁ ବିବ୍ରତ ହୋଇଯାଇଥିଲି । ବହୁକଷ୍ଟରେ ଯଥାସ୍ଥାନରେ ମୋବାଇଲ ରଖିଫେରିଲି ।

ପୁରୁଷ ଓ ସ୍ତ୍ରୀଙ୍କ ଚେକିଂ ଅଲଗା, ଅଲଗା ଲାଇନରେ ହେଉଥିଲା । ଶ୍ରୀମତୀ ପୂର୍ବ ଲିଖିତ ସମସ୍ତ ବସ୍ତୁ ଟ୍ରେରେ ରଖିଦେଲେ, କେବଳ ହାତଗୁଡ଼ିକୁ ବାଦ୍ ଦେଇ । ଚେକିଂ କରୁଥିବା ମହିଳା ଅଫିସର ନିର୍ଦ୍ଦେଶ ଦେଲେ ହାତରେ ପିନ୍ଧିଥିବା ଚୁଡ଼ି ଓହ୍ଲାଇ ରଖିବାକୁ । ଶ୍ରୀମତୀ ଧର୍ମ ସଙ୍କଟରେ ପଡ଼ିଲେ । ସେ କିଂକର୍ତ୍ତବ୍ୟ ବିମୂଢ଼ା, ନିର୍ବାକ ଓ ସ୍ଥାଣୁ । ମୁଁ ଇଙ୍ଗିତ ଦେବାରୁ ସେ ଗଭୀର ବେଦନା ଓ ଦ୍ୱିଧା ମଧ୍ୟରେ ଅଗତ୍ୟା ତାହା କରିଥିଲେ । କୌଣସି ହିନ୍ଦୁ ପୁରୁଷ ତାହାର ଜୀବଦ୍ଦଶାରେ ପତ୍ନୀର ବିଧବା ବେଶ

ଦେଖିବା ଆଦୌ ସମ୍ଭବ ନୁହେଁ । ମୋତେ ଏ ଦୁର୍ଲଭ ଦୃଶ୍ୟଟି ଦେଖିବାକୁ ମିଳିଲା । ତାହା ନିଶ୍ଚିତ ଭାବେ ଥିଲା ମୋ ଜୀବନରେ ବିରଳ, ବିଚିତ୍ର ଓ ସ୍ମରଣୀୟ ଅନୁଭବ । ଆମେ ଆଗକୁ ଆଗେଇଲୁ । ଆମ ଆଖି ଡ଼ୋଳାର ଫଟୋ ଉଠିବା ଦୁଇହାତର ସମସ୍ତ ଆଙ୍ଗୁଠିର ଟିପଚିହ୍ନ ନେବା, ମନିଡ଼ିପୋଜିଟରସିଦର ଦେଖାଇବା ଓ ରେକର୍ଡ଼ ଚେକିଂ ପରେ ଆମେ ଇଣ୍ଟରଭିୟୁର ଶେଷ ପର୍ଯ୍ୟାୟରେ ପହଞ୍ଚିଲୁ ।

ସୁମନ ପୂର୍ବରୁ ଇଣ୍ଟରନେଟରେ ଭିସା ଆବେଦନ ପତ୍ର ପଠାଇଥିଲା । ଏଥିରେ ଇଣ୍ଟରଭିୟୁର ପ୍ରଶ୍ନୋତ୍ତର ଓଡ଼ିଆରେ ହେବାପାଇଁ ଲେଖିଥିଲା । କାରଣ ଇଂରାଜୀରେ ପ୍ରଶ୍ନୋତ୍ତର ହେବାରେ ଅସୁବିଧା ଅଛି- ଆମେରିକୀୟ ଓ ଭାରତୀୟମାନଙ୍କ ଇଂରାଜୀ ଆସେଣ୍ଟରେ ବହୁ ତଫାତ । ଇଣ୍ଟରଭିୟୁରେ ଭାରତୀୟମାନଙ୍କୁ ହିନ୍ଦୀ ଓ ପ୍ରାଦେଶିକ ଭାଷାରେ ପଚାରିବା ମଧ୍ୟ ପ୍ରଚଳିତ । ହାଇଦ୍ରାବାଦସ୍ଥ ଆମେରିକା ଦୂତାବାସରେ ଭାରତୀୟ ଭାଷା ହିନ୍ଦୀ ସହିତ ଜଣେ ତେଲଗୁ ଓ ଓଡ଼ିଆ ମାଧ୍ୟମର ବ୍ୟବସ୍ଥା ଥିଲା । ତେଲୁଗୁ ଲେକି ଓଡ଼ିଆ ଭାଷାବିତ୍ ଥିଲେ । ସେ ମୋତେ ଦକ୍ଷିଣୀ ଓଡ଼ିଆରେ ପ୍ରଶ୍ନ କଲେ ଓ ମୁଁ ଦେଇଥିବା ଉତ୍ତରକୁ ସେ ସଂକ୍ଷେପରେ ସାକ୍ଷାତକାରୀ ଅଫିସରଙ୍କୁ ବୁଝାଇ ଦେଲେ ଯେ ମୁଁ ଜଣେ ଅବସରପ୍ରାପ୍ତ ଅଧ୍ୟାପକ ଏବଂ ତାଙ୍କ ସ୍ତ୍ରୀଙ୍କ ସହିତ ପୁଅ ବୋହୂ ଓ ଶିଶୁ ନାତିଙ୍କୁ ଦେଖିବାକୁ ଅଳ୍ପ କେଇଦିନ ପାଇଁ ଯୁକ୍ତରାଷ୍ଟ୍ର ଯିବାକୁ ଚାହାନ୍ତି । ୨ମିନିଟ୍ ପରେ ସେ ଭିସା ଅଫିସରଙ୍କ ସ୍ୱୀକୃତି ଜଣାଇଦେଲେ – "ଆପଣ ଦୁହିଁଙ୍କ ଭିସା ମଞ୍ଜୁର ହେଲା । ସପ୍ତାହକ ମଧ୍ୟରେ ଆପଣ ତାହା ପାଇପାରିବେ । ଧନ୍ୟବାଦ ଜଣାଇ ଆମେ ଫେରିଲୁ ।

ଭିସା ଇଣ୍ଟରଭିୟୁ ପରେ ଆମେ ଆଉତିନିଦିନ ହାଇଦ୍ରାବାଦ୍‌ରେ ରହିଲୁ । ଏଠାରେ ଥିବା ପର୍ଯ୍ୟଟକଙ୍କ ପାଇଁ ଆକର୍ଷଣୀୟ ସ୍ଥାନ- ଗୋଲକୁଣ୍ଡା ଦୁର୍ଗ, କୁତବମୀନାର, ନିଜାମ ସାଗର ପ୍ରଭୃତି ବୁଲିବାରେ ସୁଯୋଗ ମିଳିଲା । ଭୁବନେଶ୍ୱରକୁ ପ୍ଲେନ ଟିକେଟ ମିଳିଲାନାହିଁ । ଏଣୁ ଟ୍ରେନ୍ (ବିଶାଖା) ୨୪ତାରିଖ ଅପରାହ୍ଣ୫ଟାରେ ଭୁବନେଶ୍ୱର ଅଭିମୁଖେ ଯାତ୍ରା କଲୁ ।

ଭିସା ମଞ୍ଜୁର ହେବାଦିନ ରାତିରେ ସୁମନ ଫୋନରେ ଆମକୁ ଯୁକ୍ତରାଷ୍ଟ୍ର ଯାଉଥିବା ବିଭିନ୍ନ କମ୍ପାନୀର ପ୍ଲେନ ସମ୍ପର୍କରେ କହିଲା । ଆମେ ମୁମ୍ବାଇରୁ ପ୍ଲେନ ଧରିବା ସ୍ଥିର ହେଲା । କାରଣ ପୁନେ (ପୁଣେ)ରେ ମୋର ସାନ ସମୁଦି ସପରିବାର ରହୁଥିଲେ ଏବଂ ସେ ଆମେ ମୁମ୍ବାଇରୁ ପ୍ଲେନ ଧରିବାକୁ ଅନୁରୋଧ କରିଥିଲେ । ଆମେ ପୁନେ ଯାଇ ସେଠାରୁ ସୁମନର କେତେଜିନିଷ ନେବାର ମଧ୍ୟ ଥିଲା ।

ଆଲୋଚନାପରେ ଲୁଫଥାନ୍‌ସା ବିମାନରେ ମୁମ୍ବାଇରୁ ଆମେରିକା ଯିବାସ୍ଥିର ହେଲା । କାରଣ ସେଇ ବିମାନ ଦିନରେ ୱାସିଂଟନ(ଡ଼ି.ସି)ରେ ଅବତରଣ କରେ । ସେଇ ଏରୋଡ୍ରମସୁମନ ବାସ କରୁଥିବା ରକଭିଲଠାରୁ ମାତ୍ର ୩୦ମାଇଲ । ଆମର କୋଟୋଟି ଜରୁରି କାର୍ଯ୍ୟ ଥିଲା । ତାହା ସମ୍ପନ୍ନ ନକରି ଜୁନ୍ ୧୫ତାରିଖ ପୂର୍ବରୁ ଆମେ ପୁରୀ ଛାଡ଼ିବା ସମ୍ଭବପର ନଥିଲା । ୨୧ଜୁନ୍‌ରେ ଆମେ ମୁମ୍ବାଇରୁ ଯାତ୍ରା କରିବା ସ୍ଥିର ହେଲା । ସ୍ଥିରହେଲା ଆମେ ଡୋମେଷ୍ଟିକ୍(ଇଣ୍ଡଗୋ) ଏଆୟଲାଇନ୍ସରେ

୧୭/୬ରେ ଭୁବନେଶ୍ୱରରୁ ମୁମ୍ବାଇ ଯିବୁ ଏବଂ ୨୧/୬ରେ ଆମେରିକା ଯାତ୍ରା କରିବୁ । ଆବଶ୍ୟକ ଟିକଟ କରାଗଲା । କେତେକ କାରଣରୁ ଆମେ ଆମେରିକାରେ ୩ମାସରୁ ଅଧିକକାଳ ରହିପାରିବୁନାହିଁ ବୋଲି ପୁଅକୁ ଜଣାଇଦେଲୁ । ଏଣୁ ୨୩/୯ରେ ଫେରନ୍ତା ଟିକେଟ ମଧ୍ୟ କରାଗଲା ।

ଆମ ସାଥିରେ ମୁମ୍ବାଇ ପର୍ଯ୍ୟନ୍ତ ନାତି ଶୁଭବ୍ରତ(ସିପୁନ) ଯିବାପାଇଁ ମଧ୍ୟ ଟିକେଟ କରାଗଲା । ଇଣ୍ଡିଆନ ଏୟାରଲାଇନ୍ସରେ(ଡୋମେଷ୍ଟିକ)୬/୭କି.ଗ୍ରା ଲଗେଜ ବ୍ୟତୀତ ଯାତ୍ରୀପିଛା ମାତ୍ର ୨୦କି.ଗ୍ରା ଲଗେଜ ଫ୍ରିରେ ନେବା ବ୍ୟବସ୍ଥା ଅଛି । ତର୍ଦ୍ଧ୍ୱ ଜିନିଷ ପାଇଁ କିଲୋଗ୍ରାମ ପିଛା ୨୦୦ଟଙ୍କା ଅଧିକ ଭଡ଼ାପଡ଼େ । ଆମର ଲଗେଜ ୭୦କି.ଗ୍ରାରୁ କମ୍ ହେବନାହିଁ । ନାତି ସିପୁନ ସାଥିରେ ଥିଲେ ଆମେ ଆବଶ୍ୟକ ଜିନିଷନେଇ ପାରିବୁ ଏବଂ ସେ ବେଲଟରୁ ଲଗେଜ ବାହାର କରିବାରେ ମଧ୍ୟ ସାହାଯ୍ୟକରିପାରିବ । ଏହି ଉଦ୍ଦେଶ୍ୟରେ ସିପୁନ୍‌କୁ ସାଥିରେ ନେବା ସ୍ଥିର ହେଲା । ତାହାର ଗ୍ରୀଷ୍ମଛୁଟି ଚାଲିଥାଏ । ସପ୍ତାହକ ପରେ ସମୁଦି-ସମୁଦୁଣୀ ଭୁବନେଶ୍ୱର ଯିବାର ଥିବାରୁ ସେ ତାଙ୍କ ସାଥିରେ ଓଡ଼ିଶା ଫେରିବ ।

ଆମର ବ୍ୟବହାର୍ଯ୍ୟ, ଲୁଗାପଟା ବ୍ୟତୀତ କି, କି ଜିନିଷ ସାଥିରେ ନେବୁ ସେ ଦିଗରେ ବି ସୁମନ ପରାମର୍ଶ ଦେଲା । ଚିନ୍ତାରେ ପଡ଼ିଲୁ । ପ୍ଲେନରେ ଅର୍ଗାନିକବସ୍ତୁ(କଞ୍ଚା ଫୁଲ, ଫଳ, ପରିବାପତ୍ର ଆଦି) ନେବାମନା । ଶ୍ରୀମତୀ ପୁଅ ବୋହୂଙ୍କ ବାରମ୍ବାର ଫୋନକରିସେମାନଙ୍କ ମନଲାଖି ଜିନିଷ କ'ଣ ନେବୁ ସେ ସମ୍ପର୍କରେ ପଚାରି ଲାଗିଲା । ଅବଶ୍ୟ ପିଲାଙ୍କ ରୁଚି, ଅଭିରୁଚି ବିଷୟରେ ମାଆଠାରୁ କିଏ ଅଧିକ ଜାଣେ ? ଏ ଦିଗରେ ପୁନେ ସହିତ ମଧ୍ୟ ଯୋଗସୂତ୍ର ରଖାଗଲା । ପୁରୀରୁ ପୁଅ-ବୋହୂ ଭଲ ପାଉଥିବା କିଛି ଶୁଖିଲା ମିଠା ଶ୍ରୀକ୍ଷେତ୍ରର ପ୍ରସିଦ୍ଧ ଖଜା ସହିତ ଆମେରିକାରେ ପ୍ରାୟ ଦୁଷ୍ପ୍ରାପ୍ୟ ଯାହାକି ଓଡ଼ିଶାରେ ଅତିସାଧାରଣ ବସ୍ତୁ -ଭଜାମୁଗ ଓ କୋଳଥ ଡ଼ାଲି, ତେନ୍ତୁଳି, ଆମ୍ବୁଲ ପ୍ରଭୃତିନେବା ପାଇଁ ଠିକ୍ କଲୁ । ବିଶେଷତଃ ଶ୍ରୀମତୀଙ୍କ ଚିନ୍ତା ବଢ଼ିଗଲା । କାରଣ ପୁଅଠାରୁ ବୁଝିଲେ ଆମେରିକାରେ ପାନପତ୍ର ଦୁର୍ଲଭ ନହେଲେବି ସହଜଲଭ୍ୟ ନୁହେଁ । ସେ ଆମ ଗାଆଁ ଅଞ୍ଚଳରୁ ବଡ଼ପୁଅ ମାନସ ଦ୍ୱାରା ପାନପତ୍ର ଓ ଗୁଆଘିଅ ମଗାଇଥାଆନ୍ତି । ଆମ ଅଞ୍ଚଳର ପାନ(ନୂଆହାଟ)୨୦,୨୫ଦିନ ପର୍ଯ୍ୟନ୍ତ ସତେଜ ରହିପାରେ । ତରଳ ପଦାର୍ଥ ଘିଅ ନନେବାକୁ ପୁଅ ରୋକ୍‌ଠୋକ୍ ମନାକରିଥିଲା । ପାନ ଯାଇପାରିବନି ଶୁଣି ଶ୍ରୀମତୀଙ୍କ ମନ ମରିଗଲା । ସେ କୌଣସିମତେ ଟ୍ରଲିବ୍ୟାଗ ମଧ୍ୟସ୍ଥ ଲୁଗାଥାକରେ ପାନପତ୍ର ଲୁଚାଇ ନେବାକୁ ଚାହିଁଲେ । ମୁଁ ତାର ଘୋର ବିରୋଧୀ ବୋଲିମୋତେ ନଜଣାଇ ଯୁକ୍ତରାଷ୍ଟ୍ର ପର୍ଯ୍ୟନ୍ତ ନେଇ ତାଙ୍କ ପାରିଲାପଣ ଦେଖାଇଦେଲେ । ଆମର ଯୁକ୍ତରାଷ୍ଟ୍ରରେ ରହଣିକାଳ ମଧ୍ୟରେ ବୋହୂ, ନାତି ଓ ପୁଅଙ୍କ ଜନ୍ମଦିନ ପଡ଼ିବାର ଥିଲା । ପୁଣି ନାତିର ପ୍ରଥମ ଜନ୍ମ ବାର୍ଷିକୀ ସ୍ୱତନ୍ତ୍ର ଭାବେ ପାଳିତ ହେବ ଏବଂ ଏଥିରେ ଯୋଗଦେବା ଥିଲା । ଆମର ବିଶେଷ ଅଭିଳାଷ । ଏଥିପାଇଁ ଆମେ ସାଥିରେ କିଛି ସ୍ନେହମଖା ଉପହାର ନେଲୁ ।

୨୧ଜୁନ୍‌ରେ ଆମେ ଧରିବା ପ୍ଲେନର ସମୟ ଥିଲା । ପୂର୍ବାହ୍ନ ୨ଘଣ୍ଟା ୫୦ମି.

ପ୍ଲେନ ଚାଢ଼ିବାର ୩ଘଣ୍ଟା ପୂର୍ବରୁ ଯାତ୍ରୀମାନଙ୍କୁ ବିମାନବନ୍ଦରରେ ପ୍ରବେଶ କରିବାକୁ ହୁଏ। କାରଣ ଯାତ୍ରୀମାନଙ୍କ ଲଗେଜର ଓଜନ, ସିଟିଂ ଟିକେଟ ଇସୁ, ବ୍ୟକ୍ତିଗତ ସିକ୍ୟୁରିଟି ଚେକିଂ ଆଦି ନାନା ବ୍ୟବସ୍ଥା ଅଛି। ସୁବିଧା ପାଇଁ ୧୬ଜୁନ୍‌ରେ ପୁରୀ ଛାଡ଼ି କଟକଯାଇ ସାନଝିଅ ବସାରେ ରହିଲୁ। ୧୭ତାରିଖରେ ଆମେ କଟକରୁ ଭୁବନେଶ୍ୱର ବିମାନବନ୍ଦର ଯାତ୍ରାକଲୁ। ଆମକୁ ବାଟୋଇ ଦେବାପାଇଁ ଝିଅଜ୍ୱାଇଁ ଏରୋଡ୍ରାମ ପର୍ଯ୍ୟନ୍ତ ଯାଇଥିଲେ। ସେମାନେ ପର୍‌ସନାଲ୍ ଚେକିଂ ପର୍ଯ୍ୟନ୍ତ ସମସ୍ତ ବ୍ୟବସ୍ଥା କରାଇଦେଲେ। ଆମକୁ ବିଦାୟ ଜଣାଇବାକୁ ମୋର ଭାତୃଷ୍ପୁତ୍ର ଭବାନୀ, ଦେବାଶିଷ ଓ ପରାଗ ଆସିଥିଲେ। ସମସ୍ତଙ୍କୁ ସସ୍ନେହ ବିଦାୟ ଜଣାଇ ୱେଟିଙ୍ଗ ହଲରେ ପ୍ରବେଶ କଲୁ।

ପ୍ଲେନ ଛାଡ଼ିଲା ପୂର୍ବବର୍ଣ୍ଣିତ ରୀତିରେ। କିନ୍ତୁ ଆକାଶ ମାର୍ଗ ଦୃଶ୍ୟ ଥିଲା ନିଆରା। ଯାତ୍ରା ଆରମ୍ଭରେ ଖରା ଓ ମେଘଢ଼ଙ୍କା ଆକାଶରେ ପ୍ରକୃତି ଅନିର୍ବଚନୀୟ କୁହୁକପୁରୀରେ ମାୟାସୃଷ୍ଟି କରିଥିଲା। ବିଚିତ୍ର ଏପ୍ରକୃତିର ରୂପବିଭା। ସେ ଚଇଳା, ଛଟକୀ ଓ ବହୁରୂପିଣୀ, ସୂର୍ଯ୍ୟଚନ୍ଦ୍ରଙ୍କ ଉଦୟ ଅସ୍ତ, ତାରକାଙ୍କିତ ବା ସୂର୍ଯ୍ୟଚନ୍ଦ୍ରାଲୋକ ଉଦ୍ଭାସିତ ଆକାଶରେ ବର୍ଣ୍ଣବିଭା ସତ ଓ ଭିନ୍ନ ଭିନ୍ନ। ମେଘ ଓ ବାଦଲର ଲୀଳାଖେଳାର ଚିତ୍ର ମଧ୍ୟ ମନୋଜ୍ଞ ଓ ମହାର୍ହ। ବିମାନ ଉଡ଼ି ଚାଲିଲା। ମନେହେଲା କଳା, ଧଳା, ଇଷତ, ବାଦାମୀ ଓ ବାଇଗଣି ବଉଦ ରାଇଜରେ ପ୍ଲେନ ଆଗେଇ ଚାଲିଛି। କିନ୍ତୁ ୨୦,୩୦ମି.ପରେ ଏ ଦୃଶ୍ୟ ଉଭେଇ ଗଲା। ନିର୍ଦ୍ଦିଷ୍ଟ ସମୟ ୩ଘ.୩୦ମି.ରେ (ଅପରାହ୍ନ) ଆମ ବିମାନଟି ମୁମ୍ବାଇ ଡୋମେଷ୍ଟିକ ବିମାନବନ୍ଦର ଆକାଶରେ ପହଞ୍ଚିଲା। ସେତେବେଳେ ସେଠାରେ କଳାହାଣ୍ଡିଆ ବାଦଲର ରାଜୁତି। ଯେତେବେଳେ ବିମାନ ଗଲା ସେତେବେଳକୁ ଝିପିଝିପି ବର୍ଷା ଆରମ୍ଭ ହୋଇଯାଇଥିଲା। ମେଘ ମହ୍ଲାରକୁ ଉପଭୋଗ କରିବାପାଇଁ ଅବକାଶ ନଥିଲା। ଓହ୍ଲାଇବାପରେ ବେଲଟରୁ ବ୍ୟାଗେଜ କିପରି କାଢ଼ି ବାହାରକୁ ଯିବୁ ସେଥିପାଇଁ ବ୍ୟଗ୍ର ହୋଇଉଠିଥିଲୁ। ଶୁଭ ବେଲଟରୁ ବ୍ୟାଗେଜ କାଢ଼ି ଲାଗିଥାଏ। ବିମାନ ଯାତ୍ରାବେଳ ଅଚଳ ହୋଇ ରହିଥିବା ମୋବାଇଲ୍ ବାଜି ଉଠିଲା। ବୁଦୁଲି(ସିଦ୍ଧାର୍ଥ-ବୋହୂର ସାନଭାଇ) ଜଣାଇଦେଲେ। ସେ କାରଧରି ଗେଟରେ ଅପେକ୍ଷା କରିଛି। ଆମେ ଟ୍ରଲି ଦୁଇଟିରେ ଲଗେଜ ନେଇ ଗେଟରେ ପହଞ୍ଚିଲୁ। ସେତେବେଳକୁ ପ୍ରବଳବର୍ଷା ଲାଗିରହିଥାଏ। ୫ମିନିଟ୍‌ପରେ ବର୍ଷାବେଗ ଟିକିଏ କମିବାରୁ ଆମେ ପୁନେ ଅଭିମୁଖେ ଯାତ୍ରା କଲୁ। ସିଦ୍ଧାର୍ଥ ସହିତ ଥାଏ ତାର ଯୁବ ଇଞ୍ଜିନିୟର ବନ୍ଧୁ ରାଜେଶ(ଦାସ) କିନ୍ତୁ ବର୍ଷା କମିଲାନି। ସେଇ ବର୍ଷାରେ ମୁଖର ଆସନ୍ନ ସନ୍ଧ୍ୟାରେ ସିଦ୍ଧାର୍ଥ ଧୈର୍ଯ୍ୟ ଓ ସତର୍କତା ସହକାରେ ଗାଡ଼ି ଚଳାଉଥାଏ। ମୁମ୍ବାଇ ବିମାନ ବନ୍ଦରରୁ ପୁନେ ୧୬୦କି.ମି ପ୍ରତିକୂଳ ପରିବେଶରେ ପ୍ରାୟ ୬ଘଣ୍ଟାପରେ ଆମେ ସମୁଦି ବ୍ୟାଙ୍କ ଅଫିସର ସୁନିଲ କୁମାର ମହାନ୍ତିଙ୍କ ବାସଭବନରେ ପହଞ୍ଚିଲୁ। ସମୁଦୁଣୀ ଶକୁନ୍ତଳା ଦେବୀଙ୍କ ଭବ୍ୟ ଅତିଥ୍ୟ ମଧ୍ୟରେ ଆମର ୩ଦିନ କଟିଲା।

୨୧ଜୁନ୍ ପୂର୍ବାହ୍ନ ୨ଘଣ୍ଟା୫୦ମିନିଟରେ ଲୁଫଥାନସାରେ ଆମେ ମୁମ୍ବାଇ ଛାଡ଼ିବାର ଥାଏ। ବିମାନ ବନ୍ଦରରେ ଆମକୁ ୩ଘଣ୍ଟା ପୂର୍ବରୁ ପହଞ୍ଚିବବା ଆବଶ୍ୟକ। ସମୁଦି ଓ ସମୁଦୁଣୀ ପ୍ୟାକିଂରେ ଓସ୍ତାଦ୍। ସମୁଦିଙ୍କ ଏକ ଓଜନ ସ୍କେଲ ଥିଲା। ୨ଟି

ବଡ଼ ଟ୍ରଲି ବ୍ୟାଗରେ ୯୦କି.ଗ୍ରା ଲଗେଜ ରଖାଗଲା । ଆମ ପାଖରେ ଦୁଇଟି ହାତବ୍ୟାଗ ରହିବାସ୍ଥିର ହେଲା । ଆନ୍ତର୍ଜାତିକ ବିମାନଯାତ୍ରାରେ ପ୍ରତି ପାସେଞ୍ଜର ପିଛା ୪୬କି.ଗ୍ରା ଲଗେଜ ଫ୍ରି । ପୁଣି ପାଖରେ ଥିବା ୭.କି.ଗ୍ରା ପର୍ଯ୍ୟନ୍ତ ଜିନିଷପାଇଁ ଭଡ଼ାଦେବାକୁ ପଡ଼ିନଥାଏ । ଲଗେଜ ସବୁ କାରରେ ଲଦାଗଲା । ଆମକୁ ବିମାନ ବନ୍ଦରରେ ବିଦାୟ ଦେବାକୁ ସମୁଦି ସମୁଦୁଣୀ ସାଥିରେ ଗଲେ ।

ଆନ୍ତର୍ଜାତିକ ବିମାନ ବନ୍ଦରରୁ ବିଦେଶ ଯାତ୍ରା କରିବାରେ ଏହା ଥିଲା ପ୍ରଥମ ଅନୁଭୂତି । ମନେରେ ଅଜଣାଭୟ! ବ୍ୟାଗେଜ ଟେକି ଓଜନ କରାଇବାଓ ଚେକିଂ ପାଇଁ ଆକର ଶାରୀରିକ ଶକ୍ତିନାହିଁ । ସୁମନ ଏ ସମ୍ପର୍କରେ ସଚେତନ ଥିଲା । ବୟସ୍କ ରୋଗୀ ଓ ଅକର୍ମଣ୍ୟ ଯାତ୍ରୀମାନଙ୍କ ପାଇଁହୁଇଲଚେୟାର ଟିକେଟ କଲାବେଳେ ଫର୍ମରେ ହୁଇଲ ଚେୟାର ଆବଶ୍ୟକତା ଜଣାଇ ଦେଇଥିବାରୁ ଅମାପରିଚୟ ପତ୍ରରେ ତାହା ଉଲ୍ଲେଖ ଥିଲା । ଆମେ ଗେଟ୍‌ରେ ପହଞ୍ଚି ହୁଇଚେୟାର ପାଇଁ ଜଣାଇଦେଲୁ । ଦୁଇଜଣ ହୁଇଲଚେୟାର ଚାଳକ ଆମକୁ ଆବଶ୍ୟକ ସାହଯ୍ୟ କରି ୱେଟିଙ୍ଗହଲରେ ପହଞ୍ଚାଇଦେଲେ । ଯିବାବେଳେ ପ୍ରତିଶ୍ରୁତି ଦେଲେ ଯେ ବିମାନ ଛାଡ଼ିବା ସମୟ ହେଲେ ଆସି ବିମାନରେ ବସାଇଦେବେ । ଆମ ଯାତ୍ରାର ପ୍ରତିସ୍ତରରେ ହୁଇଲଚେୟାର ସୁବିଧା ମିଳିବା ଫଳରେ ଲଗେଜ ଓ ସିକ୍ୟୁରିଟ ଆଦି ଚେକିଂବେଳେ କିଛି ଅସୁବିଧା ହୋଇନଥିଲ ।।

ଆମ ବିମାନଟି ଠିକ୍ ସମୟରେ ଅର୍ଥାତ୍ ପ୍ରାତଃ ୨.୫୦ମିଟରେ ମୁମ୍ବାଇ ପରିତ୍ୟାଗ କରି ୮ଘ.୧୩ମି. ଯାତ୍ରାପରେ ଜର୍ମାନୀର ବିଖ୍ୟାତ ଫ୍ରାକଫଟ ବିମାନ ଜଙ୍କସନରେ ଅବତରଣ କଲା । ସେତେବେଳେ ସେଠାକାର ସମୟ(ସ୍ଥାନୀୟ ସମୟ)ଥିଲା ପୂର୍ବାହ୍ନ ୭ଘଣ୍ଟା ୩୦ମି. । ସରଳଗାଣିତିକ ହିସାବରେ ୧୦ଘଣ୍ଟା୩୦ମି. ହେବା କଥା ଆମେ ପୂର୍ବ ଦ୍ରାଘିମା୭୦°ରୁ(ମୁମ୍ବାଇ)ଯାତ୍ରା ଆରମ୍ଭ କରି ପଶ୍ଚିମ ଦ୍ରାଘିମା୯°(ଫ୍ରାଙ୍କଫର୍ଟ) ପହଞ୍ଚବଲୁ । ପଶ୍ଚମକୁ ଯାତ୍ରା କଲେ ପ୍ରତି ଡ଼ିଗ୍ରୀ ଦ୍ରାଘିମାନ୍ତରରେ ସମୟ ପ୍ରାୟ୪ମିନିଟ୍ ଓହ୍ଲାଇବା ସ୍ଥାନରେ ହାତ ଘଣ୍ଟାର ସମୟ ବଦଳାଇବାକୁ ହୋଇଥାଏ ।

ଫ୍ରାଙ୍କଫର୍ଟରେ ପୁଣି ଚେକିଂର ସମ୍ମୁଖୀନ ହେଲୁ । ଦୀର୍ଘ ସାଢ଼େ ପାଞ୍ଚଘଣ୍ଟା ଅପେକ୍ଷାପରେ ୱାଶିଂଟନ ଅଭିମୁଖୀ ଅନ୍ୟଏକ ବିମାନ ଧରିଲୁ । ଅପରାହ୍ନ ୧ଘଣ୍ଟାରେ । ଅପେକ୍ଷା ସମୟ ଅବଶ୍ୟକିଛିମାତ୍ରାରେ ବିରକ୍ତିକର ଥିଲା । କିନ୍ତୁ ଉପରତାଲାର ୱେଟିଙ୍ଗ ହଲରେ ବସି ବିମାନ ବନ୍ଦର ଚାରିଦିଗକୁ ଦେଖି ଅବାକ୍ ହୋଇଗଲୁ । ଭାରତର କୌଣସି ବଡ଼ ବସଷ୍ଟାଣ୍ଡ ବା ରେଳ ଜଙ୍କସନରେ ଥିବା ଅସଂଖ୍ୟ ବସ୍ ବା ଟ୍ରେନ୍‌ଗୁଡ଼ିକୁ ଦେଖି ଯେପରି ବିସ୍ମିତ ହେବାକୁ ପଡ଼େ, ସେହିପରି ଜର୍ମାନୀରେ ଅବସ୍ଥିତ ଏହି ବିମାନ ଜଙ୍କସନର ସ୍ଥିତି । ପ୍ରାୟପ୍ରତି ୫ମିନିଟ୍‌ରେ କୌଣସି ବିମାନର ଉଡ଼ାଣ ଆରମ୍ଭ ହେଉଥିଲା । କମ୍ପାନୀର ଭେଇକେଇଗୁଡ଼ିକ ଆଣୁଥିବା ଲଗେଜ ବା କାରୋଗୋ । ଲିଫ୍ଟ ସାହାର୍ଯ୍ୟରେ ଉଡାଣ ପାଇଁ ପ୍ରସ୍ତୁତ ବିମାନରେ ଲଦେଇ ଅବତରଣ କରିଥିବା ବିମାନରୁ ଲଗେଜ କଲାସ କରାଯାଉଥିଲା । ୱେଟିଙ୍ଗ ହଲରେ କେତେକ ଯାତ୍ରୀ ସମୟ

କଟାଇବା ପବାଇଁ ମାଗାଜିନ ବା ପୁସ୍ତକପାଠରେ ମଜ୍ଜି ରହିଥିଲେ । କିନ୍ତୁ ଆମର ଚିନ୍ତା କେତେବେଳେ ବିମାନଧରି ୱାଶିଂଟନ ଯାତ୍ରା କରିବୁ ।

ସକାଳେ ବିମାନ ଅବତରଣ ପୂର୍ବରୁ ଆମକୁ ଗୁରୁପ୍ରାତଃ ଭୋଜନ ଦିଆଯାଇଥିଲା । ଏହି ବ୍ରେକ୍‌ଫାଷ୍ଟର ସିଂହଭାଗ ଥିଲା, ଭୂମଧ୍ୟ ସାଗରୀୟଫଳ ତିଆରି ଖାଦ୍ୟ । ପ୍ରତୀକ୍ଷାକାଳ ମଧ୍ୟରେ ଆଉ କିଛି ଖାଇବାର ଆବଶ୍ୟକତା ନଥିଲା । ମନର ଉଦବେଗର ପ୍ରାବଲ୍ୟବେଳେ ବି ଭୋକ ମରିଯାଇଥାଏ । ଅବଶ୍ୟ ୱେଟିଂ ହଲରେ ଚା, କଫି, ଆଇସିକ୍ରିମ, ଚକୋଲେଟ, ଟିପଫିନ୍ ଆଦି ଡ଼ଲାର ମୂଲ୍ୟରେ କିଣିବା ବ୍ୟବସ୍ଥା ଥିଲା ।  ଦୀର୍ଘ ପ୍ରତୀକ୍ଷାର ଅନ୍ତହେଲା । ଆମେ ବସିଲୁ ବିମାନରେ ନିରୂପିତ ସମୟରେ ବିମାନ ଆକାଶମାର୍ଗରେ ଚାଲିଲା । ଫ୍ରାକଫର୍ଟ ଛାଡ଼ିବା ପରେ ଲଞ୍ଚ ଦିଆଗଲା । ଯାତ୍ରା ସମୟରେ ଯାତ୍ରୀମାନଙ୍କୁ ପର୍ଯ୍ୟାପ୍ତ ପରିମାଣରେ ଚା, କଫି, ଜଳଖିଆ, ପରଷିବାରେ କମ୍ପାନୀର ଆଦୌ କାର୍ପଣ୍ୟ ନଥିଲା । ପାଶ୍ଚାତ୍ୟବାସୀ ବ୍ୟବସାୟୀ ଜାତି । ବିମାନଯାତ୍ରା ମଧ୍ୟରେ ବ୍ୟସାୟୀ ବୁଦ୍ଧି ମଧ୍ୟ ଖଟେଇ ଥାନ୍ତି । ବିମାନର ପରିଚାରକ ଏବଂ ପରିଚାରିକାମାନେ ବିଭିନ୍ନ ମଦ୍ୟ କମ୍ପାନୀର ମଦ୍ୟ ଚାଖିବାକୁ ଦିଅନ୍ତୁ ।  ଟେଷ୍ଟପରେ କେତେକ ଯାତ୍ରୀ ସେମାନଙ୍କୁ ରୁଚି ଅନୁଯାୟୀ ମଦ୍ୟ କିଣିଥାନ୍ତି ।

ବିମାନରେ ପରଷାଯାଉଥିବା ଆମିଷ ଖାଦ୍ୟ ପ୍ରତି ଆମର ସନ୍ଦେହ ଓ ଘୃଣା ଥିଲା । ନିରାମିଷ ଖାଦ୍ୟ ଆମର ପସନ୍ଦ ବୋଲି ଚାର୍ଟରେ ଉଲ୍ଲେଖ କରାଯାଇଥିଲା । କମ୍ପାନୀ ଯାତ୍ରୀମାନଙ୍କ ଖାଦ୍ୟରୁଚି ପ୍ରତି ସଚେତନ ଥିଲେ । ବିମାନ ଯାତ୍ରାମଧ୍ୟରେ ପ୍ରଥମେ ନିରାମିଷ ଖାଦ୍ୟ ପରଷାଯାଇ ପରେ ଆମିଷ୍ୟଖାଦ୍ୟ ପରିବେଷଣ କରାଯାଉଥିଲା ।

ଫ୍ରାଙ୍କପର୍ଟରୁ ୱାଶିଟନ୍ ଥିଲା ଦିନରେ ଦିନରେ ଯାତ୍ରା । ଯାତ୍ରାର ଅବଧ ଥିଲା ୮ଘଣ୍ଟାରୁ ଉର୍ଦ୍ଧ୍ୱ । ଆମେ ଦିନ ଗୋଟାଏବେଳେ ଫ୍ରାଙ୍କଫର୍ଟରୁ(୯ପଶ୍ଚିମ ଅାକ୍ଷାଂଶ) ଯାତ୍ରାକରି ଗନ୍ତବ୍ୟସ୍ଥଳ ଡ଼ି.ସି.ରେ ୱାଶିଟନ୍(୭୭° ପଶ୍ଚିମ ଦ୍ରାଘିମା) ପହଞ୍ଚିଲୁ । କିନ୍ତୁ ଯେତେବେଳର ସ୍ଥାନୀୟ ସମୟ ହୋଇଥିଲା ୩ଘଣ୍ଟା୩୦ମିନିଟ୍ (ଅପରାହ୍ନ) ତାହା ମଧ୍ୟଥିଲା ପଶ୍ଚିମରୁ ପଶ୍ଚିମାଯାତ୍ରା ଜନିତ ଦ୍ରାଘିମାନ୍ତରର ଫଳ । ଆମର ବିମାନ ମୁଖ୍ୟତଃ ଆଟଲାଣ୍ଟିକା ମହାସାଗର ଉପରେ ଯାତ୍ରା କରିଥିଲା । ବିମାନ ଝରକାରୁ ଉପର ଆକାଶ ଓ ତଳ ସାଗର ଉଭୟ ବଡ଼ବଡ଼ ତୁଳଗଦାପରି ପତେୟ ହେଉଥିଲା । କିନ୍ତୁ ମୋର ଉଦ୍‌ବିଗ୍ନ ଚଞ୍ଚଳ ମନ ସେ ଦିଗରେ ଆକର୍ଷିତେ ହୋଇନଥିଲା ।

ଆମକୁ ଯୋଗାଇ ଦିଆଯାଇଥିବା ହୁଇଲଚେୟାର ଦୁଇଟିର ଚାଳକ ଓ ଚାଳିକା ଥିଲେ ଇଥିଓ ପିଆନ- ଆମେରିକାନ । ବହୁ ଇଥିଓପିଆନ ସେ ଦେଶର ଗୃହଯୁଦ୍ଧବେଳେ ନିଜ ଦେଶକୁ ଛାଡ଼ି ଆମେରିକାକୁ ଶରଣାର୍ଥୀ ରୂପେ ଆସିଥିଲେ । ସେମାନେ ଏବେ ଆମେରିକାର ନାଗରିକ । ଚାଳକ ଓ ଚାଳିକା ଆମର ଲଗେଜକୁ ବେଲଟରୁ ବାହାର କରିବାପରେ ପ୍ରଥମେ ଆମକୁ ଓ ଆମର ବ୍ୟାଗେଜକୁ ଇମିଗ୍ରେସନ୍ ଚେକ୍ ପାଇଁ ନେଲେ ଏବଂ ପରେ କଷ୍ଟମସ୍ ଚେକ୍‌ର ସମ୍ମୁଖୀନ କରାଇଲେ । କଷ୍ଟମସ୍ ଅଫିସର ପ୍ରଥମେ ମୋତେ ୟୁ.ଏସ୍. ଆସିବାର ଲକ୍ଷ୍ୟ ସମ୍ପର୍କରେ ପଚାରିଲେ । କିନ୍ତୁ

ମୋର ଉତ୍ତର ସରିବା ପୂର୍ବରୁ ଆମେ ନେଇଥିବା ଜିନିଷ ସମ୍ପର୍କରେ ପ୍ରଶ୍ନ କଲେ- "ଆପଣତ ଇଣ୍ଡିଆରୁ ଆସିଛନ୍ତି, ନିଶ୍ଚୟ ପିଲାମାନଙ୍କ ପାଇଁ କିଛି ମିଠା ଆମ୍ବ ଆଣିଥିବେ" "ନା, ଆମେ ଲୁଗାପଟା ଓ କିଛି ମିଠା କେବଳ ପିଲାମାନଙ୍କ ପାଇଁ ଆଣିଛୁ" ସେ ମୋ ମୁହଁକୁ କେଇ ମୁହୂର୍ତ୍ତ ଚାହିଁ କହିଲେ, "ଏଥର ଆପଣ ଯାଇପାରନ୍ତି ।" ଆମେ ପ୍ରକୃତରେ ଯଦି କିଛି ଆମ୍ବ ନେଇଥାନ୍ତୁ ବା କିଛି ଆମ୍ବ ଆଣିଛି ବୋଲି କହିଥାନ୍ତି, ତେବେ ପରିସ୍ଥିତି ଅତ୍ୟନ୍ତ ଭୟାନକ ହୋଇଥାନ୍ତା । ଫଳ ପନିପରିବା ପ୍ରଭୃତି ଜୈବିକବସ୍ତୁ ବିମାନରେ ଆମେରିକା ଆଣିବା ନିଷେଧ ଏବଂ ସେ ଦିଗରେ ସଜାଗରହି ଆମେ ଭଲରେ ଭଲରେ କଷ୍ଟମସ ଚେକ୍‌ରୁ ମୁକୁଳିଲୁ ।

ହୁଇଲଚେୟାରର ଚାଳକ ଓ ଚାଳିକା ଲଗେଜ ସହିତ ଆମକୁ ନେଇ ଗେଟରେ ପହଞ୍ଚାଇଲେ । ଗେଟର ବାରିକେଡ୍ ଧାରରେ ସମବେତ ଲୋକମାନେ ପ୍ଲେନରୁ ଓହ୍ଲାଇଥିବା ବନ୍ଧୁ ଓ ଆତ୍ମୀୟ ସ୍ୱଜନମାନଙ୍କୁ ହାର୍ଦ୍ଦିକ ସ୍ୱାଗତ ଜଣାଇ ଅଭ୍ୟର୍ଥନା କରୁଥାନ୍ତି । ଆମ ହୁଇଲଚେୟାର ଗେଟ ମୁହଁରେ ପହଞ୍ଚିଲାଣି ଅଥଚ ପୁଅ ବା ବୋହୂ କାହାର ଦେଖାଦର୍ଶନ ନାହିଁ । କେତେ କ'ଣ ଚିନ୍ତାକରି ମୋ ମନ ବଡ଼ ବ୍ୟାକୁଳ ହେଉଥାଏ । ଶ୍ରୀମତୀଙ୍କ ମୁହଁ ଅଜଣା ଭୟରେ କଳାକାଠ ପଡ଼ିଯାଇଥାଏ । ସେ ଳୁଳୁଳୁଳୁ କରି ମୋ ମୁହଁକୁ ଚାହିଁଥାନ୍ତି । ଏହି ସମୟରେ ଚାଳକ ମୋତେ କହିଲେ, "ଆପଣ ଏଠି କାହାପାଖକୁ ଆସିଛନ୍ତି ? ମୁଁ କହିଲି "ଏଠି ମୋ ପୁଅ ସପରିବାର ରହୁଛନ୍ତି, ସେମାନଙ୍କ ପାଖକୁ ଆସିଛୁ ।" ପରେ ସେ କହିଲେ; "ଆପଣଙ୍କ ମୋବାଇଲ ତ ଏଠି ଅଚଳ । ଆପଣ ପୁଅର ମୋବାଇଲ ନମ୍ବର ଦିଅନ୍ତୁ । ମୁଁ ଫୋନ୍‌କରି ଦେଖେ ।" ସେ ନମ୍ବର ନେଇ ଫୋନ୍ କରିସାରି କହିଲେ, "ବ୍ୟସ୍ତ ହୁଅନ୍ତିନି, ଆପଣଙ୍କ ପୁଅ-ବୋହୂ ଟ୍ରାଫିକ୍ ଜାମରେ ଅଟକି ଯାଇଥିଲେ, ଏବେ ଆସି ପହଞ୍ଚିଯିବେ ।" ଆମେ ପିଣ୍ଡରେ ପ୍ରାଣ ପଶିଲା ।

ପ୍ରାୟ ଦୁଇମିନିଟ୍ ପରେ ସୁମନ ଓ ସ୍ମୃତି ପହଞ୍ଚି ପ୍ରଣାମ ଜଣାଇ ହୁଇଲଚେୟାରରୁ ବ୍ୟାଗେଜ କାଢ଼ିବାରେ ଲାଗିଲେ । ସେମାନଙ୍କ ମଳିନ ମୁହଁରୁ ଅନୁତାପ ଓ ଅନୁଶୋଚନାର ଛାପ ବାରିହୋଇ ପଡୁଥିଲା । ମୁଁ ବ୍ୟଗ୍ର ହୋଇ ପଚାରିଲି, "ଆରେ, ଆମ ସମ୍ରାଟ କାହାନ୍ତି ?" ସ୍ମୃତି କାର ଭିତରସିଟକୁ ଦେଖାଇଦେଲା । ଇତି ମଧ୍ୟରେ ସୁମନ ହୁଇଲ-ଚାଳିକାଙ୍କୁ ଧନ୍ୟବାଦ ଜଣାଇ ସେମାନଙ୍କୁ ୧୦ଡଲାର ଲେଖାଏଁ ପାରିତୋଷିକ ଦେଇ ବିଦାକଲା । ସେମାନେ 'ନମସ୍ତେ' କହି ବିଦାୟ ନେଲେ(ଆମେରିକା ରହଣି କାଳ ମଧ୍ୟରେ ମୁଁ ଲକ୍ଷ୍ୟ କରିଛି, ଇଥିଓ ପିଆନ-ଆମେରିକାୟମାନେ ଭାରତୀୟମାନଙ୍କୁ ଖୁବ୍ ଶ୍ରଦ୍ଧା କରିଥାନ୍ତି ।ସେମାନେ ଭାରତୀୟମାନଙ୍କୁ 'ନମସ୍ତେ' କହି ସମ୍ଭାଷଣ କରିଥାନ୍ତି) ।

କାର ଡିକିରେ ସୁମନ-ସ୍ମୃତି ଜିନିଷ ରଖିବାରେ ଲାଗିଥାନ୍ତି । ଆମେ ବ୍ୟଗ୍ର-ବିକଳ ହୋଇ କାରଭିତରେ ପଶିଗଲୁ । ଦେଖିଲି ଆମ ସମ୍ରାଟ(ନାତିର ନାମ ଐର ଖାରବେଳ) କାରର ବେବିସିଟରେ ବନ୍ଧନାବନ୍ଧ । ଶ୍ରୀମତୀ ତାଙ୍କ ସ୍ନେହ ଝୋଲାରୁ ମୋରାଜା, ମୋକାହ୍ନୁ, ମୋ କହ୍ନେଇ, ରଙ୍କରତନ, ରଙ୍କୁଣୀଧନ ଆଦି ଆବେଗକମ୍ପିତ

ସ୍ନେହଧନ, ଝାଡ଼ିଲାଗିଛନ୍ତି । 'ଐରା' ମୁହଁକୁ ଥରେ ଚାହିଁଦେଇ ଜେଜିମାନଙ୍କ ଡାହାଣ ହାତ ବିଶିଆଙ୍ଗୁଠିକୁ ମୁଠେଇଧରି ହସହସ ମୁହଁରେ ଚାହିଁରହିଲା । ପରକ୍ଷଣରେ ଆରହାତରେ ଧରିଲା ତାଙ୍କର ରଙ୍ଗୀନ ପଣତକାନି । ମୁଁ ଅସହିଷ୍ଣୁ ହୋଇ କହିଚାଲିଥାଏ । ମୋବାବୁ, ମୋ ସ୍ୱମାଟ ଆଦି । ସେ ପାଖୁଡ଼ାଏ ସ୍ମିତ ହାସରେ ମୋତେ ସମ୍ଭାଷଣ କରି ଜେଜିମା ଉପରେ ପୁଣି ଦୃଷ୍ଟି ନିବଦ୍ଧ କଲା । ପ୍ରଥମ ଦେଖାରେଆମେ କୃତାର୍ଥ ହୋଇଗଲୁ ।

ବ୍ୟଗେଜ ସବୁ ଲଦାହେବାପରେ ଆମ କାର ରକଭିଲର କଙ୍ଗ୍ରେସନାଲ ଟାୱାର ଅଭିମୁଖେ ଛୁଟିଲା । ଫୁଟପାଥ୍ ପ୍ରାୟଜନ ଶୂନ୍ୟ । କିନ୍ତୁ ସୁପ୍ରଶସ୍ତ ରାଜପଥରେ ଛୁଟୁଥିବା ଅଗଣିତ କାରଧାର ଆମକୁ ଚକିତ କରିଦେଇଥିଲା ।



# ଚାକିରି ଅନ୍ବେଷଣରେ ମାଲକାନଗିରି ଯାତ୍ରା

ଗୋବିନ୍ଦ ଚନ୍ଦ୍ର ମହାନ୍ତି

୧୯୫୮ ମସିହା ଜାନୁଆରି ମାସକୁ ଆମ ପରିବାରର ଅଭାବ ଅନଟନ ଚରମ ସୀମାରେ ପହଞ୍ଚିଯାଇଥାଏ । ୧୯୫୫ରେ ବଢ଼ିଜଳଘାଇ ଭାଙ୍ଗି ବହୁପରିମାଣରେ ଫସଲ ହାନି ଘଟିଥିଲା । ୧୯୫୬ରେ ଫସଲ କିଞ୍ଚିତ ପରିମାଣରେ ହୋଇଥିଲା କିନ୍ତୁ ୧୯୫୭ ମସିହାରେ ଅନାବୃଷ୍ଟି ହେତୁ ଜମିକୁ ଦାଆ ଯାଇନଥିଲା । ଆମ ଅଞ୍ଚଳର ଚାଷୀମାନଙ୍କୁ ଯାହା କିଛି ମିଳିଥିଲା ସେଥିରୁ ସେମାନେ ଦୁଇମାସ ଚଳିଲେ । ୧୯୫୮ ଜାନୁଆରୀ ବେଳକୁ ଧାନଚାଉଳର ଅଭାବ ଉତ୍କଟ ହେଲା । ଲୋକେ ଜାଉ-ପେଜ ଖାଇ ବଞ୍ଚିଲେ । ମାଲିମୋକଦ୍ଦମା ଖର୍ଚ୍ଚ ପାଇଁ ଆମର ଗଚ୍ଛିତ ଧାନ ଚାଉଳ ବିକ୍ରି ହୋଇ ଯାଇଥିଲା । ପୁଣି ମୋକଦ୍ଦମା ଖର୍ଚ୍ଚ ପାଇଁ ଟଙ୍କା ଦରକାର । ଟଙ୍କା ବା ଆସିବ କୁଆଡ଼ୁ ? ଶସ୍ତାରେ ଜମିବନ୍ଧକ ଦେବାକୁ ଏବଂ ଜମି ବିକିବାକୁ ବାପା ବାଧ୍ୟ ହେଲେ ।

ମାଲିମୋକଦ୍ଦମା ମଧ୍ୟରେ ସେ ଆମ ପାଠ ପ୍ରତି ନିସ୍ପୃହ ହୋଇଯାଇଥିଲେ । ଭାଇଙ୍କର ଏକାଦଶ ଶ୍ରେଣୀରୁ ମୋର ସପ୍ତମ ଶ୍ରେଣୀରୁ ପୋଥିରେ ଡୋରିବନ୍ଧା ହୋଇଯାଇଥିଲା । ସାନଭାଇମାନେ ପ୍ରାଥମିକ ଓ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ପଢୁଥିଲେ । କୁଟୁମ୍ବ ବଢୁଥାଏ । ଭାଇ ମାତ୍ର ଉଣେଇଶ ବର୍ଷ ବୟସରେ ବିବାହ କରି ସେତେବେଳକୁ ଏକପୁତ୍ର ଲାଭ କରିଥାଆନ୍ତି । ଅଭାବରୁ ସ୍ୱଭାବ ନଷ୍ଟ । ବାପା ଅଧିକାଂଶ ସମୟ ମୋକଦ୍ଦମା ବୁଝିବା ପାଇଁ ପୁରୀରେ ରହୁଥାନ୍ତି । ଘରକୁ ଆସିଲେ ଚିଡ଼ି ଚିଡ଼ି ହୁଅନ୍ତି । ପ୍ରକାରାନ୍ତରେ ବଡ଼ ଦୁଇପୁଅ କିଛି ରୋଜଗାର କରିବା ପାଇଁ ସେ ଚାହୁଁଥାନ୍ତି । ଆମ ଦୁଇଭାଇଙ୍କ ଯୋଗ୍ୟତା ଯାହା ସେଥିରେ ଅତିବେଶିରେ ପ୍ରାଥମିକ ଶିକ୍ଷକପଦ ମିଳିପାରେ । କିନ୍ତୁ ତାହା ସହଜରେ ମିଳୁଛି କେଉଁଠି ?

କାକଟପୁର ନିକଟବର୍ତ୍ତୀ ବନମାଳୀପୁର ଶାସନର ଭୁବନେଶ୍ୱର ମିଶ୍ର ତତ୍‌କାଳୀନ କୋରାପୁଟ ଜିଲ୍ଲା ଗମ୍ପାକୁଣ୍ଡା ଆଶ୍ରମ ସ୍କୁଲରେ ହେଡ଼ମାଷ୍ଟର ଥାଆନ୍ତି । ସେ ତାଙ୍କ ଭଉଣୀ ଘରକୁ (ଆମ ଗାଆଁକୁ) ଆସିଥାନ୍ତି । ମୁଁ ତାଙ୍କୁ ଦେଖାକରି ଚାକିରି କଥା କହିବାରୁ ସେ କହିଲେ- "ମାଲକାନ୍‌ଗିରି ଅଞ୍ଚଳରେ କେତୋଟି ସେବକ ଚାକିରି ଖାଲିଅଛି । ତୁମେ ଗଲେ ସେ ପୋଷ୍ଟରେ ରଖାଇଦେବି ।" ମୁଁ ଘରକୁ ଆସି ଏକଥା କହିଲି । ଆମକୁ କେବେ ପାଖରୁ ଛାଡୁ ନ ଥିବା ବୋଉ ଏକଥା ଶୁଣି ଅଧୈର୍ଯ୍ୟ ହୋଇପଡ଼ିଲା । ଭାଇ ମଧ୍ୟ ସେ ଚାକିରି ପାଇଁ ଇଚ୍ଛା ପ୍ରକାଶ କଲେ । ଦୁଇଭାଇ ବେଡ଼ିଙ୍ଗ ସୁଟ୍‌କେଶ ଧରି ମାର୍ଚ୍ଚ ୧ ତାରିଖ ଦିନ ମାଲକାନଗିରି ଅଭିମୁଖେ ବାହାରି ପଡ଼ିଲୁ । ବୋଉ ଭୋ'ଭୋ' କାନ୍ଦୁଥାଏ । ଆମେ ତାକୁ ପ୍ରବୋଧ ଦେଇ କଟକ ଗଲୁ । ସେତେବେଳେ ଭାଇଙ୍କ ଶ୍ୱଶୁର କିଶୋରୀ ଚରଣ କାନୁନ୍‌ଗୋ କଟକ ଜେଲ୍‌ରେ ଆସିଷ୍ଟାଣ୍ଟ ଜେଲର ରୂପେ କାର୍ଯ୍ୟ କରୁଥିଲେ । ସେ ସପରିବାର ସରକାରୀ ବାସଗୃହରେ ରହୁଥିଲେ । ସେଠାରେ ଭାଉଜ ଓ ପୁତୁରା ଥିଲେ । ଆମେ ତାଙ୍କ ବସାରେ ଦିନଟିଏ ରହି ତା' ଆରଦିନ ରାତିରେ ମାଡ୍ରାସମେଲ୍ ଧରି ବିଜୟ ନଗର ଅଭିମୁଖେ ଚାଲିଲୁ ।

କାରଣ ସେତେବେଳକୁ କୋରାପୁଟ ସଡ଼କ ପଥରେ ରାଜଧାନୀ ଭୁବନେଶ୍ୱର ସହିତ ସଯୁକ୍ତ ହୋଇନଥିଲା । କୋରାପୁଟ ଜିଲ୍ଲାକୁ ଯିବାକୁ ଟ୍ରେନ୍‌ରେ ବିଜୟ ନଗର ଯାଇ ସେଠାରୁ ବସ୍‌ଯୋଗେ କୋରାପୁଟ ବା ଜୟପୁରକୁ ଯିବାକୁ ହେଉଥିଲା । ଆମେ ପ୍ରାୟ ସକାଳ ନଅଟା ବେଳକୁ ବିଜୟନଗର ଷ୍ଟେସନ୍‌ରେ ଓହ୍ଲାଇଲୁ ।

ସେଠାକାର ଭାଷା ଆମର ସଂପୂର୍ଣ୍ଣ ଅବୋଧ ଥିଲା । ଷ୍ଟେସନ୍ ନିକଟରେ ଏକ ପାନଦୋକନରେ ତେଲଗୁମିଶା ଓଡ଼ିଆ ଭାଷା ଶୁଣି ଦୋକାନୀକୁ ଜୟପୁର ବସ୍ କେଉଁଠି ମିଳିବ ବୋଲି ପଚାରିଲୁ । ସେ ଆମକୁ ନିକଟରେ ଥିବା ଓଡ଼ିଶା ସରକାରଙ୍କ ପରିବହନ ବିଭାଗର ବସ୍‌କୁ ହାତ ଦେଖାଇଦେଲା । ଆମେ ବସ୍ ଧରିବାର ପ୍ରାୟ ଦଶ ମିନିଟ୍ ପରେ ତାଳବଣ ଓ ଆମ୍ବ ବଗିଚା ଧାର ଦେଇ ବସ୍ ଆଗେଇ ଚାଲିଲା । ପ୍ରାୟ ଦୁଇ ଘଣ୍ଟା ପରେ ସାଲୁର ସହର ଭିତରକୁ ବସ୍‌ଯାଇ ଗୋଟିଏ ହୋଟେଲ ନିକଟରେ ଅଟକିଲା । ଯାତ୍ରୀମାନଙ୍କ ସହିତ ଆମେ ମଧ୍ୟାହ୍ନ ଭୋଜନ ଖାଇ ବସିଲୁ । ଚାରୁ, ଚଟ୍ନି, ଚଟଣି ଆଦି ସହିତ ଆମେ ପୂର୍ଣ୍ଣ ଅପରିଚିତ ଥିଲୁ । କୁନ୍ଦୁର ଭଜାରେ ମାରି ପାଇଲୁ (ଲଙ୍କା)ର କଡ଼ାରାଗ ଆମ ନାକ କାନରୁ ପାଣି ବୁହାଇ ଦେଲା । ବସା ଦହି ଓ ପାମ୍ପଡ଼ ଯୋଗୁ କିଛି କିଛି ଖାଇଲୁ ।

ସାଲୁର ସହର ଅତିକ୍ରମ କରି ବସ୍ ଆଗେଇ ଚାଲିଲା । ତାପରେ ଆରମ୍ଭ ହେଲା ସୁଉଚ୍ଚ ଘାଟି । ଘାଟିର ସର୍ପିଳ ରାସ୍ତା ଦେଇ ବସ୍ ଚାଲିଥାଏ । ଆମେ କଡ଼ ଦେଇ ତଳକୁ ଚାହିଁଲା ବେଳକୁ ମୁଣ୍ଡ ବୁଲାଇ ଯାଉଥାଏ । ପାହାଡ଼ୀ ଜନବସତି ଗୁଡ଼ିକ ଚିତ୍ରପଟର ଗାଆଁ ପରି ଛୋଟ ଛୋଟ ଦେଖାଯାଉଥାଏ । ଗାଈ ଗୋରୁ ଦେଖାଯାଇଥାନ୍ତି ଛେଳି ମେଣ୍ଢାଙ୍କ ପରି ସାନ ସାନ । ଅନ୍ୟପକ୍ଷରେ ପାହାଡ଼ ପର୍ବତକୁ ଘେରି ରହିଥିବା ସ୍ନିଗ୍ଧଶ୍ୟାମଳ ବନାନୀକୁ ଚାହିଁ ମନରେ ଅପୂର୍ବ ଆନନ୍ଦ ସୃଷ୍ଟି ହେଉଥାଏ । ସାଲୁର ଘାଟି ପାରିହୋଇ କିଛି ଦୂର ଯିବାପରେ ପଡ଼ିଲା । ଆନ୍ଧ୍ରଓଡ଼ିଶାର ସୀମା । ବସ୍ ସେଠାରେ ଅଟକିଲା । ସହଯାତ୍ରୀମାନେ ଏକ କରିବାକୁ ଗାଡ଼ିରୁ ଓହ୍ଲାଇଲେ । ବନ ଜଙ୍ଗଲ ଘେରା ପାହାଡ଼ ଜଙ୍ଗଲ ଭିତରେ ଓହ୍ଲାଇବାକୁ ଭୟ ଲାଗୁଥିଲେ ବି ସାହସ ପାଇ ପରିସ୍ରା କରି ଗାଡ଼ିକୁ ଫେରିଲୁ । ତାପରେ ପଡ଼ିଲା ପଟାଙ୍ଗି ଘାଟି । ରାସ୍ତା ଧାରରେ ଆଦିବାସୀ ଲୋକମାନେ ଚାଲିଥାନ୍ତି ପୁରୁଷମାନଙ୍କ ପିନ୍ଧା ଗୋଟିଏ ଲୁଙ୍ଗିଟି, ଗୋଟିଏ କାନ୍ଧରେ ଟାଙ୍ଗିଆ, ଆରକାନ୍ଧରେ କାଉଡ଼ି (ଭାର) । ସ୍ତ୍ରୀଲୋକମାନେ ଅଣ୍ଟାରେ ଖଣ୍ଡେ କନା ଘେରାଇ ଥାନ୍ତି । ଉପର ଅଂଶ ଅନାବୃତ । ବେକ ଓ ନଗ୍ନ ଛାତି ଉପରେ ବିଭିନ୍ନ ରଙ୍ଗର କେତେ ସରି ମାଳି ଏବଂ ଖୋଷାରେ କାଠପାନିଆ । କେହି କେହି ସ୍ତ୍ରୀଲୋକ ଛାତି ଓ ପେଟ ଉପରେ ଛୋଟ ଛୁଆମାନଙ୍କୁ ବାନ୍ଧି ଚାଲିଥାନ୍ତି । ଏ ଦୃଶ୍ୟ ଦେଖି ଆମେ ହତଚକିତ ଓ ଭାବବିହ୍ୱଳ ହୋଇପଡ଼ିଲୁ ।

ରାତି ନଅଟାରେ ଜୟପୁରରେ ବସ ପହଞ୍ଚିଲା । ଗାଡ଼ିରୁ ଓହ୍ଲାଇ ରିକ୍ସାଟାଏ ଧରି ରିକ୍ସାବାଲାକୁ ଏକ ଧର୍ମଶାଳାକୁ ନେବାକୁ କହିଲୁ । ସେଠାରେ ପହଞ୍ଚିଲା ବେଳକୁ ଧର୍ମଶାଳା ଫାଟକ ବନ୍ଦ । ଜଗୁଆଳିଟା ବାରଣ୍ଡାରେ ପଡ଼ି ଗଅଁ ଗଅଁ ହେଉଛି । ରିକ୍ସାବାଲା ତାକୁ ଫାଟକ ଖୋଲିବାକୁ କହିବାରୁ ସେ ତେଲଗୁରେ ଅନର୍ଗଳ ଗାଳି ଦେଇ ଲାଗିଲା ।

ରିକ୍ସାବାଲା ଆମକୁ କହିଲା, "ବାବୁ ସେ ବେଶି ପିଇଦେଇଛି । ଚାଲ ଆଗ ହୋଟେଲରେ ରହିବୁ ।" ସେ ଆମକୁ ନେଇ ଜୟପୁର ଛକ ଉପରେ ଥିବା "ରାଧାକୃଷ୍ଣ ହୋଟେଲ"ରେ ପହଞ୍ଚାଇ ଦେଲା । ସେତେବେଳକୁ ହୋଟେଲଟିର ଖାଦ୍ୟ ସରିବା ଉପରେ । ଚାରୁ,ଖାଲି ମାଂସ ଝୋଳ ଓ କନ୍ଦାଭଜା ସହିତ ଭାତ ଖାଇଲୁ । ହୋଟେଲ ମାଲିକ ଦଇଟଙ୍କା ଭଡ଼ାରେ ଦୁଇଟି ଲୁହାପାତ ବୁଣା ଖଟିଆ ଦେଲେ । ତାଙ୍କଠାରୁ ବୁଝିଲୁ ମାଲକାନଗିରି ବସ୍ ସକାଳ ସାତଟାରେ ବସ୍‌ଷ୍ଟାଣ୍ଡରୁ ଛାଡ଼ିବ । ଆମେ କ୍ଳାନ୍ତଶ୍ରାନ୍ତ ଦେହକୁ ଖଟିଆରେ ଲୋଟାଇ ଦେଲୁ ।

ସକାଳ ପାଞ୍ଚଟା ବେଳକୁ ନିଦଭାଙ୍ଗିଗଲା ନିତ୍ୟକର୍ମ ସାରି ଛଅଟାବେଳକୁ ବସ୍‌ଷ୍ଟାଣ୍ଡରେ ପହଞ୍ଚିଲୁ । ବସ୍‌ଷ୍ଟାଣ୍ଡରେ ଥିବା ଏକମାତ୍ର ଜଳଖିଆ ଦୋକାନରେ ପଚାରି ବୁଝିଲୁ କେବଳ ଉପମା ଓ ଇଡ଼ିଲି ଅଛି । ସେତେବେଳେ ପୁରୀ-କଟକରେ ସାଧାରଣ ଲୋକ ନିକଟରେ ଉପମା ଇଟିଲି ଚଟଣି, ସମ୍ବାର ଆଦି ସଂପୂର୍ଣ୍ଣ ଅଜଣାଥିଲା । ସୁନ୍ଦର ନାଆଁ ଶୁଣି ସୁସ୍ୱାଦୁ ହୋଇଥିବ ଭାବି ଉପମା ଦୁଇପ୍ଲେଟ୍ ବରାଦ ଦେଲୁ । କିନ୍ତୁ ପାଟିକୁ ତାହା ଭଲ ଲାଗିଲା ନାହିଁ । ଯେନ ତେନ ପ୍ରକାରେ ତାହା ଖାଇ ଟିକଟ କାଉଣ୍ଟରକୁ ଗଲୁ । କଣ୍ଡକ୍ଟରଙ୍କୁ ଗମ୍ପାକୁଣ୍ଡା ଟିକଟ ମାଗିବାରୁ ସେ ମୋ ମୁହଁକୁ କିଛି ସମୟ ଚାହିଁ କହିଲେ, ସେମିତି ଜାଗା ତ କିଛି ନାହିଁ । "ମୁଁ କହିଲି, ମାଲକାନଗିରି ବସ୍‌ରେ ଗଲେ ଗମ୍ପାକୁଣ୍ଡା ଆଶ୍ରମ ସ୍କୁଲ ପଡ଼େ ।" ସେ କହିଲେ "ହୁଏତ ସଡ଼କଠାରୁ କିଛି ଦୂରରେ ସେ ସ୍ଥାନ ହୋଇଥିବ । ମୁଁ ଏବେ ମାତିଲି ପର୍ଯ୍ୟନ୍ତ ଟିକଟ କରୁଛି । ମାତିଲିଥାନାରୁ ବୁଝିବାପରେ ସେ ଜାଗାକୁ ଟିକଟ କରିବା ।"

ବସ ଚାଲିଲା ବାଟରେ ବିଶେଷ ଗହଳିଆ ଜଙ୍ଗଲ ନାହିଁ । ଛୋଟ ଛୋଟ ଲଣ୍ଡାପାହାଡ଼ ସବୁ ଦେଖାଯାଉଥାଏ । ତାପରେ ପଡ଼ିଲା କୋଲାବ ନଦୀ ଉପରେ କୋଟାବ୍ରିଜ୍ । ଲୁହା ଇସ୍ପାତରେ ତିଆରି ଏଇ ଶକ୍ତି ବ୍ରିଜ୍‌ଟି ବ୍ରିଟିଶ ଅମଳର । ସେଠାରୁ ଚାରି ପାଞ୍ଚ ମାଇଲ ଯିବା ପରେ ଜଙ୍ଗଲ ଓ ପାହାଡ଼ ପର୍ବତ ଘେରା ଘାଟି । ଘାଟିପରେ ଗୋବିନ୍ଦପାଲି ଥାନା । ଏଠାରୁ ଚାରି ଛଅ ମାଇଲ ଯିବା ପରେ ଆରମ୍ଭ ହେଲା ବିସ୍ତୃତ ଶାଳବଣ, କଣ୍ଡକ୍ଟର ମାତିଲି ଥାନାରେ ଓହ୍ଲାଇ ଗମ୍ପାକୁଣ୍ଡା ଆଶ୍ରମ ସ୍କୁଲର କୌଣସି ପତା ପାଇଲେ ନାହିଁ । ତାପରେ ନିବିଡ଼ ଅରଣ୍ୟ ଦେଇ ବସ୍‌ଟି ଚାଲିଲା । ଆମ ସିଟ୍ ପାଖରେ ବସିଥିବା ଜଣେ ଭଦ୍ରଲୋକ କହିଲେ, "ଆପଣମାନେ ବ୍ୟସ୍ତ ହୁଅନ୍ତୁ ନାହିଁ । ମାଲକାନ୍‌ଗିରିରେ ଏ.ଡ଼ି.ଡ଼ବ୍ଲୁଙ୍କ ଜିଲ୍ଲା ସରକାରୀ ଗ୍ରାମମଙ୍ଗଳ ଅଧିକାରୀ ଅଫିସ ସେଠାରୁ ଆପଣମାନେ ଗମ୍ପାକୁଣ୍ଡା । ଆଶ୍ରମ ସ୍କୁଲ ସମ୍ପର୍କରେ ବୁଝିପାରିବେ ।" ଆଉ ଜଣେ ଯାତ୍ରୀ କହିଲେ "ସେ ଜାଗା କାଳିମେଲା ନିକଟରେ ବୋଧ ହୁଏ ହେବ । ମାଲକାନ୍‌ଗିରିରେ ତ ସାପ ମାଳ ମାଳ । କାଳିମେଲା ସେଠାରୁ କେତେ ଦୂର । ସେଠାରୁ ତ ଆଉ ଗାଁ ଗଣ୍ଡା କିଛି ନାହିଁ ।" ଆମେ ଦୁଇଭାଇ ହତବାକ ହୋଇ କେବଳ ଶୁଣୁଥାଉ । ଇତି ମଧ୍ୟରେ ବସ୍‌ଟି ଗରିଆଗାତ ଓ ପାଙ୍ଗାମ ଗାଁ ଦେଇ ମାଲକାନଗିରିରେ ପହଞ୍ଚିଲା ।

ଆମେ ଦିନ ଏଗାରଟା ବେଳକୁ ବସରୁ ଓହ୍ଲାଇ ଖୋଜି ଖୋଜି ଏ.ଡ଼ି.ଡ଼ବ୍ଲୁଙ୍କ

ଅଫିସରେ ପହଞ୍ଚିଲୁ । ଅଫିସର ଟୁରରେ ଯାଇଥାନ୍ତି । ଅଫିସରେ କେବଳ ଥାଆନ୍ତି ଜଣେ ପିଅନ । ଅଳ୍ପ ସମୟ ମଧ୍ୟରେ ତାଙ୍କ ସହିତ ଆମର ଦୋସ୍ତି ହୋଇଗଲା । ପୂର୍ବଦିନ ତ ଆମେ ଖାଇ ପାରିନଥିଲୁ । ପୁଣି ସେଦିନ ସକାଳୁ ସକାଳୁ ଜୟପୁର ଛାଡ଼ିଥିବାରୁ ଗାଧୋଇବା ସମ୍ଭବପର ହୋଇନଥିଲା । ବେଡ଼ିଙ୍ଗ ସୁଟ୍‌କେସ୍ ଅଫିସ୍‌ରେ ରଖିବାଲି ସାଗରକୁ ଗାଧୋଇ ଗଲୁ । ସେତେବେଳେ ମାଲକାନ୍‌ଗିରିରେ ଅଧିବାସିମାନେ ଗାଧୋଇବା ଏବଂ ଖାଇବା ପାଣି ପାଇଁ ଏହି ସାଗର ଉପରେ ପୂରା ନିର୍ଭର କରୁଥିଲେ । ଆମେ ଗାଧୋଇସାରି ସେତେବେଳେ ଏକ ଝୁପୁଡ଼ି ଘରେ ଥିବା ମାଲକାନ୍‌ଗିରିର ଏକମାତ୍ର ହୋଟେଲକୁ ଖାଇବାକୁ ଗଲୁ । ସେ ହୋଟେଲର ଖାଦ୍ୟ ସାଲୁର ଓ ଜୟପୁରର ଖାଦ୍ୟଠାରୁ ଆହୁରି ନିକୃଷ୍ଟତର ଓ ଅତ୍ୟଧିକ ରାଗଯୁକ୍ତ ଥିଲା । ଦି,ଦି, ଗୁଣ୍ଡା ଖାଇ ଉଠି ଆସିଲୁ । ଏ ଜହର ଖାଦ୍ୟ ଆଉ କେତେଦିନ ଖାଇବା ଏକଥା ଦୁଇଭାଇ ଭାବି ଲାଗିଲୁ । ପିଅନଭାଇଙ୍କୁ ସେଇକଥା ଜଣାଇଥିବାରୁ ସେ କହିଲେ "ବ୍ୟସ୍ତ ହେବାର ନାହିଁ" । ମୁଁ ଡ଼େକ୍‌ଚି ଯୋଗାଇ ଦେବି । ଆପଣମାନେ ସଉଦା କିଣି ହାତରେ ରୋଷେଇ କରି ଖାଆନ୍ତୁ ।"

ତାଙ୍କଠାରୁ ବୁଝିଲୁ ଗମ୍ପାକୁଣ୍ଡା ଆଶ୍ରମ ସ୍କୁଲ ସେଠାରୁ ପ୍ରାୟ ଛବିଶ ମାଇଲ ହେବ । କାଲିମେଳା ରୋଡ଼ରେ ଚବିଶ ମାଇଲ ଯିବାପରେ ଗମ୍ପାକୁଣ୍ଡାକୁ ଏକ ରାସ୍ତା ପଡ଼େ । ସେଠାକୁ ଯିବାକୁ କୌଣସି ଯାନ ବାହାନର ସୁବିଧା ନାହିଁ । କେତେବେଳେ କେମିତି ଧାନ ଲଦେଇ ଶଗଡ଼ ଗାଡ଼ି ଏଠାରୁ କାଲିମେଳା ଯାଏ । ସେ କହିଲେ, " ଅପେକ୍ଷା କରନ୍ତୁ ଦୁଇତିନିଦିନ ମଧ୍ୟରେ ସୁବିଧା ଦେଖି ମୁଁ ଗୋଟିଏ ଶଗଡ଼ରେ ବସାଇଦେବି ।" ଏକଥା ଶୁଣି ଆମେ ବିବ୍ରତ ହୋଇ ପଡ଼ିଲୁ । ଭାଇ ଘରକୁ ଫେରିଯିବା ପାଇଁ ପ୍ରସ୍ତାବ ଦେଲେ । ମୁଁ ତାଙ୍କୁ କହିଲି, "ଘର ଅବସ୍ଥାତ ଆମେ ଦେଖି ଆସିଛେ । ଆମେ ଏବେ ଯଦି ଫେରିଯିବା ତେବେ ବାପା ଭୀଷଣ ଆଘାତ ପାଇବେ । ଧୈର୍ଯ୍ୟର ସହିତ ପରିସ୍ଥିତିର ସମ୍ମୁଖୀନ ହେବା । ନିହାତି ଅସୁବିଧା ହେଲେ ପଛେ ଫେରିଯିବା ।"

ଆମେ ଛକକୁ ଯାଇ ଚାଉଳ, ପରିବା (କେବଳ ବୁଢ଼ା ବାଇଗଣ ମିଳିଲା) ଓ ଶୁଖୁଆ ଆଣିଲୁ । ପୁଣି ପିଅନ୍ ଭାଇଙ୍କ ଠାରୁ ବୁଝି ଜଗନ୍ନାଥ ମନ୍ଦିର ନିକଟରେ ଥିଲା ଜଲାପୁଟିଆ ଦୋକାନକୁ ଗଲୁ । ଦୋକାନୀକୁ ଆଳୁ,ଡ଼ାଲି, ଫୁଟଣ ଓ ସୋରିଷ ତେଲ ମାଗିଲୁ । ଦୋକାନୀ ଆମ ମୁହଁକୁ କିଛି ସମୟ ଚାହିଁ ରହି ପଚାରିଲା, "ବାବୁ, ସୋରିଷତେଲ କ'ଣ କରିବ ? ଭାଇ କହିଲେ, ରନ୍ଧାରେ ବ୍ୟବହାର କରିବୁ ।" ସେ ବିସ୍ମିତ ହୋଇ କହିଲା, "ତାକୁ ଖାଇଲେ ରକ୍ତ ମୁତିବ । ମିଠା ତେଲ (ବାଦାମ ତେଲ) ନିଅ । ସେ ଫୁଟଣ ବୋଲି ମୁଠାଏ ଫାଳ ବିରି ଦେଲା । ପରେ ଆମେ ସୋରିଷ ଲଙ୍କା ଓ ହଳଦୀଗୁଣ୍ଡ କିଣିଲୁ । ଅଫିସକୁ ଆସି ଜାଳ ସଂଗ୍ରହ କରି ରାନ୍ଧିଲୁ । ସନ୍ଧ୍ୟା ପୂର୍ବରୁ ଆମର ଖିଆ ଶେଷ ହେଲା ।

ଆମେ ଖାଇସାରି କବାଟ ବନ୍ଦ କରି ଶୋଇବାକୁ ଯାଉଥାଉ । କାରଣ ମନରେ ସାପଭୟ । ଏହି ସମୟରେ ପିଅନଭାଇ ଆସି କହିଲେ, "ଆଜି ଗୋଟେ ଶଗଡ଼ ରାତି ଆଠଟାବେଳେ କାଲିମେଳା ଯିବ । ସେଇ ଗାଡ଼ିରେ ଆପଣମାନଙ୍କୁ

ବସାଇଦେବି । ଫୁଲିମେଟାଲ, ପାଖରେ ଓହ୍ଲାଇ ଗମ୍ମାକୁଣ୍ଡା ଆଶ୍ରମ ସ୍କୁଲକୁ ଚାଲି ଯାଇ ହେବ । ପ୍ରସ୍ତୁତ ହୁଅନ୍ତୁ । ପୁଣି ଶଗଡ଼ଟାଏ ମିଳିଲା ବେଳକୁ ଦୁଇତିନି ଦିନ ଡେରି ହୋଇପାରେ !" ଆମେ ସାତଟା ବେଳକୁ ଛକକୁ ଆସିଲୁ । ପିଅନଭାଇ ସେ ଗାଡ଼ିଆଳ ସହିତ ଆମକୁ ପରିଚୟ କରାଇଦେଲେ । ଆମେ ଦେଖିଲୁ ଦୂର ପାହାଡ଼ମାନଙ୍କ ଉପରେ ନିଆଁ ଜଳୁଥାଏ । ପଚାରିବାରୁ ଲୋକେ କହିଲେ - ପାଖ ଗାଆଁମାନଙ୍କରେ ଏ ନିଆଁ ଜଳୁଛି । ପରେ ଆମେ ବୁଝିଲୁ- ପୋଡୁଚାଷ ପାଇଁ ଆଦିବାସିମାନେ ଜଙ୍ଗଲରେ ନିଆଁ ଲଗାଇ ଥାଆନ୍ତି । ପରେ ସେମାନେ ଏ ପୋଡ଼ା ଭୂଇଁରେ (ତଇଲାରେ) ମକା, ଜହ୍ନା, ମାଣ୍ଡିଆ ଆଦି ଚାଷ କରନ୍ତି ।

ପ୍ରାୟ ଆଠଟା ବେଳକୁ ବଳଦ ଯୋଚହେଲେ । ଶଗଡ଼ିଆର ନାଆଁ ଜି.ଜଗାରାଓ । ଦେଶିଆ ଲୋକ । ତେଲଗୁ ମିଶା ବଙ୍କା ଓଡ଼ିଆ କହୁଥାଏ । ଶେଷ ଫଗୁଣ ରାସ୍ତାର ଦୁଇ ଧାରରେ ଥିବା ଜଙ୍ଗଲ ଗଛମାନଙ୍କରେ ଛାଇଛାଇକା ଜହ୍ନ ଆଲୁଅ ପଡୁଥାଏ । ଧୀର ପବନରେ ଜଙ୍ଗଲୀ ଫୁଲର ମହକ ଭାସି ଆସୁଥାଏ । ଏସବୁକୁ ଉପଭୋଗ କରିବାକୁ ମାନସିକତା ଆମର ନଥାଏ । ଗାଡି ଉପରେ ବାଉଁଶ ତାଟି ଘେର ଭିତରେ କେଇ ବସ୍ତା ଧାନଥାଏ । ଆମେ ଦୁଇଭାଇ ବସ୍ତାକୁ ଆଉଜି ଜାକିଜୁକି ହୋଇ ବସିଥାଉ । ଭୟରେ ଜଡ଼ସଡ଼ ରାତିସାରା ଗାଡ଼ିରେ ଢୁଳାଉଥାଉ । ପରିସ୍ରା କରିବା ପାଇଁ ପଦାକୁ ବାହାରିବାକୁ ସାହସ ନଥାଏ । ବାଟ ଖାଲଢ଼ିପ । ଛୋଟ ବଡ଼ ନଈନାଳ ଦେଇ ଗାଡ଼ି ଚାଲିଥାଏ । ନଈ ଗୁଡ଼ିକ ଶୁଖିଲା । ସେ ସମୟକୁ କୌଣସି ନଈନାଳରେ ବ୍ରିଜ୍ ହୋଇନଥାଏ । ପ୍ରାୟ ନଅ ମାଇଲ ପରେ ନଦୀଟିଏ ପଡ଼ିଲା । ଛୋଟ ପଥର ଓ କଙ୍କର ଉପରେ ଧଡ଼ ଧଡ଼ ହୋଇ ଗାଡ଼ି ଚାଲିବାରୁ ଆମର ଢୁଳ ଭାଙ୍ଗିଗଲା । ଜଗାରାଓ କହିଲା ବାବୁ ଏ ତମସାନଈ । ରାତି ପାହା ପାହାକୁ ଆଉ ଗୋଟେ ବଡ଼ ନଈ ପଡ଼ିବ । ସେଇଟା ହେଉଛି ପଟେରୁ । ତାପରେ ଦେଶିଆ ଭାଷାରେ ଗୀତ ଗାଇ ଗାଇ ବଳଦ ଅଡ଼େଇ ଚାଲିଲା । ପାହାନ୍ତା ପବନରେ ଆମକୁ ଟିକେ ନିଦ ହୋଇଯାଇଥିଲା । ଗାଡ଼ି ସଡ଼କରୁ ତଳକୁ ଗଡ଼ିବାରୁ ଆମର ନିଦ ଭାଙ୍ଗିଲା । ଦେଖିଲୁ ଗାଡ଼ିଟି ଜଙ୍ଗଲ ଭିତରକୁ ଯାଉଛି । ମୁଁ ଟିକିଏ ଆତଙ୍କିତ ହୋଇପଡ଼ିଲି । କିନ୍ତୁ ମନର ଭାବକୁ ମନରେ ରଖି ନୀରବ ରହିଲି । ରାତି ପାହି ଆସୁଥାଏ,ଗୋଟିଏ ବନ୍ଧ (ପୋଖରୀ) ନିକଟରେ ବଳଦ ଫିଟାଇଲା ଓ ଆମକୁ ନିତ୍ୟକର୍ମ କରିବାକୁ କହି ସେ ତା ନିତ୍ୟକର୍ମରେ ଲାଗିଲା । ପୁଣି କିଛି ଦୂର ଯିବାପରେ ପଡ଼ିଲା ପଟେରୁ ନଦୀ । ନଦୀକୂଳରେ ଥିବା ଫୁଲଭରା ମହୁଲ ଗଛରୁ ମାଦକିଆ ବାସ୍ନା ଛୁଟି ଆସୁଥାଏ । ନଦୀରୁ ଶଗଡ଼ ଉଠିବାପରେ ରାଓ ଜଣେ କୋୟାକୁ ଦେଖି କୋୟା ଭାଷାରେ ତା ସହିତ କଥାଭାଷା ହୋଇ ଫେରିଲା । ଆମକୁ କହିଲା ଏ କାଉଡ଼ିଆକୁ ଦୁଇଟଙ୍କା ଦେବ । ସେ ଆପଣମାନଙ୍କର ସାମାନ ବୋହିନେଇ ଗମ୍ମାକୁଣ୍ଡା ଆଶ୍ରମରେ ଛାଡ଼ିଦେଇ ଆସିବ । ଆମେ ଜଗାରାଓକୁ ତିନିଟଙ୍କା ବଢ଼େଇ ଦେଇ ଓହ୍ଲାଇଲୁ ।

ପୂର୍ବ ବର୍ଣ୍ଣିତ ଆଦିବାସୀମାନଙ୍କ ପରି ଲୋକଟିର ଏକମାତ୍ର ପରିଧେୟ ଥିଲା ଲେଙ୍ଗୁଟି । ତାର ଗୋଟିଏ କାନ୍ଧରେ ଥିଲା ଶୋରମୁଣା ଓ ଟାଙ୍ଗିଆ । ଅନ୍ୟକାନ୍ଧରେ

ଥିଲା ଧନୁ । ସେ ଧନୁଟିକୁ ପାହୁଙ୍ଗି ରୂପେ ବ୍ୟବହାର କରି ଆମ ବେଡ଼ିଙ୍ଗ ଓ ସୁଟକେସ୍‌କୁ ଦୁଇପଟେ ବାନ୍ଧି ଚାଲିଲା । କଗାଲାଓ ଆମକୁ ଜୁହାର କଣାଇ ଗାଡ଼ି ଅଡ଼େଇବା ଆରମ୍ଭ କଲା । ଆମେ କୋୟାକୁ ଅନୁସରଣ କରି ଚାଲିଲୁ । ଆଗରେ ପଡ଼ିଲା ଏକ ଆଦିବାସୀ ବସ୍ତି । ବସ୍ତିଟିରେ ଖରିଛପର କେତୋଟି ନୁଆଁଣିଆ କୁଡ଼ିଆ । ଘର ଗୁଡ଼ିକ ରଙ୍ଗମାଟିରେ ଲିପା । ତେନ୍ତୁଳି ଓ ସଲଫଗଛ ଚାରିପଟେ ଘେରି ରହିଥାଏ କୁକୁଡ଼ାପଲ ବୁଲୁଥାନ୍ତି । ଆମକୁ ଦେଖି କୁକୁର କେତୋଟି ଭୁକି ଉଠିଲେ । ଘରେ ଥିବା ପିଲାମାନେ ଆମକୁ ଚାହିଁ ରହିଲେ । ଭାରୁଆ କୋୟାଟି କୁକୁରମାନଙ୍କୁ କ'ଣ ପଦେ ଦିପଦ କହି ଆଗେଇ ଚାଲିଲା । ଆମେ ତାକୁ ଗମ୍ପାକୁଣ୍ଡା କେତେବାଟ ବୋଲି ପଚାରିଲୁ । ସେ କ'ଣ ବୁଝିଲା କେଜାଣି ଇସାରାରେ ପୂର୍ବ ଦିଗକୁ ଦେଖାଇଦେଲା । ନଅଟା ବେଳକୁ ଆମେ ଆଶ୍ରମ ସ୍କୁଲରେ ପହଞ୍ଚିଗଲୁ ।

ଆଶ୍ରମ ସ୍କୁଲଟି ତିନିଚାରି ଏକର ଜମି ଉପରେ ଅବସ୍ଥିତ । ଝଞ୍ଜଡ଼ାଘେରା ହତାର ଭିତର ସିଲାଇ ଶିକ୍ଷାପାଇଁ ୱାର୍କସପ୍ । ଦକ୍ଷିଣପାର୍ଶ୍ୱରେ ପିଲାଙ୍କ ରହିବା ଘର ଓ ମେସ୍ । ପଶ୍ଚିମରେ ଶିକ୍ଷକମାନଙ୍କ ସରକାରୀ ବାସଗୃହ । ଏଇ ଆବାସିକ ବିଦ୍ୟାଳୟରେ ସପ୍ତମଶ୍ରେଣୀ ପର୍ଯ୍ୟନ୍ତ ପଢ଼ିବା ପାଇଁ ବ୍ୟବସ୍ଥା ସହିତ ବୈଷୟିକ ଶିକ୍ଷାର ସୁବିଧା ଥାଏ । ପ୍ରାୟ ସତୁରୀ ଛାତ୍ର ଓ ଦଶଜଣ ଶିକ୍ଷକ ଏଇ ଅନୁଷ୍ଠାନରେ ରହିଥାନ୍ତି । ସରକାର ସେମାନଙ୍କର ସମସ୍ତ ଖର୍ଚ୍ଚ ବହନ କରନ୍ତି ।

ସୌଭାଗ୍ୟକୁ ପ୍ରଧାନ ଶିକ୍ଷକ ଭୁବନେଶ୍ୱର ମିଶ୍ର ଥାଆନ୍ତି । ପୁଣି ଆମେ ପହଞ୍ଚିବାର ପ୍ରାୟ ଦୁଇଘଣ୍ଟା ପରେ ସାମାଜିକ କର୍ମୀ (Social worker) ସୂର୍ଯ୍ୟନାରାୟଣ ମିଶ୍ର ପହଞ୍ଚିଲେ । ସେତେବେଳେ ସେବାଶ୍ରମ ଗୁଡ଼ିକର ପରିଚାଳନା ଓ ପରିଦର୍ଶନ ଦାୟିତ୍ୱ ସୋସିଆଲ ୱାର୍କରଙ୍କ ଉପରେ ନ୍ୟସ୍ତ ଥିଲା । ଆମେ ଗାଧୋଇ ଜଳଖିଆ ଖାଇ ବିଶ୍ରାମ କରୁଥାଉ । ଭୁବନେଶ୍ୱରବାବୁ ସୋସିଆଲ ୱାର୍କରଙ୍କ ଆମ ସହିତ ପରିଚିତ କରାଇ କହିଲେ, "ଭଲ ବେଳରେ ଆସି ପହଞ୍ଚିଲେ, ଆପଣମାନେ ଯେବେ କେଉଁ ବେଳେ ଆପଣମାନଙ୍କର ହାକିମ ଆସି ପହଞ୍ଚିଗଲେଣି । ଆଜି ହିଁ ଦୁହେଁ ଅସ୍ଥାୟୀ ନିଯୁକ୍ତି ପାଇବେ । ପରେ କଲେକ୍ଟରଙ୍କ ଠାରୁ ସ୍ଥାୟୀ ନିଯୁକ୍ତିପତ୍ର ଆସିବ । ଆଜିଠାରୁହିଁ ଆପଣମାନେ ଦରମା ପାଇବେ ।" ଆମର ସାର୍ଟିଫିକେଟ୍ ଦେଖିବାପରେ, ସୋସିଆଲ ୱାର୍କର ମିଶ୍ରବାବୁ କହିଲେ, "ଏଠାରେ ଦକ୍ଷିଣ ପଶ୍ଚିମରେ ପ୍ରାୟ ଚଉଦ ମାଇଲ ଦୂରରେ କାଲିମେଲା ମୋଟରାସ୍ତା ପାଖରେ ଗିରିକାନପାଲ୍ଲୀ ସେବାଶ୍ରମରେ ଦ୍ୱିତୀୟ ସେବକ ପଦ ଏବଂ ଏଠାରୁ ଉତ୍ତରରେ ମାଲକାନଗିରି ଆଡ଼କୁ ସତର ମାଇଲ ଦୂରରେ(ମାଲକାନ୍‌ଗିରି ଠାରୁ ଦକ୍ଷିଣକୁ ନଅ ମାଇଲ ଦୂରରେ) ସିକ୍‌ପାଲି ସେବାଶ୍ରମରେ ପ୍ରଧାନ ସେବକ ପଦ ଖାଲିଅଛି । ସିକ୍‌ପାଲି ଅପେକ୍ଷାକୃତ ଉନ୍ନତ । ସେଠାରେ ଗ୍ରାମପଞ୍ଚାୟତ ଅଫିସ୍ ଅଛି । ସପ୍ତାହରେ ଥରେ ହାଟ ବସେ । ଆପଣମାନଙ୍କ ମଧ୍ୟରୁ କିଏ କେଉଁଠିକୁ ଯିବେ କୁହନ୍ତୁ ?" ଭାଇ ମୋ ମୁହଁକୁ ଚାହିଁଲେ । ମୁଁ ସୋସିଆଲ ୱାର୍କରଙ୍କୁ ଅନୁରୋଧ କଲି "ମୋତେ ଗିରିକାନପାଲ୍ଲୀ ଓ ଭାଇଙ୍କୁ ସିକ୍‌ପାଲ୍ଲୀରେ ନିଯୁକ୍ତି ଦିଅନ୍ତୁ ।" ମାର୍ଚ୍ଚ ୪ ତାରିଖ ଦିନହିଁ ଆମ ଦୁଇଭାଇଙ୍କୁ ଅସ୍ଥାୟୀ ନିଯୁକ୍ତି ପତ୍ର ମିଳିଲା ।

ମଧ୍ୟାହ୍ନ ଭୋଜନ ପରେ ଭାଇଙ୍କଠାରୁ ବିଦାୟ ନେଇ ଗିରିକାନପାଲ୍ଲୀ ଚାଲିଲି । ମୋର ଜିନିଷପତ୍ର ଧରି ଆଶ୍ରମର ଜଣେ ଅସ୍ଥାୟୀ ଶ୍ରମିକ ଗିରିକାନପାଲ୍ଲୀ ଯାଇଥିଲେ । ସନ୍ଧ୍ୟାବେଳକୁ ପାଟେରୁ ନଦୀ ପାରିହୋଇ କିଛିବାଟ ଜଙ୍ଗଲ ରାସ୍ତାରେ ଯାଇ ଆମେ ପ୍ରାୟ ସାତଟାବେଳକୁ ସେବାଶ୍ରମରେ ପହଞ୍ଚିଲୁ । ଭାଇ ପରଦିନ ସିକ୍‌ପାଲ୍ଲୀ ଯାଇଥିଲେ ।



# ବନବାସରେ ଲକ୍ଷ୍ମଣ

ଗିରିକାନପଲ୍ଲୀ ସେବାଶ୍ରମରେ ପ୍ରଧାନ ସେବକ ଥିଲେ ମହେଶ୍ୱର ଶତପଥୀ । ତାଙ୍କ ଘର ବଡ଼ାମ୍ବା । ସେ ସେଠାରେ ଜମେଇ କରିଥିଲେ । ତାଙ୍କ ଏକଚାଟିଆ କାରବାରରେ ବାଧା ହେବ ବୋଲି ଦ୍ୱିତୀୟ ସେବକଙ୍କ ଉପସ୍ଥିତି ସେ ଅନ୍ତର ସହିତ ଚାହୁଁନଥିଲେ ।

ପାଟେରୁ ନଦୀକୂଳର ଉପରେ ସେବାଶ୍ରମଟି ଅବସ୍ଥିତ । ଖରିଛପର ଓ ଚଞ୍ଚଡ଼ା କାନ୍ଥିରେ ତିଆରି ଏକ ଲମ୍ବା ଘରରେ ପାଠପଢ଼ା ହେଉଥିଲା । ଘରର କବାଟ ମଧ୍ୟ ଚଞ୍ଚଡ଼ା ତିଆରି ଏପରିକି ହତା ଚାରିପଟେ ଚଞ୍ଚଡ଼ାବାଡ଼ ଘେରି ରହିଥିଲା । ସେବକମାନଙ୍କର ରହିବା ପାଇଁ ସେହିପରି ଚାରିବଖରା ଘର ଥିଲା । ମହେଶ୍ୱରବାବୁ ମୁଁ ରହିବା ପାଇଁ ସାନ ବଖରାଟା ଛାଡ଼ି ଦେଇଥିଲେ । ତାଙ୍କ ରୋଷେଇରେ ଦୁଇଦିନ ଖାଇବାପରେ ସେ ମୋତେ କହିଲେ, "ଆପଣ ଅଲଗା ରୋଷେଇ କରି ଖାଆନ୍ତୁ ।" ମୋର ଡ଼େକଚି, କଡ଼େଇ କିଛି ନଥିଲା । ସେ ଗାଆଁରୁ ଦୁଇଟି ଛୋଟ ହାଣ୍ଡି ଓ ପଲମଟିଏ କିଣାଇ ଦେଲେ । ମୁଁ ସେଇଥିରେ ରୋଷେଇ କରି ଖାଇଲି । ସେଠାରେ ଉଷୁନା ଚାଉଳର ପ୍ରଚଳନ ନଥିଲା । କାଠିମରା ଅରୁଆଭାତ ଓ ପାପ୍‌ଚାରୁ (ତେନ୍ତୁଳି ଦିଆ ଡ଼ାଲି) ହୋଇଥିଲା । ମୋର ଦୈନନ୍ଦିନ ଖାଦ୍ୟ । ଚାଉଳ କେବଳ ସେଇ ଗାଁଟିରେ ମିଳେ, ଅନ୍ୟ ଆବଶ୍ୟକ ପଦାର୍ଥ କାଲିମେଲାକୁ ଯାଇ ଆଣିବାକୁ ହୁଏ । ସେଠାରେ ଓଡ଼ିଶା ସରକାରଙ୍କ ଦ୍ୱାରା ପରିଚାଳିତ ସମବାୟ ଭଣ୍ଡାରରୁ ଡ଼ାଲି, ମିଠାତେଲ, ମସଲା, ଆଳୁ, ପିଆଜ, କିରୋସିନି ଓ ଦିଆସିଲ୍ ଆଦି ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ କିଣିବାକୁ ହୁଏ । ସ୍ଥାନୀୟ ଅଧିବାସୀଙ୍କ ଆବଶ୍ୟକତା ଥିଲା ସୀମିତ ; ସେମାନେ ବାହାରୁ କିରୋସିନି, ଡ଼ିଆସିଲ୍, ଲୁଣ, ଲଙ୍କା ଓ ଲୁଗାପଟା ବ୍ୟତୀତ ଅନ୍ୟ ଜିନିଷ ପ୍ରାୟ କିଣୁ ନଥିଲେ । ମହେଶ୍ୱରବାବୁ ଏସବୁ ଜିନିଷରେ ଆଦିବାସିମାନଙ୍କୁ ବିକି ଦେଇ ଦୁଇପଇସା ଲାଭ କରୁଥିଲେ । ସେ ବହୁସଂଖ୍ୟାରେ କୁକୁଡ଼ା ମଧ୍ୟ ପାଳନ କରିଥିଲେ । ବର୍ଷାଦିନେ ବାଇଗଣ, ବିଲାତି ବାଇଗଣ, ଶୀତଦିନେ ଲାଉ, ଶିମ୍ବ, ଖରାଦିନେ ପଣସ ମଞ୍ଜି ଥିଲା ଏ ଅଞ୍ଚଳର ମୁଖ୍ୟ ପରିବା । ଶିମ୍ବ ପର୍ବ ପାଳନ ପର୍ଯ୍ୟନ୍ତ ଶିମ୍ବ ଓ ଆମ୍ବପର୍ବ ପାଳନ ନହେବା ପର୍ଯ୍ୟନ୍ତ ଆମ୍ବ କେହି ଛୁଉଁନଥିଲେ । ସ୍କୁଲ ହତା ମଧ୍ୟରେ କେତୋଟି ଅମୃତଭଣ୍ଡା ଗଛ ଥିଲା । ମୁଁ ଆଳୁ ଓ ଅମୃତଭଣ୍ଡାକୁ ହିଁ ପରିବା ରୂପେ ବ୍ୟବହାର କରୁଥିଲି । ବର୍ଷାଦିନେ କେବେ କେମିତି ଚୁନାମାଛ ମିଳୁଥିଲା ।

ମାଲକାନଗିରି ଅଞ୍ଚଳର ମୁଖ୍ୟ ଅଧିବାସୀ କୋୟା । ଏହି ଗାଆଁଟିର ସେମାନଙ୍କ ସଂଖ୍ୟା ଥିଲା, ଦୁଇ ତୃତୀୟାଂଶ । ଅନ୍ୟ ଏକ ତୃତୀୟାଂଶ ଥିଲେ ବୈପାରୀ ଓ ପାଣ । ବୈପାରୀମାନଙ୍କ ବୃତ୍ତିଥିଲା ବେପାର ଓ ଚାଷ । ଏମାନେ ଗୌରବର୍ଣ୍ଣ ଓ ଦେଖିବାକୁ ସୁନ୍ଦର ଥିଲେ । ଏମାନଙ୍କର ଭାଷା ଥିଲା ଛତିଶଗଡ଼ୀ ଓ ଦେଶୀଆର ମିଶ୍ରରୂପ । ଏମାନଙ୍କର

ବେଶପୋଷାକ ଓ ଚଳଣି ମାର୍ଜିତ ଥିଲା । ପୁରୁଷଲୋକମାନେ ଲୁଗା ଓ କୁର୍ତ୍ତା ପିନ୍ଧୁଥିଲେ । ସ୍ତ୍ରୀଲୋକମାନେ ଘାଗରା ଓ ବ୍ଲାଉଜ ପିନ୍ଧୁଥିଲେ । ମଥାରେ ବିନ୍ଦିଆ ଏବଂ ହାତଦାନ୍ତ ତିଆରି ବହୁସଂଖ୍ୟକ ଖଡୁ ଓ ବାହୁଟି ସେମାନଙ୍କ ହାତରେ ପିନ୍ଧୁଥିଲେ । ସେମାନଙ୍କ ବ୍ଲାଉଜ ବିଭିନ୍ନ ରଙ୍ଗର କନାଖଣ୍ଡରେ ତିଆରି ହେଉଥିଲା ଏବଂ ଏଥିରେ ଛୋଟ ଛୋଟ କାଚ ଖଞ୍ଜା ଯାଉଥିଲା । ଅଧିକାଂଶ ପୁରୁଷ ପାଣ କୋୟାଙ୍କ ପରି ଲେଙ୍ଗୁଟି ପିନ୍ଧୁଥିଲେ ଓ କେହି କେହି ମିଶନରି ପକ୍ଷରୁ ମିଳୁଥିବା ପ୍ୟାଣ୍ଟ ସାର୍ଟ ପିନ୍ଧୁଥିଲେ । କିନ୍ତୁ ସମସ୍ତ ପାଲୁଣୀ ଶାଢ଼ୀ ପିନ୍ଧୁଥିଲେ, ଉଭୟ ବୈପାରୀ ଓ ପାଣ ସାହୁକାର ଭାବେ କୋୟାମାନଙ୍କୁ ଶୋଷଣ କରୁଥିଲେ । ପାଣ ବା ଡ଼ମ୍ବମାନେ ଅଧିକ ଧୂର୍ତ୍ତ ଥିବାରୁ ସେମାନଙ୍କର ଶୋଷଣ ଥିଲା ଅଧିକ ତୀବ୍ର । ପାଣମାନେ ଦେଶୀୟା ଓ ତେଲଗୁ ଉଭୟ ଭାଷା କହୁଥିଲେ କିନ୍ତୁ କୋୟାମାନଙ୍କ ସହିତ ବୈପାରୀ ଓ ପାଣମାନେ କୋୟା ଭାଷାରେ କଥାବାର୍ତ୍ତା କରୁଥିଲେ । ସରକାରୀ କର୍ମଚାରୀମାନେ କୋୟାମାନଙ୍କୁ ମଧ୍ୟ ଶୋଷଣ କରୁଥିଲେ । ଏମାନଙ୍କୁ ବିଶେଷତଃ ଜଙ୍ଗଲ ବିଭାଗର କର୍ମଚାରୀଙ୍କୁ ଗାରଡ଼ (ଗାଡ଼)ମାନଙ୍କୁ କୋୟାମାନେ ପ୍ରାଣର ଭୟ କରୁଥିଲେ । ସବୁଶ୍ରେଣୀର ସରକାରୀ କର୍ମଚାରୀ ସେମାନଙ୍କ ଦୃଷ୍ଟିରେ ଥିଲେ ପାଇକ ଓ ଓଡ଼ିଆ ଭାଷାକୁ ପାଇକ ମାଟା' (ପାଇକଭାଷା) ବୋଲି କହୁଥିଲେ । ସେମାନେ ସରକାରୀ କର୍ମଚାରୀ ଦେଖିଲେ ଆଡ଼େଇ ଯାଉଥିଲେ ବା ଲୁଚୁଥିଲେ ।

ସ୍କୁଲର ଉପସ୍ଥାନ ଖାତାରେ ସତୁରୀରୁ ଅଧିକ ପିଲାଙ୍କ ନାମ ଥିଲା । କୌଣସି ପିଲା ସ୍କୁଲକୁ ଆସୁନଥିଲେ । ହାରାହାରି ଉପସ୍ଥାନ କୋଡ଼ିଏ ମଧ୍ୟରେ ସୀମିତ ଥିଲା ବେଳେ କାଗଜପତ୍ରରେ ଚାଳିଶ, ପଇଁଚାଳିଶ କରାଯାଉଥିଲା । ସ୍କୁଲକୁ ଆସୁଥିବା ପିଲାମାନଙ୍କ ମଧ୍ୟରେ ବୈପାରୀ ଓ ପାଣମାନଙ୍କ ସଂଖ୍ୟା ଅଧିକ ଥିଲା । ଛାତ୍ରମାନଙ୍କୁ ପୋଷାକ, ପାଠ୍ୟପୁସ୍ତକ ଓ ପାଠ୍ୟୋପକରଣ ଯୋଗାଇ ଦିଆଯାଉଥିଲା । ଏହାଛଡ଼ା ଗ୍ରାମବାସୀଙ୍କୁ ବାଣ୍ଟିବା ପାଇଁ ଜ୍ୱର, ଝାଡ଼ା, ବାନ୍ତି, କାଶ ଆଦି ସାଧାରଣ ରୋଗର ଔଷଧ ସେବାଶ୍ରମରେ ଥିଲା । ଏହା ସତ୍ତ୍ୱେ କୋୟାମାନେ ପିଲାମାନଙ୍କୁ ପାଠପଢ଼ାଇବାକୁ ପଠାଉନଥିଲେ । ପିଲାମାନେ ସେମାନଙ୍କ ବାପମାଆଙ୍କୁ ବିଭିନ୍ନ ସ୍କୁଲରେ ଆଣିବାକୁ ଏକ ଅଦ୍ଭୁତ ଅଭିଯାନର ଆଶ୍ରୟ ନେଉଥିଲେ । କୋୟାମାନେ ସେମାନଙ୍କୁ ଗୋରୁଗାଈଙ୍କୁ ଗାଆଁମୁଣ୍ଡରେ ଅଟେଇ ମଧ୍ୟରେ ରାତିରେ ରଖୁଥିଲେ । ଗୋରୁପଲ ମଝିରେ ଥିବା ମଞ୍ଚାରେ କେତେକ ପୁରୁଷ ଓ ଅଧିକାଂଶ ବାଳକ ଜଗିରହୁଥିଲେ । ଚତୁର ପ୍ରଧାନ ସେବକ ଭୋର ହେବା ପୂର୍ବରୁ ପିଲାମାନଙ୍କ ଏଇ ଆଡ଼୍ଡ଼ା ଉପରେ ସଦଳବଳେ ଚଢ଼ାଉ କରୁଥିଲେ । ଚଢ଼ାଉ ପୂର୍ବଦିନ ରାତିରେ କେତେକ ବିଶ୍ୱସ୍ତ ବୟସ୍କ ଛାତ୍ରଙ୍କୁ ସେବାଶ୍ରମରେ ରାଖାଯାଉଥିଲା । ପ୍ରାୟ ଭୋର ଚାରିଘଣ୍ଟାବେଳେ ଦଉଡ଼ି ଓ ପିଲାମାନଙ୍କୁ ନେଇ ମଞ୍ଚାକୁ ଘେରାଉକରି ପିଲାମାନଙ୍କୁ ବାନ୍ଧି ବିଦ୍ୟାଳୟକୁ ଅଣାଯାଉଥିଲା । ସେମାନଙ୍କର ବାପମାଆ ଖବର ପାଇ କାନ୍ଦି କାନ୍ଦି ଆସି ପିଲାମାନଙ୍କର ମୁକ୍ତି ପ୍ରାର୍ଥନା କରୁଥିଲେ । ପ୍ରଧାନ ସେବକଙ୍କ ସନ୍ତୁଷ୍ଟ କରିବା ପାଇଁ ସାଥିରେ ଚାଉଳ,ଘିଅ,ଅଣ୍ଡା, ତେନ୍ତୁଳି ଓ ମିଳୁଥିବା ପରିବା ଭେଟି ଆଣୁଥିଲେ । କୌଣସି ପିଲା ଉପରେ ଅଧିକ

ଅସନ୍ତୁଷ୍ଟ ହେଲେ କୁକୁଡ଼ା ଉପହାର ମିଳୁଥିଲା । ବସ୍ତୁତଃ ପ୍ରଧାନ ଶିକ୍ଷକଙ୍କ ଏଇ ପନ୍ଥା; ଆୟ, ସମ୍ମାନ ତଥା କୁକୁଡ଼ା ସଂଖ୍ୟା ବଢ଼ାଉଥିଲା । ସେବାଶ୍ରମରେ ନାମଲେଖାଇବା ପାଇଁ ମଧ୍ୟ ଏଇ ପନ୍ଥା ଅନୁସରଣ କରାଯାଉଥିଲା । ଏଠାରେ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିବା ବ୍ୟବସ୍ଥା ଥିଲା । କିନ୍ତୁ ତୃତୀୟ ଶ୍ରେଣୀରେ ପଢୁଥିବା ଅଧିକାଂଶ ପିଲା ଓଡ଼ିଆ ଅକ୍ଷରତକ ଶିଖିନଥିଲେ । ତୃତୀୟ ଶ୍ରେଣୀ ପାଶ୍ କଲେ ନିକଟସ୍ଥ ଆଶ୍ରମ ସ୍କୁଲରେ ରହି ପଢ଼ିବା ସୁବିଧା ସରକାର କରିଥିଲେ । ଏହି ସେବାଶ୍ରମରେ କୌଣସି ଆଦିବାସୀ ପିଲା ଆଶ୍ରମ ସ୍କୁଲ ପର୍ଯ୍ୟନ୍ତ ଯାଇନଥିଲେ । ମୁଁ ଏଇ ସେବାଶ୍ରମରେ ଥିଲାବେଳେ ତୃତୀୟ ଶ୍ରେଣୀରେ ପଢୁଥିବା କୋୟା ବାଳକ କାନି ମାଡ଼କାମି ପରେ ଆଶ୍ରମ ସ୍କୁଲରେ ସପ୍ତମଶ୍ରେଣୀ ପର୍ଯ୍ୟନ୍ତ ପଢି ଟୀକାଦାର ରୂପେ ଦଣ୍ଡକାରଣ୍ୟ ଯୋଜନାରେ ଚାକିରି ପାଇଥିଲା ବୋଲି ପରେ ଶୁଣିଥିଲି ।

ଚାଷଥିଲା ଅଧିବାସିମାନଙ୍କ ମୁଖ୍ୟବୃତ୍ତି । କୋୟମାନେ ଚାଷ ସହିତ ମହୂଲ, ଟୋଲା, (ମହୂଲଫଳ) ବିଭିନ୍ନ କନ୍ଦା, ଶାଗ ଆଦି ବଣରୁ ସଂଗ୍ରହ କରୁଥିଲେ । ସମତଳ ତଥା ଗାଆଁ ତଳ ଉର୍ବର ଜମିକୁ ବୈପାରୀ ଓ ପାଣମାନେ ହସ୍ତଗତ କରିନେଇଥିଲେ । ସେମାନଙ୍କ ଚାଷପ୍ରଣାଳୀ ଥିଲା ଅନୁନ୍ନତ । ବର୍ଷାଋତୁ ଆରମ୍ଭରେ ବୀଜାପାଣ୍ଡୁପରେ ଜମିକୁ ଚାଷ କରି କାଦୁଅ ମାଟିରେ ଧାନଗଜା କରି ଛାଟି ଦେଉଥିଲେ । ରୁଆ, ବେଉଷଣ, ଖେଳୁଆ , ବଛା ଓ ଜମିରେ ଖତ ଲଗାଇବା ସେ ଅଞ୍ଚଳରେ ଅଜଣା ଥିଲା । କୋୟାମାନେ ଗାଈମାନଙ୍କ ଦ୍ୱାରା ମଧ୍ୟ ହଳ କରୁଥିଲେ, ସେମାନେ ଜମି ପାଖରେ ମଞ୍ଚାକରି ଚଢ଼େଇ ଓ ତୃଣଭୋଜୀ ପଶୁଙ୍କ ଦାଉରୁ ଫସଲକୁ ରକ୍ଷା କରନ୍ତି । ଦଣ୍ଡକାରଣ୍ୟ ଯୋଜନା ଫଳରେ ଉଦ୍‌ବାସ୍ତୁ ବଙ୍ଗଳାଦେଶୀଙ୍କ ବସତି ସ୍ଥାପନ ହେବାରୁ ସେ ଅଞ୍ଚଳର ଚାଷ ପ୍ରଣାଳୀରେ ଉନ୍ନତି ଘଟିଛି । ପାଣ ହରିଜନଙ୍କ ପରି ବଙ୍ଗଳାଦେଶୀମାନେ ଆଦିବାସୀଙ୍କୁ ଶୋଷଣ କରିବାରୁ ଏବେ ସାମ୍ପ୍ରଦାୟିକ ଅଶାନ୍ତି ଓ ନକ୍ସଲବାଦୀ ଆନ୍ଦୋଳନ ମୁଣ୍ଡ ଟେକିଛି । ପ୍ରକୃତି ଅନୁକୂଳ ହେଲେ, ରୋଗପୋକ ଦାଉରୁ ଫସଲ ରକ୍ଷାପାଇ ସେମାନେ କିଛି ଶସ୍ୟ ଅମଳ କରନ୍ତି । କିନ୍ତୁ ତାହା କୋୟାମାନଙ୍କ ପାଖରେ ବେଶିଦିନ ରହେନାହିଁ । ସରଳ କୋୟା ଲୁଣମାଣକୁ ଚାଉଳ ମାଣେ, ଚାରିପାଞ୍ଚ ହାତ କନାକୁ ବସ୍ତାଏ ଚାଉଳ ଦେଇ ସର୍ବସାନ୍ତ ହୁଏ । ସାହୁକାରର କରଜ ଦେଢ଼ା ଓ ଦ୍ୱିଗୁଣରେ ଶୁଝେ । ଦଶହରା ବେଳକୁ ଧାନକାଟିବା ଆରମ୍ଭ କରେ । କିନ୍ତୁ ମାଘଶେଷକୁ ଧାନ ଚାଉଳ ଶେଷ ହୋଇଯାଇଥାଏ । ବିଚରା କୋୟା ଧାନ ଅମଳ କରେ କିନ୍ତୁ ବର୍ଷକେ କମ୍ ଦିନ ମୁଠେ ଭାତ ଖାଇବାକୁ ପାଏ । ଭାତ ନୁହେଁ ପେଜ ହିଁ ତାର ମୁଖ୍ୟ ଖାଦ୍ୟ । ମୁଠେ ଦି ମୁଠା ଚାଉଳରେ ହାଣ୍ଡିଏ ପାଣି ଦେଇ ପେଜ ରାନ୍ଧେ । ତାହାକୁ ପରିବାରର ସମସ୍ତେ ବାଣ୍ଟିକୁଣ୍ଟି ପିଅନ୍ତି । ଫଗୁଣ ବେଳକୁ ମହୁଲଫୁଲ ଫୁଟିଲେ କୋୟା ବାପୁଡ଼ାର ଦୁଃଖଯାଏ । ମହୁଲଫୁଲକୁ ସେମାନେ ଖାଦ୍ୟ, ପାନୀୟ (ମଦ୍ୟ) ରୂପେ ବ୍ୟବହାର କରନ୍ତି । ଟୋଲାରୁ (ମହୁଲଫଳ) ପାଆନ୍ତି ଖାଇବା ତେଲ । ପୁଣି ମହୁଲ ଓ ଟୋଲାବିକି ଧାନ ଚାଉଳ ଓ ଲୁଣ କିଣନ୍ତି । ବୈଶାଖ ଝାଞ୍ଜିରେ କୋୟା ପ୍ରାଣ ବଞ୍ଚାଇବାକୁ ଖୋଜି ବୁଲେ ଜଙ୍ଗଲରୁ ଡୁମ୍ବାକନ୍ଦ ଓ ଆଓ୍ୱଲ ଶାଗ ଝରଣାକୂଳରୁ

କେନ୍ଦ୍ରାମୂଳ ।

ସେତବେଳକୁ ଗ୍ରାମଉନ୍ନୟନ ପାଇଁ ଗ୍ରାମସେବକ ବା ସ୍ୱାସ୍ଥ୍ୟ ରକ୍ଷା ପାଇଁ ସ୍ୱାସ୍ଥ୍ୟକର୍ମିମାନଙ୍କୁ ନିଯୁକ୍ତି ଦିଆଯାଇ ନଥିଲା । ସେବାଶ୍ରମର ସେବକମାନଙ୍କ ଉପରେ ନୂନ୍ୟାଧିକେ ଏ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ସେ ଲକ୍ଷ୍ୟ ସମ୍ପୂର୍ଣ୍ଣ ବିଫଳ ହୋଇଯାଇଥିଲା । କୋୟାମାନଙ୍କର ଔଷଧ ଉପରେ ଭରସା ନଥିଲା । ରୋଗ ହେଲେ ଯାଡ଼େର (ଗୁଣିଆ) ଝଡ଼ାଫୁଙ୍କା ଉପରେ ବିଶ୍ୱାସ କରୁଥିଲେ । ଆମେ ବାଧ୍ୟ କରି କେତେକ ପିଲାଙ୍କୁ ଔଷଧ ଖାଇବାକୁ ଦେଇଥିଲୁ । ଗୋଟିଏ ପିଲାର ବାପମାଆ ଏହା ଜାଣି ପିଲାଟିର ସେବାଶ୍ରମକୁ ଆସିବା ବନ୍ଦ କରିଦେଇଥିଲେ । ମାସକପରେ ବହୁକଷ୍ଟରେ ସେ ପିଲାକୁ ସେବାଶ୍ରମକୁ ଆଣିଲୁ । ରୋଗ ହେଲେ କେତେକ ବୈପାରୀ ଓ ପାଣ ଆସି ଔଷଧ ନେଉଥିଲେ ।

କୋୟାମାନେ ନିରୀହ, ଅତିଥିପରାୟଣ, ଧର୍ମଭୀରୁ ଓ ସଂସ୍କୃତିପ୍ରେମୀ । ସେମାନଙ୍କର ସରଳତାର ସୁଯୋଗ ନେଇ ବୈପାରୀ, ପାଣ ଏପରିକି ସରକାରୀ କର୍ମଚାରିମାନେ ବିଭିନ୍ନ ପ୍ରକାରେ ସେମାନଙ୍କୁ ଶୋଷଣ କରୁଥିଲେ । ଅଥଚ କାହାପ୍ରତି ସେମାନଙ୍କର ବିଦ୍ୱେଷ ବା ଆକ୍ରୋଶ ନଥିଲା । ପ୍ରତି ଗ୍ରାମରେ ଏକ ଅତିଥିଶାଳା ଥାଏ । ଗ୍ରାମର ମୁଖିଆ ପେଦା ଓ ଚିନାପେଦା (ସାନପେଦା) ଏହାର ଦାୟିତ୍ୱ ବହନ କରନ୍ତି । ଗାଆଁକୁ କୌଣସି ଅତିଥି (ସେ ସରକାରୀ କର୍ମଚାରୀ ହୁଅନ୍ତୁ ବା ନ ହୁଅନ୍ତୁ) ଆସିଲେ ତାଙ୍କର ସତ୍କାର କରନ୍ତି । ଅତିଥି ନିର୍ବିଶେଷରେ ସେମାନେ ଚାଉଳ,ତେନ୍ତୁଳି, ପରିବା, ଅଣ୍ଡା, ଟୋଲାତେଲ ଆଦି ଯୋଗାଇ ଦିଅନ୍ତି । ଖାକି ପୋଷାକ ପିନ୍ଧା ପୋଲିସ ଓ ଫରେଷ୍ଟ କର୍ମଚାରୀମାନଙ୍କୁ କୁକୁଡ଼ା,ଘିଅ, ଦୁଧ ଆଦି ଯୋଗାଇ ଦିଆଯାଏ । ଅତିଥିଶାଳା ମାନଙ୍କରେ ଶୋଇବା ପାଇଁ ଖଟିଆ ରହିଥାଏ । ଗିରିକାନପଲ୍ଲୀର କୋୟାମାନେ ସେମାନଙ୍କ ପୂଜାପରବରେ ସେବାଶ୍ରମକୁ ଚାଉଳ, ଅଣ୍ଡା, ତେନ୍ତୁଳି, ପରିବା ଘିଅ ପ୍ରଭୃତି ପଠାଉଥିଲେ । ବୈପାରିମାନେ ମଧ୍ୟ ସେମାନଙ୍କ ପର୍ବଦିନରେ ଚାଉଳ, ଗୁଡ଼ ଓ ଘିଅରେ ରନ୍ଧା ମିଷ୍ଟାନ୍ନ ଆମପାଇଁ ପଠାଇଥିଲେ । ଥରେ ମହେଶ୍ୱରବାବୁ ଓ ମୁଁ ଏକ ବୈପାରୀ ଭୋଜିକୁ ନିମନ୍ତ୍ରିତ ହୋଇଥିଲୁ । ସେଠାରେ ଆମକୁ ପ୍ରଥମେ ମହୁଲୀ ମଦ ଦିଆଗଲା । ମୁଁ ଅକ୍ଷମତା ପ୍ରକାଶ କରିବାରୁ ସେମାନଙ୍କର ମୁଖ୍ୟ ବୁଡୁବାବୁ ମୋତେ ପିଇବାକୁ ଅନୁରୋଧ କଲେ । ଟିକିଏ ପରେ ସେ ମହୁଲୀ ଗ୍ଲାସଟିକୁ ମୋ ମୁହଁ ପାଖରେ ଧରିଲେ । ମୁଁ ବାଧ୍ୟହୋଇ ଦୁଇଢୋକ ପିଇବା ମାତ୍ରେ ବାନ୍ତି କରିପକାଇଲି । ସେ ଏହା ଦେଖି ହସି ହସି ବେଦମ ହୋଇପଡ଼ିଲେ । ଆଉ ବାଧ୍ୟ ନ କରିବାରୁ ମୁଁ ରକ୍ଷା ପାଇଗଲି । ଏଥିରେ ଅଭ୍ୟସ୍ତ ମହେଶ୍ୱରବାବୁ ଏକାଦମରେ ଗ୍ଲାସଟା ଖାଲି କରି ଦେଲେ । ପରେ ଆମକୁ ପୂର୍ବବର୍ଣ୍ଣିତ ମିଷ୍ଟାନ୍ନ ଓ ମାଂସ ତରକାରି ପରିବେଷଣ କରାଗଲା । ଛେଳି ଚମଡ଼ାରୁ ରୁମପୋଡ଼ି ଖଣ୍ଡ ଖଣ୍ଡ କରି କାଟି ମାଂସ ସହିତ ମିଶି ତରକାରି ହୋଇଥିବାରୁ ମୁଁ ଘୃଣାରେ ତାହା ଖାଇପାରିଲି ନାହିଁ ।

ଧର୍ମଭୀରୁ କୋୟା ଦେବତାଙ୍କୁ ଅର୍ପଣ ନ କରି ନୂଆଫଳ ବା ଶସ୍ୟକୁ ସ୍ପର୍ଶ କରେ ନାହିଁ । ସେ ଶିମ୍ବପାଣ୍ଡୁ, ଆମ୍ବପାଣ୍ଡୁ (ଚଇତିପାଣ୍ଡୁ), ବୀଜାପାଣ୍ଡୁ (ଧାନବୁଣାପର୍ବ),

ନୂଆଁଖାଇ ଆଦି ପୂଜାପର୍ବ ପାଳନ କରିଥାଏ । ପ୍ରତିବର୍ଷ ତଥା ଅବସର ବିନୋଦନ ପାଇଁ ନାଚଗୀତରେ ମସଗୁଲ ରହେ । ଧେମ୍‌ସା ହିଁ ସେମାନଙ୍କର ପ୍ରିୟନାଚ । କେତେକ ପୁରୁଷ ଗୟଳ ଶିଙ୍ଗ, ମୟୁରଚୂଳ, କଉଡ଼ିରେ ତିଆରି ଟୋପିପିନ୍ଧି ଢ଼ୋଲ ବଜାନ୍ତି । ଅନ୍ୟ ପୁରୁଷ ଓ ସ୍ତ୍ରୀମାନେ ପରସ୍ପରର ଅଣ୍ଟା, ହାତ ସ୍ଥଳ ବିଶେଷରେ କାନ୍ଧ ଧରାଧରି ହୋଇ ନାଚନ୍ତି । ବେଳେ ବେଳେ ସାରାରାତି ସେମାନେ ନାଚନ୍ତି । ଚଇତିପାଣ୍ଡୁ ଓ ବିଜାପାଣ୍ଡୁ ବେଳେ ପୁରୁଷମାନେ ଧନୁଶର ଫାର୍ଶା, ଟାଙ୍ଗିଆ ପ୍ରଭୃତି ଧରି ଶିକାର ବା ବେଣ୍ଟକୁ ଯାଆନ୍ତି । ସମସ୍ତଙ୍କ କାନ୍ଧରେ ଥାଏ ଲାଉତୁମ୍ବା । ଏଇ ତୁମ୍ବାରେ ପେଜ ପାଣି ଭର୍ତ୍ତି ହୋଇଥାଏ । କେହି କେହି କାନ୍ଧରେ ପେଣ୍ଟୁମ ଓହଳାଇ ଥାଆନ୍ତି । ଲାଉ ତୁମ୍ବା ଉପରେ ଜଙ୍ଗଲ ଲଟି ସୁନ୍ଦର ଭାବେ ବୁଣା ହୋଇ ପେଣ୍ଟମ୍ କରାଯାଏ । ଏଥିରେ ପାଣି ଅନେକ ସମୟ ପର୍ଯ୍ୟନ୍ତ ଥଣ୍ଡା ରହେ । ସେବର୍ଷ ବୀଜାପାଣ୍ଡୁର ଶିକାରରୁ ଫେରିବା ଶିଙ୍ଗା ଶବ୍ଦଶୁଣି ମହେଶ୍ୱରବାବୁ ଓ ମୁଁ ଦେଖିବାକୁ ଗଲୁ । ସେତେବେଳକୁ ପ୍ରାୟ ସନ୍ଧ୍ୟା ସାତଟା ହେବ । ଶିକାରରେ ମାରିଥିବା ଗୋଟିଏ ନୀଳ ଗାଇ, ଗୋଟିଏ କୁଟୁରା ଓ ଗୋଟିଲ ଠେକୁଆକୁ ଲମ୍ବା କାଠଖଣ୍ଡରେ ବାନ୍ଧି ଓ କାନ୍ଧେଇ କେତେଜଣ ଆଗରେ ଚାଲିଥାନ୍ତି ପଛରେ ଯେ ଯାହାର ଅସ୍ତ୍ର ଶସ୍ତ୍ର ଧରି ଶିକାରିମାନେ ବୀରଦର୍ପରେ ଯାଉଥାନ୍ତି । ଗାଆଁରେ ଆବାଳ ବୃଦ୍ଧବନୀତା ସେମାନଙ୍କୁ ପାଛୋଟି ନେବାକୁ ରୁଣ୍ଡ ହୋଇଥାନ୍ତି । ଶିକାରିମାନେ ଗାଆଁ ମୁଣ୍ଡରେ ପହଞ୍ଚିବାରୁ ସ୍ତ୍ରୀଲୋକମାନେ ସେମାନଙ୍କୁ ସ୍ୱାଗତ କଲେ । ତାପରେ ନାଚ ଆରମ୍ଭ ହୋଇଗଲା । ଆମେ କିଛି ସମୟ ପରେ ଫେରି ଆସିଲୁ । ଶିକାର ତା ପରଦିନ ବଣ୍ଟା ହେବାହିଁ ବିଧି । ତାପରଦିନ ସେବାଶ୍ରମକୁ କେହି ଆସିନଥିଲେ । ଆମେ ଗାଁମୁଣ୍ଡରେ ପହଞ୍ଚିଲା ବେଳକୁ ମାଂସ କିଛି ବଣ୍ଟା ହୋଇ ସ୍ତ୍ରୀ ଲୋକ ଓ ପିଲାମାନଙ୍କୁ ପାଇଁ ପଠାଯାଇଥିଲା । ଅବଶିଷ୍ଟ ମାଂସ ଛଅ ସାତଟି ବଡ଼ ହାଣ୍ଡିରେ ଶିଝୁଥିଲା । ଟିକିଏ ଶିଝିଗଲାପରେ ହାଣ୍ଡି ଗୁଡ଼ିକୁ ଚୁଲ୍ଲିରୁ ଓହ୍ଲାଗଲା । ପ୍ରତ୍ୟେକ ଠୋଲାରେ ମାଂସ ଶିଝାପାଣି ନେଇ ସମସ୍ତେ ପିଇବାରେ ଲାଗିଲେ । ପୁଣି ଶିଙ୍ଗା ବାଜିଲା । ମହେଶ୍ୱରବାବୁ କହିଲେ ଏହିପରି ତିନିଚାରି ଥର ପିଇଲାପରେ ଯାଇ ମାଂସ ବାଣ୍ଟି ଖାଇବେ । ଆମେ ଆଉ ଅପେକ୍ଷା ନ କରି ଫେରିଆସିଲୁ ।

ଆତ୍ମୀୟ ସ୍ୱଜନଙ୍କ ଠାରୁ ଶହ ଶହ ମାଇଲ ଦୂରରେ ଜଙ୍ଗଲ ମଧ୍ୟରେ ରହିବା ଥିଲା ଅତୀବ କଷ୍ଟଦାୟକ । ପୁଣି ବଡ଼ଭାଇଙ୍କ ପାଖକୁ ଅର୍ଥାତ୍ ସିକ୍‌ପାଲ୍ଲୀ ଯିବା ବର୍ଷାଦିନେ ସମ୍ଭବ ନ ଥିଲା । କାରଣ ସଡ଼କ ପଥରେ ସିକ୍‌ପାଲ୍ଲୀ ଗିରିକାନପାଲ୍ଲୀ ଠାରୁ ପ୍ରାୟ ଅଢ଼ତିରିଶ ମାଇଲ । ନଈନାଳ ମାନଙ୍କରେ ବ୍ରିଜ୍ ନଥିଲା । ନଈମାନଙ୍କୁ ଡ଼ଙ୍ଗାରେ ପାରିହେବା ସହଜ ନଥିଲା । ପାହାଡ଼ିଆ ଖରସ୍ରୋତା ନଦୀଗୁଡ଼ିକ ହଠାତ୍ ଜଳପୂର୍ଣ୍ଣ ହୋଇଯାଉଥିଲା । ମୁଁ ଓ ମହେଶ୍ୱରବାବୁ ପ୍ରାୟ ପ୍ରତିଦିନ ନଈଆରପଟକୁ ଝାଡ଼ାଫେରି ଯାଉ । ପାଣିଥିଲାବେଳେ ଡ଼ଙ୍ଗା ନେଇଯାଉ । ସେଠାରେ ଡ଼ଙ୍ଗା ସବୁ ଅତ୍ୟନ୍ତ ଛୋଟ ଓ ଅଣ ଓସାରିଆ । ଅଧିକାଂଶ ଡ଼ଙ୍ଗାର ଲମ୍ବ ପ୍ରାୟ ଆଠ କି ନଅଫୁଟ ହେବ । ଏହାର ଓସାର ପନ୍ଦର ଇଞ୍ଚରୁ ଦେଢ଼ଫୁଟ ମଧ୍ୟରେ ସୀମିତ । ଖଣ୍ଡିଏ କାଠକୁ ଖୋଳାଯାଇ ତିଆରି ହୋଇଥିବା ଏଇ ଡ଼ଙ୍ଗା ମହେଶ୍ୱର ବାବୁ ଚଳାଇ ଜାଣିଥିଲେ । ଥରେ ଆମେ

ନଦୀ ଆରପାରିକୁ ଯାଇଥାଉ । ନଈଟା ଶୁଖିଲା ଥିବାରୁ ଡ଼ଙ୍ଗା ନେଇ ନଥାଉ । ଆମେ ଝାଡ଼ା ଝପଟ୍ ସାରି ଫେରିଲା ବେଳକୁ ବହୁତ କାଙ୍କଡ଼ ଫଳି ଥିବାର ଦେଖି ତୋଳି ଲାଗିଲୁ । ଫେରିଲା ବେଳକୁ ନଈଟା ପାଣିରେ ପୂର୍ଣ୍ଣ । ଆମକୁ ପ୍ରାୟ ଘଣ୍ଟାଏ ଅପେକ୍ଷା କରିବାକୁ ପଡ଼ିଲା । ପାଣି କମିଯିବା ପରେ ବାଡ଼ିଢ଼େରା ମାରି ମୁହଁ ସଞ୍ଜବେଳକୁ ସେବାଶ୍ରମକୁ ଫେରିଲୁ । ସିକ୍‌ପାଲ୍ଲୀ ଯିବାକୁ ହେଲେ ପାଟେରୁ ନଦୀକୁ ଦୁଇ ଜାଗାରେ ପାରିହେବାକୁ ପଡ଼େ । ସବୁବେଳେ ନାଉରି ଘାଟରେ ନଥାଏ । କେବଳ ଟପା (ଡ଼ାକ ବୋହୁଥିବାର ନର) ଯିବା ଆସିବା ବେଳେ ଘାଟରୁଳେ ।

ସିକ୍‌ପାଲ୍ଲୀ ହାଟକୁ ସିଧାରାସ୍ତା ଥିଲା । ସେ ପଥରେ ଦୂରତା ଚବିଶ, ପଚିଶ ମାଇଲ ହେବ । ମୁଁ ଦଶହରା ଛୁଟିରେ ଜଣେ ବୈପାରୀ ସହିତ ଭାଇଙ୍କ ନିକଟକୁ ଯାଇଥିଲି । ମାତ୍ର ଦୁଇଦିନ ରହି ମୋତେ ଫେରିବାକୁ ହୋଇଥିଲା । କାରଣ ସେ ଲୋକ ଜଣକ ଅଧିକ ଦିନ ରହିବାକୁ ରାଜି ହୋଇନଥିଲା ।

ଛଅମାସ ପର୍ଯ୍ୟନ୍ତ ସ୍ଥାୟୀ ନିଯୁକ୍ତି ପତ୍ର ମିଳିନଥିଲା । ମୋର ଶିକ୍ଷାଗତ ପ୍ରମାଣ ପତ୍ରରେ ଜନ୍ମ ତାରିଖ ହେଉଛି – ୧.୮.୧୯୪୦ । ଏଣୁ ସେବକ ରୂପେ ଯୋଗଦେଲା ବେଳକୁ ଅଠରବର୍ଷ ହେଉନଥିଲା ଯାହାହିଁ ସରକାରୀ ଋକିରିରେ ପ୍ରବେଶ କରିବା ପାଇଁ ସର୍ବନିମ୍ନ ବୟସ । ଯାହାହେଉ ତତ୍‌କାଳୀନ କୋରାପୁଟ କଲେକ୍ଟର ଶ୍ରୀଯୁକ୍ତ କାଳୀକିଙ୍କର ସାମଲ ତାଙ୍କର ସ୍ୱତନ୍ତ୍ର କ୍ଷମତା ବଳରେ ମୋର ବୟସକୁ କୋହଳ କରି ନିଯୁକ୍ତି ପତ୍ର ପଠାଇଲେ । ସ୍ଥାୟୀ ନିଯୁକ୍ତିପତ୍ର ପାଇବାର ଆଠ, ଦଶ ଦିନପରେ ପାଞ୍ଚମାସର ଦରମା ୨୫୫ଟଙ୍କା ଡ଼ାକ ଯୋଗେ ପାଇଲି । ସେତେବେଳେ ସେବକମାନଙ୍କର ଦରମା ଥିଲା ୪୬ଟଙ୍କା ତାହା ପ୍ରାଥମିକ ଶିକ୍ଷକମାନଙ୍କ ଦରମାରୁ ୬ଟଙ୍କା ଅଧିକ ଥିଲା । କୋରାପୁଟରେ କାମ କରୁଥିବା ସରକାରୀ କର୍ମଋରୀମାନଙ୍କୁ ୫ଟଙ୍କା ମାଳ ଅଞ୍ଚଳ ଭତ୍ତା । ସ୍ୱତନ୍ତ୍ର ରୂପେ ମିଳୁଥିଲା । ପ୍ରଥମ ଦରମା ପାଇବାପରେ ବାପାଙ୍କ ନିକଟକୁ ୨୦୦ଟଙ୍କା ମନିଅଡ଼ର ଯୋଗେ ପଠାଇଲି ମୋର ଦେହଭଲ ରହୁ ନଥାଏ । ମୁଣ୍ଡରେ ଗୋଛାଏ ବାଳ । ଅଧିକାଂଶ ସମୟ ଜ୍ୱର, କାଶ ଓ ଥଣ୍ଡା ଲାଗି ରହିଥାଏ । ବାଳ କାଟିବା ଏକ ସମସ୍ୟା ଥିଲା । ଏଥିପାଇଁ ବେଳେ ବେଳେ ବାରମାଇଲ ଦୂର କାଲିମେଲା ଯାଇ ବାରିକ ନପାଇ ଫେରି ଆସିବାକୁ ହେଉଥିଲା । ଖଣ୍ଡେ ଚିଠି ପଠାଇବାକୁ ମଧ କାଲିମେଲା ଯିବାକୁ ପଡୁଥିଲା । ପହିଲି ଆଷାଢ଼ରେ ଜଣେ ବୈପାରୀ ଛାତ୍ରକୁ ନେଇ କାଲିମେଲା ଯାଇଥିଲି । ସମବାୟ ଷ୍ଟୋରରୁ ଆବଶ୍ୟକ ଜିନିଷ କିଣି ଫେରି ଦେଖିଲୁ ନଈରେ ପାଣିସୁଅ ଋଲିଛି । ମୁଁ ଓ ପିଲାଟି କେତେ ସମୟ ଅପେକ୍ଷା କରିଥିଲେ ହୋଇଥାନ୍ତା । କିନ୍ତୁ ସେତେବେଳକୁ ସନ୍ଧ୍ୟା ଆସନ୍ନ । ଆମେ ଦେଖିଲୁ ଆମର ପଋଶଫୁଟ ଆଗରେ ଦୁଇଜଣ ନଦୀ ପାରି ହେଉଛନ୍ତି । ଆମେ ସେ ଦୁହିଁଙ୍କୁ ଲକ୍ଷ୍ୟ କରି ପଛେ ପଛେ ଋଲିଲୁ । ପିଲାଟି ଆଗେ ଆଗେ ଋଲିଥାଏ । କିଛିଦୂର ଯିବାପରେ ପିଲାଟିର ଗୋଡ଼ ଖସି, ଖରାଦିନିଆ ସଡ଼କ ଖାଲରେ ପଡ଼ି ସୁଅରେ ଭାସିବାକୁ ଲାଗିଲା । ମୁଁ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଭଗବାନଙ୍କୁ ଡ଼ାକିଲି – "ନିରାଶ୍ରୟ ମାଂ ଜଗଦୀଶ ରକ୍ଷ" ଯୋଗକୁ ପାଖରେ ଭାସିଯାଉଥିବା ଲମ୍ବା ଡ଼ାଳକୁ ବଢ଼ାଇ ପିଲାକୁ ଧରିବାକୁ କହିଲି ଓ

ସେ ଧରିବା ପରେ ଡ଼ାଳଟିକୁ ମୋ ଆଡ଼କୁ ଟାଣି ଆଣିଲି । ଦୁହେଁ ପାଖରେ ଅଧାବୁଡ଼ା ବଡ଼ପଥର ଉପରେ ଚଢ଼ି ବଡ଼ପାଟିରେ ଡ଼ାକ ପକାଇଲୁ । ଆମ ପାଟି ଶୁଣି ଆଗରେ ଚାଲୁଥିବା ଲୋକ ଦୁହେଁ ଫେରି ଆସିଲେ । ସେମାନେ ଆମକୁ ସାଥିରେ ନେଇ ନଈ ପାରି କରାଇଦେଲେ । ପିଲାଟି ଧରିଥିବା ଜିନିଷପତ୍ର ସଂପୂର୍ଣ୍ଣ ଓଦା ହୋଇଯାଇଥିଲା । ମୁଁ ସେଥିପ୍ରତି ନଜର ନଦେଇ ଭଗବାନଙ୍କୁ ଡ଼ାକି ଲାଗିଲି ଆମେ ପ୍ରାୟ ସନ୍ଧ୍ୟା ସାତଟା ବେଳକୁ ସେବାଶ୍ରମରେ ପହଞ୍ଚିଲୁ ।

ମୋର ଅସୁସ୍ଥତା ବଢ଼ିଲାଗିଲା । ଏଣୁ ଡ଼ିସେମ୍ବର ୧୨ ତାରିଖରେ ଗିରିକାନପାଲ୍ଲୀ ଛାଡ଼ି ଗାଆଁ ଅଭିମୁଖେ ଚାଲିଲି । ବାଟରେ ସିକ୍‌ପାଲ୍ଲୀଠାରେ ଭାଇଙ୍କୁ ଦେଖାକରି ମାଲକାନଗିରିଠାରୁ ବସ ଧରିଲି । ମୁଁ ଆଉ କୋରାପୁଟ ଫେରିଲି ନାହିଁ । ଚାକିରି ଅନ୍ୱେଷଣରେ ମାଲକାନଗିରି ଯାତ୍ରା କରିବାର ଦୁଇମାସ ପୂର୍ବରୁ ପୁରୀ ଜିଲ୍ଲାବୋର୍ଡ଼ ଓ ଲୋକାଲ ବୋର୍ଡ଼ର ପ୍ରାଥମିକ ଶିକ୍ଷକ ପଦ ପାଇଁ ଲିଖିତ ପରୀକ୍ଷା ଦେଇଥିଲି । ଗାଆଁରେ ଆସି ପହଞ୍ଚିବାର ପାଞ୍ଚଦିନପରେ ଲୋକାଲ ବୋର୍ଡ଼ରୁ ଏକ ନିଯୁକ୍ତି ପତ୍ର ପାଇଲୁ ନୂଆ ପଦବୀରେ ଯୋଗଦେବା ପାଇଁ ପୁରୀ ଦେଇ ବ୍ରହ୍ମଗିରି ଯାତ୍ରା କଲି କାରଣ ବ୍ରହ୍ମଗିରି ସର୍କଲର ଏକ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ମୋତେ ନିଯୁକ୍ତି ମିଳିଥିଲା । କିନ୍ତୁ ପୁରୀଠାରେ ଖବର ପାଇଲି ଜିଲ୍ଲା ବୋର୍ଡ଼ ପକ୍ଷରୁ ଏକ ନିଯୁକ୍ତି ପତ୍ର ଗାଆଁକୁ ପଠାଯାଇଛି । ସେହି ନିଯୁକ୍ତି ପତ୍ରରେ ନିମାପଡ଼ା ଥାନା ବଳଙ୍ଗା ସର୍କଲ ଅଧୀନ ନୂଆସନ୍ଥ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ରୂପେ ଯୋଗ ଦେବାକୁ ନିର୍ଦ୍ଦେଶ ଥିଲା । ନୂଆସନ୍ଥ ମୋର ଗ୍ରାମର ଅପେକ୍ଷାକୃତ ନିକଟରେ ପୁଣି ଏହା ଉଚ୍ଚ ପ୍ରାଥମିକ ବିଦ୍ୟାଳୟ । ଧାନକଟା ଛୁଟି ପରେ ଉକ୍ତ ବିଦ୍ୟାଳୟରେ ଯୋଗଦେଲି ।

ମୋର ମାଲକାନ୍‌ଗିରିର ଦୁର୍ଗମ ଅଞ୍ଚଳରେ ସେବକ ଜୀବନ ମାତ୍ର ନଅମାସ ଆଠଦିନ ମଧ୍ୟରେ ସୀମିତ । ମୁଁ ପରେ ବିଭିନ୍ନ ଅବସରରେ ଚାରିଥର ଅବିଭକ୍ତ କୋରାପୁଟ ଜିଲ୍ଲାକୁ (ମାଟିଲି, ନନ୍ଦପୁର, କୁନ୍ଦା ଓ କୋରାପୁଟ ସହର) ଯାଇଛି । କିନ୍ତୁ ଇଚ୍ଛାସତ୍ତ୍ୱେ ମାଲକାନ୍‌ଗିରି କାଲିମେଲା ଆଦି ଉପାନ୍ତ ଅଞ୍ଚଳକୁ ଯିବା ସମ୍ଭବପର ହୋଇନାହିଁ । ମୁଁ ଗିରିକାନପଲ୍ଲୀ ଛାଡ଼ିବା ୫୦ବର୍ଷରୁ ଅଧିକ ହେଲାଣି । ଗ୍ରାମଗୋଷ୍ଠୀ ଯୋଜନା ଓ ଦଣ୍ଡାକାରଣ୍ୟ ଯୋଜନାର ରୂପାୟଣ, ଶରଣାର୍ଥୀ ବସତି ସ୍ଥାପନ, ମାଲକାନଗିରିକୁ ଏକ ସ୍ୱତନ୍ତ୍ର ଜିଲ୍ଲାରେ ପରିବର୍ତ୍ତନ , ସର୍ବୋପରି କେ.ବି.କେ ଜିଲ୍ଲା ଗୁଡ଼ିକର ଉନ୍ନୟନ ପାଇଁ କେନ୍ଦ୍ର ସରକାର ତଥା ରାଜ୍ୟ ସରକାରଙ୍କୁ ସ୍ୱତନ୍ତ୍ର ଧ୍ୟାନ ଦେବାପରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟିବା ସ୍ୱାଭାବିକ । ସେହି ଅଞ୍ଚଳରେ ଉନ୍ନୟନ ସହିତ କେତେକ ସ୍ୱାର୍ଥକେନ୍ଦ୍ରିକ ସଂଘର୍ଷ ଘଟି ନୂଆ ନୂଆ ସମସ୍ୟା ସୃଷ୍ଟି ହୋଇଛି । ଏଇ ପରିବର୍ତ୍ତିତ ମାଲକାନଗିରି ଅଞ୍ଚଳର ଦର୍ଶନ ପାଇଁ ବଳବତ୍ତୀ ଇଚ୍ଛାଥିଲେ ବି ତାହା ସମ୍ଭବ ହୋଇ ପାରିନାହିଁ । ଗିରିକାନପାଲ୍ଲୀ ସେବାଶ୍ରମ ସେବକ ଜୀବନରୁ ମୋ ଶିକ୍ଷକ ଜୀବନର ଆୟମାରମ୍ଭ ପ୍ରଥମ ପ୍ରଣୟ ପରି ପ୍ରଥମବୃତ୍ତି ହିଁ ମଣିଷ ପକ୍ଷରେ ସ୍ମରଣୀୟ । ମୋର ଦେହଭଲ ନରହୁଥିବା ଖବର ମୁଁ ଗାଆଁକୁ ଜଣାଉନଥିଲି । ବୋଉ ଭାଇଙ୍କ ଚିଠିରୁ ଏ ଖବର ପାଇ ବ୍ୟତିବ୍ୟସ୍ତ ହୋଇ ପଡ଼ିଥିଲା । ବାପା ସତ୍ୟାନନ୍ଦ ଅବଧାନ

(ଜ୍ୟୋତିଷଙ୍କୁ) ଡ଼ାକି ଜାତକ ଦେଖାଇଲେ । ଅବଧାନ ଗଣନା କରି କହିଲେ "ଲକ୍ଷ୍ମଣବାବୁଙ୍କର (ଜାତକରେ ମୋର ନାମ ଲକ୍ଷ୍ମଣ) ବନବାସ ଯୋଗଥିଲା । ଏଇ ଧନୁସଂକ୍ରାନ୍ତିରୁ ରାଜଯୋଗ ପଡ଼ିବ ।" ଜ୍ୟୋତିଷଙ୍କ କଥା ସତ୍ୟ ହେଲା । କିନ୍ତୁ ଏଇ ବନବାସଯୋଗ ମୋ ପାଇଁ ଅଭୁଲା ଅନୁଭୂତି ହୋଇ ରହିଛି ଓ ରହିଥିବ ।



# ଉପେନ୍ଦ୍ରଙ୍କ କାବ୍ୟ ଶିଳ୍ପରେ ସମାଜ ଚେତନା

କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ଏକ କାଳଜୟୀ ପ୍ରତିଭା । ତାଙ୍କର କଳ୍ପନା ଖଚାତୁରୀ ଶବ୍ଦକାରିଗରୀ,ପାଣ୍ଡିତ୍ୟ, ବହୁଶାସ୍ତ୍ରଦର୍ଶିତା ଅନନ୍ୟ ମଧ୍ୟଯୁଗୀୟ ଓଡ଼ିଆ ଭାଷା-ସାହିତ୍ୟର ଦିଶାରୀ ରୂପେ ସେ ସର୍ବମାନ୍ୟ । ତାଙ୍କର କାବ୍ୟିକ ତଥା ସାଙ୍ଗିତିକ ଅବଦାନ ପାଇଁ ସେ ଏଯାବତ୍ ଓଡ଼ିଆ ହୃଦୟରେ ଅସପନ୍ନ ସାମ୍ରାଜ୍ୟ ବିସ୍ତାର କରି ଆସିଛନ୍ତି ।

କାବ୍ୟ ପୁରୁଷ ପ୍ରଚଣ୍ଡ ସ୍ୱାଭିମାନ ଓ ସ୍ୱଦ୍ଧିତ ମନୋଭାବ ନେଇ ସ୍ୱ ମାତୃଭାଷାକୁ ସଂସ୍କୃତ ସମସ୍କନ୍ଧ କରିବାକୁ ଲେଖନୀ ଚଳାଇଥିଲେ । ଏଥିପାଇଁ ସଂସ୍କୃତ କାବ୍ୟାଲଙ୍କାର ତାଙ୍କର ଆଦର୍ଶହେବା ସ୍ୱାଭାବିକ । ସେ ଏହି ଅଭିଯାତ୍ରାରେ ବହୁଭାବେ ସଫଳ ହୋଇଥିଲେ ଏଥିରେ ଦ୍ୱିମତର ଅବକାଶ ନାହିଁ । ଏତଦ୍‌ବ୍ୟତୀତ ଉପେନ୍ଦ୍ର ଜଣେ ସ୍ୱପ୍ନଚାରୀ କବି, ତାଙ୍କ ଜୀବନ ଚେତନା ଅସଂପୂର୍ଣ୍ଣ, ଭଞ୍ଜ ସାହିତ୍ୟ କେବଳ ନାରୀ ଓ ଡିକ୍ୱିନାରୀକୁ ନେଇ ଗତିଶୀଳ, ତାଙ୍କ ସାହିତ୍ୟରେ ତତ୍‌କାଳୀନ ସମାଜର ଯଥାର୍ଥ ପ୍ରତିଫଳନ ନାହିଁ ଆଦି ସମାଲୋଚନାରେ ଶରବ୍ୟ ।

ସମକାଳୀନ ସମାଜର ପ୍ରତିଛବି ପ୍ରତିଫଳିତ ହେଲେ ଯେ ଉଚ୍ଚାଙ୍ଗ ସାହିତ୍ୟ ହେବ, ଏହା ଆଧୁନିକ କାଳର ବିଚାର । ବିଶ୍ୱବିଶ୍ରୁତ କବି ବାଲ୍ମୀକି, ବ୍ୟାସ, କାଳିଦାସ, ଭବଭୂତି, ହୋମର, ସେକ୍‌ସପିଅର୍, ଦାନ୍ତେ ପ୍ରଭୃତିଙ୍କ ରଚନା ଏ ଦୃଷ୍ଟିରୁ ଆଲୋଚକମାନେ ପ୍ରାୟ ଆଲୋଚନା କରିନଥାନ୍ତି । ସ୍ରଷ୍ଟାର ଯଥାର୍ଥ ମୂଲ୍ୟାୟନ ପରମ୍ପରା, ପରିବେଶ ଓ ପୁରୋଦୃଷ୍ଟିରେ ଭିତ୍ତିରେ ହେବା ସମୀଚୀନ । କାରଣ ପରମ୍ପରା ଅତୀତର ପ୍ରଖ୍ୟାପକ, ପରିବେଶ ବର୍ତ୍ତମାନର ପ୍ରକାଶକ ଏବଂ ପୁରୋଦୃଷ୍ଟି ଭବିଷ୍ୟତର ନିୟାମକ ।

ଉପେନ୍ଦ୍ର ପରାଧୀନ ଦେଶର କବି । ତାଙ୍କ ଜନ୍ମପୂର୍ବରୁ ଓଡ଼ିଶାର ଗୌରବ ରବି ଅସ୍ତମିତି, ଦେଶବାସୀ ଅତ୍ୟାଚାରୀ ବିର୍ଧର୍ମୀ ମୋଗଲ ମୁସଲମାନ ଶାସନରେ ଜର୍ଜରିତ । କ୍ଷୁଦ୍ର କ୍ଷୁଦ୍ର ଅଞ୍ଚଳକୁ ନେଇ ରାଜା ବୋଲାଉଥିବା କରଦ ରାଜାମାନେ ମୋଗଲ ଯୁଗୀୟ ଭୋଗବିଳାସ ଓ ଅତ୍ୟାଚାରରେ ଲିପ୍ତରହି ପରାଧୀନତାର ଗ୍ଲାନି ଭୁଲିବାକୁ ଚେଷ୍ଟିତ । ଯୌନ ବ୍ୟଭିଚାର, ସନ୍ଦେହ, ଅବିଶ୍ୱାସ, ଚକ୍ରାନ୍ତ ଓ ରକ୍ତପାତ ମଧ୍ୟରେ ରାଜଅନ୍ତଃପୁର ପର୍ଯ୍ୟୁଷିତ । ଏପରି ଏକ ପତନଶୀଳ ରାଜପରିବାରରେ ଉପେନ୍ଦ୍ରଙ୍କ ଜନ୍ମ । ଭାଗ୍ୟ ବିଡମ୍ବନାରେ ରାଜ୍ୟଚ୍ୟୁତ ପିତା ନୀଳକଣ୍ଠଙ୍କ ସହ ସେ ହୋଇଛନ୍ତି ନିର୍ବାସିତ । ପୁଣି ତାଙ୍କ ଅନ୍ତର ହୋଇଛି ପତ୍ନୀବିୟୋଗ ବେଦନାରେ ବାରମ୍ବାର ରକ୍ତାକ୍ତ । ଏହି ପଙ୍କିଳ ଓ ଦୁଃଖଦ ପରିବୃତ୍ତରୁ ନିଜକୁ ଦୂରେଇ ସେ ବାଣୀ ଆରାଧନାରେ ନିମଗ୍ନ ଥିଲେ । ଏହି ଦରବାରୀ ପରିବେଶ କିଶୋର ଓ ଯୁବକ ଉପେନ୍ଦ୍ରଙ୍କ ଚେତନ ତଥା ଅବଚେତନ ମନକୁ ପ୍ରଭାବିତ କରିବା ଥିଲା ମଧ୍ୟ ସ୍ୱାଭାବିକ । ଘୁମୁସର ରାଜ୍ୟର କୁତ୍ସିତ ପରିବେଶ ମଧ୍ୟରେ ଏକମାତ୍ର ଆନନ୍ଦମୟ ପରିବୃତ୍ତ ଥିଲା, ତାହା

ହେଉଛି ପିତାମହ ଧନଞ୍ଜୟଙ୍କ କାବ୍ୟ ସାଧନା ଏବଂ ତାଙ୍କ ରାଜସଭାରେ ସାହିତ୍ୟ ଚର୍ଚ୍ଚାକୁ ପ୍ରୋତ୍ସାହନ । ଉପେନ୍ଦ୍ର ଏହାର ପ୍ରଭାବରେ ଅଳ୍ପବୟସରୁ ବାଣୀ ଆରାଧନାରେ ମନୋନିବେଶ କରିଥିଲେ ।

ଇତି ପୂର୍ବରୁ ସଂସ୍କୃତ ପଣ୍ଡିତମାନଙ୍କ ସମାଲୋଚନା ଓ କୁତ୍ସାରଟନା ସତ୍ତ୍ୱେ ଧର୍ମଭିତ୍ତିକ ପୁରାଣକାବ୍ୟ ରଚିତ ହୋଇଥିଲା । ଶୂଦ୍ରବୋଲି ସାରଳା, ବଳରାମ ସମାଲୋଚିତ ହେଲେ । ବିପ୍ରଜଗନ୍ନାଥ ମଧ୍ୟ ସେଥିରୁ ବାଦ ପଡ଼ିନଥିଲେ । ସରଳ ସାବଲୀଳ ଓ ଭାବ ଗମ୍ଭୀରତାପୂର୍ଣ୍ଣ ଭାଗବତ 'ତେଲୀ ଭାଗବତ' ନାମରେ ଆଖ୍ୟାତ ହୋଇଥିଲା । ତଥାପି ମାତୃଭାଷା ପ୍ରେମୀ କବିମାନେ ପୁରାଣ କାବ୍ୟ ରଚନା କରି ଚାଲିଲେ । ଅର୍ଜୁନ ଦାସ, ଶିଶୁ ଶଙ୍କର, ବିଷ୍ଣୁ ଦାସ, ନରସିଂହ ସେଣ ପ୍ରଭୃତିଙ୍କ କାବ୍ୟ ନିଚୟକୁ ସଂସ୍କୃତ ଷଟ୍‌କାବ୍ୟ ସହ ସମାନୁହେଁ ବୋଲି ପଣ୍ଡିତ ବର୍ଗ ଆକ୍ଷେପ କରି ଲାଗିଲେ । ସେମାନଙ୍କ ଦୃଷ୍ଟିରେ -- "ଅମରୀ ଚାମରୀ ଭାତି ପୁଣ୍ୟବନେ କଦାକ୍ୱଚିତ/ ଇୟତ୍ତୁ ପାମରୀ ଭାଷା ଶୂକରିବ ଗୃହେ ଗୃହେ" ଅର୍ଥାତ୍ ଚମରୀ ମୃଗପରି ଦେବଭାଷାରେ (ସଂସ୍କୃତ) ରଚିତକାବ୍ୟ ପୁଣ୍ୟବନରେ କଦବା କେଉଁଠି ଦେଖାଯାଏ । କିନ୍ତୁ ଶୂକର ସଦୃଶ ପାମରୀ ଭାଷା(ଲୋକଭାଷା) ଘରେ ଘରେ ପରିଦୃଷ୍ଟ । ପଣ୍ଡିତ ମଣ୍ଡଳୀ ବସ୍ତୁତଃ ମାତୃଭାଷା ବିରୋଧୀ ହେଲେ ଏବଂ ଓଡ୍ର ଭାଷାରେ ସଂସ୍କୃତ ଅନୁରୂପ କାବ୍ୟ ରଚନା ସମ୍ଭବ ନୁହେଁ ବୋଲି ଦମ୍ଭୋକ୍ତି ପ୍ରକାଶ କରିଥିଲେ । କବି ଉପେନ୍ଦ୍ର ଶୃଙ୍ଗାରରସପୂର୍ଣ୍ଣ କାବ୍ୟ, ଗୀତିକାବ୍ୟ, କୋଷ ଓ ରସଗ୍ରନ୍ଥମାନ ଲେଖି ପ୍ରୋକ୍ତ ଆହ୍ୱାନର ମୁହଁଫୋଡ଼ ଜବାବ ଦେଲେ । ସେ ସବୁର ବିଶଦ ଆଲୋଚନା ଏଠାରେ ଅପ୍ରାସଙ୍ଗିକ ।

ଭୂୟୋଦର୍ଶୀକବି ତତ୍‌କାଳୀନ ଅଧଃପତିତ ଅବକ୍ଷୟୀ ସମାଜକୁ ଦେଖି ମର୍ମାହତ ହୋଇଥିବେ ନିଶ୍ଚିତ । କିନ୍ତୁ ସେହି ସମାଜର ବାସ୍ତବ ଚିତ୍ର ପ୍ରଦାନ କରିବାର ଅବକାଶ ନଥିଲା । ଅଳଙ୍କାର ଶାସ୍ତ୍ର ଅନୁସରଣରେ ସାହିତ୍ୟ ମୂଲ୍ୟାୟନ କରୁଥିବା ରାଜସଭାର ପଣ୍ଡିତ ମଣ୍ଡଳୀଙ୍କ ରୁଚି ଅନୁସାରେ ପାତ୍ରପାତ୍ରୀ, ଘଟନାବିନ୍ୟାସ, ବର୍ଣ୍ଣନା ଚାତୁରୀ ପାରମ୍ପରିକ ହେବା ଅବଶ୍ୟମ୍ଭାବୀ । ସେ ପୁରାଣ ବର୍ଣ୍ଣିତ ଦେବ ଦେବୀ, ରାଜକୁମାର, କୁମାରୀଙ୍କୁ ନେଇ ଶୃଙ୍ଗାରାଶ୍ରୟୀ କାବ୍ୟ ଲେଖିବାକୁ ସମ୍ଭବତଃ ବାଧ୍ୟ ହୋଇଥିଲେ ।

ମହର୍ଷି ବାତ୍ସାୟନଙ୍କ ଅନୁଗାମୀ ସ୍ରଷ୍ଟା ପୁରୁଷ ବୋଧହୁଏ ମର୍ମେ ମର୍ମେ ଅନୁଭବ କରିଥିଲେ ଆଦର୍ଶ ଦାମ୍ପତ୍ୟ ଜୀବନ ସୁସ୍ଥ ସମାଜ ଗଠନର ମେରୁଦଣ୍ଡ । ଜୀବନ ବୃତ୍ତିରେ(Life force) ଯୌନ ପ୍ରବୃତ୍ତି(Sexual instrinct) ସବୁଠାରୁ ମୌଳିକ ଓ ଶକ୍ତିଶାଳୀ । କବିତାର କଳାଚେତନାରେ ଓ କଳ୍ପନାରେ ଏହାକୁ କବି ଆତ୍ମନିଷ୍ଠ ଅଭିବ୍ୟକ୍ତି ପ୍ରଦାନ କରିଥାଏ । ଲରେନ୍ସ କହନ୍ତି କବି ଅସଲ ସୌନ୍ଦର୍ଯ୍ୟ ଦେଖେ ନାରୀ ପୁରୁଷର ମିଳନରେ । ଜୀବନଠାରୁ ଜୈବିକ ଚେତନାକୁ ଯେପରି ପୃଥକ କରାଯାଇ ପାରେନା, ଯୌନ ମିଳନ ଠାରୁ ସୌନ୍ଦର୍ଯ୍ୟକୁ ସେପ୍ରରି ପୃଥକ କରିବା ଅସମ୍ଭବ (Sex and beauty are insefeparable) ଉପେନ୍ଦ୍ର ଯୌନ ଜୀବନ ର ସବୁଠାରୁ ପ୍ରାଣବନ୍ତ ଗତିଧାରାକୁ (Strongest urge) ଅନୁଭବ କରିଥିଲେ । କାମ (eros ) ଜୀବନରେ

ସବୁଠାରୁ ଶକ୍ତିଶଳୀ ସହଜ ପ୍ରବୃତ୍ତି । ଭାରତୀୟ ସଂସ୍କୃତିରେ ଧର୍ମପରି ଏହା ଏକ ପୁରୁଷାର୍ଥ । ରସବାଦୀ ଆଳଙ୍କାରିକ ଓ କାମଶାସ୍ତ୍ରବିଦ୍ ମହର୍ଷିବାତ୍ସାୟନ ଏହା ସ୍ୱୀକାର କରିଯାଇଛନ୍ତି । ବିଶ୍ୱର ପ୍ରତିଜାତିର ଆଧ୍ୟାତ୍ମିକ ଚେତନାରେ କାମ(Sex) ନାନା ସଂକେତରେ ପ୍ରତିବଦ୍ଧ ଅଭିବ୍ୟକ୍ତ ଲାଭ କରିଛି

କବି ଉପେନ୍ଦ୍ର ନରନାରୀଙ୍କ କାଞ୍ଚାଯୌନ ଜୀବନର ଛବିକୁ ଅନ୍ୟ ବୈଷ୍ଣବ କବିଙ୍କ ପରି ତୁଳସୀପତ୍ର ପକାଇ ଅପ୍ରାକୃତିକ ପ୍ରେମ ବୋଲି ଅଭିହିତ କରିନାହାନ୍ତି । ସେ ଏକ ନିଷ୍ଠ ବୈଧୀ ପ୍ରେମର ପୂଜାରୀ । ସେ ପୂର୍ବସୂରୀ ନରସିଂହ ସେଣ, ବିଷ୍ଣୁ ଦାସ, ବା ପିତାମହ ଧନଞ୍ଜୟଙ୍କ ପରି ନାୟିକାଙ୍କୁ ପରକୀୟା ପ୍ରେମରେ ବିଭୋର ହେବାକୁ ଅବକାଶ ଦେଇନାହାନ୍ତି । ସେ କିନ୍ତୁ ସ୍ୱଭାବବାଦୀ ରୂପେ ମାଂସଳ ରତି କାମନାର ଚିତ୍ର କାବ୍ୟ ସୃଷ୍ଟିରେ ଅଙ୍କନ କରିଛନ୍ତି । ଅବଶ୍ୟ ପୌଢ଼ ଉପେନ୍ଦ୍ର 'ବୈଦେହୀଶ ବିଳାସ' ଓ 'କୋଟି ବ୍ରହ୍ମାଣ୍ଡସୁନ୍ଦରୀ' ରଚନାବେଳେ ଏ ଦିଗରେ ସଚେତନ ହୋଇଛନ୍ତି । ଏ ଦୁଇଟି କାବ୍ୟରେ ଯୌନମିଳନର ଚିତ୍ର ସଂଯତ ଓ ପ୍ରତୀକାତ୍ମକ ।

ସେ ମୁକ୍ତ କଣ୍ଠରେ ଦାମ୍ପତ୍ୟ ପ୍ରେମର ଜୟଗାନ କରିଛନ୍ତି-

"କି ବଡ଼ ହେବା ନୃପତି, କି ବଡ଼ ଇନ୍ଦ୍ର ସମ୍ପତ୍ତି
ସବୁସୁଖ ଉତପତି ସ୍ଥାନ ଦମ୍ପତି ।"(ପ୍ରେମସୁଧାନିଧି୭/୬)

ପୁଣି ଅନ୍ୟତ୍ର-

"ମହାସୁଖ ନାହିଁ ଦମ୍ପତିରୁ
କି ଲାଭ କୁବେର ସମ୍ପତ୍ତିରୁ" (ରସିକ ହାରାବଳୀ)

କବି ସ୍ୱକୀୟ ପ୍ରେମରେ ପରକୀୟା ପ୍ରେମର ଆବେଗ ଦେଇ ପରଚାଟି କବାଟ ନ ଖୋଲିବାକୁ କାବ୍ୟିକ ଆହ୍ୱାନ ଦେଇଛନ୍ତି । ଆମ ସଂସ୍କୃତିର ପ୍ରତିଷ୍ଠିତ ବିଧାୟକ ମନୁଙ୍କ ନିମ୍ନୋକ୍ତ ଉକ୍ତି ପ୍ରତି ସେ ସର୍ବଦା ସଚେତନ:

"ସନ୍ତୁଷ୍ଟୋ ଭାର୍ଯ୍ୟାୟ ଭର୍ତ୍ତା, ଭର୍ତ୍ତାଭାର୍ଯ୍ୟା ତଥୈବ ଚ
ଯସ୍ମିନେବ କୁଳେ ନିତ୍ୟଂହ କଲ୍ୟାଣଂ ତତ୍ର ବୈଧ୍ରୁବମ୍"

ସ୍ରଷ୍ଟା ସମାଜକୁ ଚେତାବନି ଦେଇଛନ୍ତି -

"ପର ସ୍ତ୍ରୀରୀ ପରଦ୍ରବ୍ୟ ହରଣକୁ ।
ଲେଖୁଁ ଶୁଭକରି ତହୁଁ ମରଣକୁ ।"

ଉପେନ୍ଦ୍ର ନାରୀ ସୌନ୍ଦର୍ଯ୍ୟର ନଖଶିଖ ବର୍ଣ୍ଣନା କରିଛନ୍ତି । ପୂର୍ବରାଗର ଚିତ୍ର ତାଙ୍କ ଲେଖନୀରେ ହୋଇଛି ଏକାନ୍ତ ହୃଦ୍ୟ । ପ୍ରାକ୍ ବିବାହ କାଳରେ ସେ ନାୟକ ନାୟିକାଙ୍କର ସ୍ୱପ୍ନ ଅଥବା ବାସ୍ତବ ମିଳନ ଘଟାଇଛନ୍ତି ଅଥବା ତାହା ଦୈହିକ ମିଳନରେ ପର୍ଯ୍ୟବସିତ ହୋଇନାହିଁ । ପ୍ରେମ ପୂର୍ବରାଗ ଓ ପ୍ରଯତ୍ନ ମଧ୍ୟରେ ଗତିକରି ପିତାମାତାଙ୍କ ସ୍ୱୀକୃତି ପରେ ବିବାହ ବନ୍ଧନରେ ପରିଣତ ହୋଇଛି । ତାଙ୍କ ନାୟିକାମାନେ ସର୍ବଦା ସଂସ୍କୃତି ସଚେତନ । ସେମାନେ ବିଧି ନିଷେଧ ନମାନି ପ୍ରିୟତମ ସହିତ କୁତ୍ରାପି ମିଳିତ ହୋଇନାହାନ୍ତି । ସେମାନେ ସ୍ୱାମୀଙ୍କ କର୍ତ୍ତବ୍ୟ ସମ୍ପାଦନରେ ପ୍ରତିବନ୍ଧକ ସୃଷ୍ଟିକରି ନାହାନ୍ତି । ପୁଣି ବିରହକାଳରେ ତପସ୍ୱିନୀ ସାଜି ସ୍ୱାମୀଙ୍କ ଶୁଭବାହୁଡ଼ାକୁ ଚାହିଁ ବସିଛନ୍ତି । ବିରହ

ଚିତ୍ର ଅଙ୍କନରେ ଭଞ୍ଜ ଜଣେ କୁଶଳୀ ସ୍ଥପତି । ବୋଧହୁଏ କବିଙ୍କ ବ୍ୟକ୍ତିକ ଅନୁଭୂତି ନିଷ୍ଣାତ ବିରହ କାରୁଣ୍ୟରେ ପ୍ରେମ ହୋଇଛି ଉଜ୍ଜ୍ୱଳ ଓ ରସୋଚ୍ଛଳ ।

କବି ଉପେନ୍ଦ୍ର ଥିଲେ ଲୋକାଚାର ଓ ପରମ୍ପରା ନିର୍ଦ୍ଦେଶିତ ନୈତିକ ଆଦର୍ଶ ପ୍ରତି ଏକାନ୍ତ ସଚେତନ । ଏ ମାଟିରେ ପ୍ରଚଳିତ ଗର୍ଭାଧାନ, ଜାତକର୍ମାଦି ଅନୁଷ୍ଠାନ, ବିବାହ, ଓଷାବ୍ରତ, ଜ୍ୟୋତିଷ ଚର୍ଚ୍ଚା, ମନ୍ତ୍ରତନ୍ତ୍ର, ଲୋକାବିଶ୍ୱାସ ଓ ଲୋକଜୀବନର ଚିତ୍ର ତାଙ୍କ କାବ୍ୟ ସୃଷ୍ଟିରେ ପରିବେଷଣ କରିଛନ୍ତି । ସ୍ମୃତି ଶାସ୍ତ୍ର ନିଷିଦ୍ଧ ସଗୋତ୍ର ବିବାହ(ପ୍ରେମସୁଧା ନିଧି)କାବ୍ୟରେ ବର୍ଣ୍ଣିତ । ପରେ କବି ଏ ଦିଗରେ ପୂର୍ଣ୍ଣ ସଚେତନ ରହିଛନ୍ତି । ସଂସ୍କୃତ କାବ୍ୟାଦର୍ଶ କବିଙ୍କ ପକ୍ଷରେ ଥିଲା ଏକାନ୍ତ ଅନୁକରଣୀୟ । ପ୍ରାକ୍ ବୈବାହିକ କାଳରେ ନାୟିକା ନାୟକ ନିକଟକୁ ପ୍ରଥମେ ପ୍ରେମପତ୍ର ଲେଖିବା ସଂସ୍କୃତି ସାହିତ୍ୟରେ ଏକ କାବ୍ୟିକ ପରମ୍ପରା । ଓଡ଼ିଶୀ ସଂସ୍କୃତି ସଚେତନ କବି ଏହି ପ୍ରଥାକୁ ତାଙ୍କ କାବ୍ୟରେ ପରିହାର କରିଛନ୍ତି ।

ଏକନିଷ୍ଠ ଦାମ୍ପତ୍ୟ ପ୍ରେମର ପ୍ରତୀକ ସୀତାରାମ ହିଁ ଥିଲେ କବିଙ୍କ ପରମ ଆରାଧ୍ୟ । ଏତଦ୍‌ସତ୍ତ୍ୱେ ସେ ବିଭିନ୍ନ କାବ୍ୟର ମଙ୍ଗଳାଚରଣ ଓ ଭଣିତାରେ ହିନ୍ଦୁ ଧର୍ମର ସମସ୍ତ ମୁଖ୍ୟ ଦେବ ଦେବୀଙ୍କୁ ହୃଦୟର ଭକ୍ତିଅର୍ଘ୍ୟ ଅର୍ପଣ କରିଛନ୍ତି । ଉପେନ୍ଦ୍ର ଥିଲେ ଯଥାର୍ଥରେ ସ୍ମାର୍ତ୍ତ ତଥା ଉତ୍କଳୀୟ ବୈଷ୍ଣବ କବି । ସେ ଧର୍ମଗତ ଉଦାରତା ମଧ୍ୟରେ ଏ ମାଟିରେ ପ୍ରତିଷ୍ଠିତ ଜଗନ୍ନାଥ ଧର୍ମ ଓ ପଞ୍ଚଦେବତା ଆରାଧନାକୁ ଆତ୍ମିକ ସମର୍ଥନ ଜଣାଇ ସେତେବେଳେ ଆମ ସମାଜ ଜୀବନରେ ମୁଣ୍ଡଟେକିଥିବା ସାମ୍ପ୍ରଦାୟିକ ସଂକୀର୍ଣ୍ଣତାକୁ ପ୍ରତିହତ କରିବାକୁ ପ୍ରଚେଷ୍ଟା କରିଛନ୍ତି । ପୁଣି ବହୁ କାଳ୍ପନିକ କାବ୍ୟର ପ୍ରଣେତା ଭଞ୍ଜ କବିଙ୍କ କାବ୍ୟରେ ଦୃଷ୍ଟିରେ ସାହିତ୍ୟକୁ ଧର୍ମଠାରୁ ପୃଥକ କରିବା ଉଦ୍ୟମ ମଧ୍ୟ ଲକ୍ଷଣୀୟ ।

କବି ମାନସ ପରାଧୀନତାର ଗ୍ଲାନିରେ ହୋଇଛି ଜର୍ଜ୍ଜରିତ । ଲୋଭ ପରବଶ ହୋଇବା, ଭୟରେ ବିଦେଶୀ ବା ସ୍ୱଦେଶୀ ଶାସକଙ୍କ କର୍ମଚାରୀ ରୂପେ ସେମାନଙ୍କ ଅପକର୍ମ ଓ ଅତ୍ୟାଚାରରେ ନିଜକୁ ସାମିଲ କରିବା ଠାରୁ ବଡ ଅପରାଧ ଆଉ କିଛି ନାହିଁ ବୋଲି ସେ ଅନୁଭବ କରିଛନ୍ତି । ଏଣୁ ସେ ଘୋଷଣା କରିଛନ୍ତି-- " ସେବକ ହୋଇବା ଜନ ଜୀବନ ହିଁ ଧିକ୍"(ଲା.ବ-୧୫/୮) ତାଙ୍କ ଦୃଷ୍ଟିରେ ସୁଖୀ ଲୋକ ହେଉଛି-

"ସୁଖୀ ହୋଇଥିବ ନୃପ ଉପଜୀବୀ ନୋହି
ବିଦ୍ୟାଥିବ, ଦିବ୍ୟସ୍ତିରୀ ମିଳିଥିବ ତହିଁ ।" (ଲା.ବ ୨୮/୩୩)

କାବ୍ୟ ପୁରୁଷ ଅବସ୍ଥାଚକ୍ରରେ ଦୀନ, ଦୁର୍ଗତ, ଆପାଙ୍‌କ୍ତେୟ ଦଳିତମାନଙ୍କୁ ଚରିତ୍ରୀଭୂତ କରିବା ଅବକାଶ ପାଇନାହାନ୍ତି । ସେ ପ୍ରସଙ୍ଗ କ୍ରମେ ଦାସ, ଦାସୀ, ନଟନଟୀ, ସନ୍ନ୍ୟାସୀ, ଶବର, ମାଳିନୀ ଆଦି କେତେକ ଚରିତ୍ର ଅଙ୍କନ କରିଥିଲେ ମଧ୍ୟ ସେମାନଙ୍କ ବ୍ୟକ୍ତିତ୍ୱ ପରିସ୍ଫୁଟନ କରିନାହାନ୍ତି ଅଥଚ ଦୁଃସ୍ଥମାନଙ୍କର ବେଦନାଘନ ଜୀବନ ଦରଦୀ ସ୍ପର୍ଶକାତର ସର୍ବଦର୍ଶୀ ସ୍ରଷ୍ଟାର ଦୃଷ୍ଟି ଅଙ୍ଗନ ବାହାରେ ରହିଯାଇ ନାହିଁ । ସ୍ରଷ୍ଟା ପୁରୁଷଙ୍କ ବହୁ -ଉପମା - ଉପମେୟ ମଧ୍ୟରେ ସାଧାରଣ ଲୋକଜୀବନର ମନ୍ମୟ

ପ୍ରତିଫଳନ ଘଟିଛି । ସେ ସ୍ଥଳବିଶେଷରେ ଶୋଷିତ ଅବହେଳିତ ଗୋଷ୍ଠୀର ମର୍ମସ୍ପର୍ଶୀ ଆଲେଖ୍ୟ ଅଙ୍କନ କରିଛନ୍ତି । ଯଥା-

କ) ଧନବନ୍ତମାନଙ୍କର ଅର୍ଥବିନିମୟରେ ଦାସ ଦାସୀ କ୍ରୟ(ରସଲେଖା-୧/୧୯)

ଖ) ଦାସୀମାନଙ୍କ ଯୌବନପୁଷ୍ପ ବିକଶିତ ହେଲେ ତାହା ସାମନ୍ତଙ୍କ ବାସନା ବେଦୀରେ ନିବେଦିତ ହେବା(ସୁଭଦ୍ରା-୧୪/୫)

ଗ) ପ୍ରବଳ ଶୀତକାଳରେ ଦାରିଦ୍ର୍ୟ ପୀଡ଼ିତ ଜନତାର ଜାନୁ ହିଁ ଏକମାତ୍ର ଅବଲମ୍ବନ ହେବା(ଲା,ବ ୪୩/୩)

ଘ) ନୀଚ ଓ ଅନ୍ତ୍ୟବର୍ଣ୍ଣମାନେ କାରଣ ଅକାରଣରେ ସାମନ୍ତମାନଙ୍କ କ୍ରୋଧର ଶରବ୍ୟ ହେବା ।

ଙ) କାଉକୁ ଦେଖି ପେଚା ଲୁଚିବା ପରି ସାହୁକୁ ଦେଖି ଖାତକ ଲୁଚିବା(ବୈ.ବି)

ଚ) ଅତ୍ୟାଚାରୀ ଜମିଦାରମାନେ ଦୀନଦୁର୍ବଳ କୃଷକର ଜମିକୁ ବଳପୂର୍ବକ ଦଖଲ କରିବା ଏବଂ ଏହି ପରିପ୍ରେକ୍ଷୀରେ ଜମିରୁ ଉଚ୍ଛେଦ ହୋଇଥିବା ରୟତକୁ ଜମିଦାରର ଶିରଚ୍ଛେଦନ ପୂର୍ବକ ଜମିକୁ ପୁନର୍ଦଖଲ କରିବାକୁ ପରାମର୍ଶ(ବକର ଶ୍ରୀରାମଚନ୍ଦ୍ରଙ୍କୁ) ନିଶ୍ଚିତ ତାତ୍ପର୍ଯ୍ୟପୂର୍ଣ୍ଣ ଓ କ୍ରାନ୍ତିକାରୀ(ବୈ.ବ) ।

କବି ସଂସ୍କାରକ ନୁହେଁ କି ନୀତିବାଗୀଶ ନୁହେଁ । ସେ ଶିଳ୍ପୀ, ଫ୍ରଏଡଙ୍କ ଦୃଷ୍ଟିରେ " An artist is social misfit" । ସୌନ୍ଦର୍ଯ୍ୟ ହିଁ ତାର ଧ୍ୟେୟ । କିନ୍ତୁ ସେ କ୍ରାନ୍ତଦର୍ଶୀ ହୋଇଥିବାରୁ ତାହାର ସୌନ୍ଦର୍ଯ୍ୟ ଦୃଷ୍ଟି ସତ୍ୟ-ଶିବ ଚେତନା ବିଚ୍ୟୁତ ନୁହେଁ । ପ୍ରତିଭାବାନ ସ୍ରଷ୍ଟାର ସୃଷ୍ଟିରେ ସାମାଜିକ ଆଦର୍ଶର ଦ୍ୟୋତନା ସଂଗୁପ୍ତ ଥାଏ । ସେକାଳ ମଧ୍ୟରେ କାଳାତୀତ ବାର୍ତ୍ତା ପ୍ରଦାନ କରେ । ସେ ସଂସ୍କାରକ ବା ଶିକ୍ଷକ ପରି ନୀରସ ନୀତିବାଣୀ ନ କହି ପ୍ରିୟ ବାଦିନୀ ପ୍ରିୟାପରି ହସେଇ ରସେଇ ପରୋକ୍ଷରେ ଜୀବନଦର୍ଶ ଉପସ୍ଥାପନ କରିଥାଏ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଅନୁରୂପ ଭାବେ ତାଙ୍କର ସମାଜ ପ୍ରତି ଅଭିପ୍ରେତ ସନ୍ଦେଶକୁ ରସିକତା ଓ ନମ୍ୟବୋଧ ମଧ୍ୟରେ [illegible]ସ୍ଥାପନ ପୂର୍ବ[illegible] [illegible]ମାନସ[illegible] ରମଣୀୟ ବର୍ଣ୍ଣୋତ୍ସବ ସୃଷ୍ଟି କରିଯାଇଛନ୍ତି । କବିଙ୍କ ବକ୍ତବ୍ୟ କେବଳ ସଚେତନ ସହୃଦୟ ପକ୍ଷରେ ଅନୁଭବ୍ୟ ।



# ସକାଳର ଚନ୍ଦ୍ର ଭାଗା

(୫)

ଆକାଶରେ ଫୁଟି ପଡ଼େ
ରୂପ ଆନ ଆନ
ଦିଗ୍‌ବଳୟେ ଆଭାସଇ
ଲୋହିତ ବରଣ
ବାରି ଭେଦି ବରୁଣର
ପ୍ରବାଳ ପ୍ରାସାଦୁ
ଜ୍ୟୋତିଶିଖା ଉଠେକି ସଘନେ
ଆଉଟା ସୁନାର ସ୍ରୋତ
ଛୁଟି ଆସେ ବାଲି ବନ୍ତେ
ରଚି ଏକ ସ୍ୱର୍ଣ୍ଣ ସେତୁ
ସୁନୀଳ ଜଳରେ ।
ଭ୍ରମଣ ବିଳାସୀ ଦଳ
ତଟ ଦେଶେ ହୋଇଲେଣି ମେଳ
ଚିମିନି ଧୂସର ଧ୍ୱାନ୍ତ
ଧୂମ କୁଣ୍ଡଳୀରେ
ବହୁତଳ ପ୍ରାସାଦରେ
ଯେହୁ ବାସକରେ,
ପ୍ରଭାତେ ଗାଢ଼ ନିଦ୍ରାରେ
ଯେ ସଦା ନିମଗ୍ନ
ମହୋଦଧି ମଥା ପରେ
ମୁକ୍ତ ଚକ୍ରବାଳେ
ଏ ମହାର୍ଘ ବର୍ଣ୍ଣୋତ୍ସବ
ତାହା ପାଇଁ ସ୍ୱପ୍ନ ।
ସେ ସ୍ୱପ୍ନ ସାକାର ଆଶେ
ଆସିଛନ୍ତି ଧାଇଁ
ପଞ୍ଚତାରକା ହୋଟେଲୁଁ
ପାହାନ୍ତରୁ ତେଜି

ସୁଖ ନିଦ୍ରା ସୁପାତିର ଶେଯ
ମଧୁ ଚନ୍ଦ୍ରିକାର କ୍ଲାନ୍ତି
ତନ୍ଦ୍ରାବେଶ ଭାବକୁ ଲିଭାଇ ।
ତନ୍ୱୀ ତରୁଣୀଙ୍କ ଗଣ୍ଡୁ
ଅବା ଓଷ୍ଠାଧାରୁ
ଲିଭିନାହିଁ ଏ ଅବଧି
ନୈଶ ପ୍ରସାଧନ
ଚଞ୍ଚଳତା ନାହିଁ ତାଙ୍କ
ବିଲୋଳ ଲୋଚନେ
ଶ୍ରାନ୍ତି ଚିହ୍ନ ଲିଭି ନାହିଁ
ନିଟୋଳ ବଦନୁ ।
ଜଡ଼ି କାନ୍ତ ତନୁ
କାନ୍ଧେ କର ଥାପି
ଆବେଗ ବିଧୁର ହୃଦେ
ରହିଛନ୍ତି ଚାହିଁ,
ନିଠୁର ଗଣ୍ଡ ଜଳୁଛି
ବାଳ ରବି କରେ
କାନର ଝୁମୁକା ବିମ୍ବ
ତହିଁ ଖେଳା କରେ ।
ସହସା ଦିବ୍ୟ ବୈଭବ
ବାଳାର୍କର ଦେଖି
ବିସ୍ମୟେ ବିମୂଢ଼ ତାଙ୍କ
ସ୍ଫୀତ ନେତ୍ର ସ୍ତବ୍ଧିତ-ଚକିତ
ନୀଳ କଇଁ ଦୁଇ
ପାଖୁଡ଼ା ମେଳାଇ
ସ୍ଥିର ହୋଇ ରହେ ଅଚଞ୍ଚଳା
ଶୋଭାର ମେଖଳା

ଅନନ୍ୟ ଏ ଲୟ
ଆୟତ ଆଖିରେ ଭରା
ଅଦ୍ଭୁତ ବିସ୍ମୟ ।
(୬)
ନବୀନାଙ୍କ ହାବଭାବ
ଅରୁଣଙ୍କ ପ୍ରାଚୀ ଅନୁରାଗ
ଦେଖି ଉର୍ମି ପ୍ରାଣ
ହୋଇଲା ଉଦ୍‌ବେଳ
ଅହରହ ଚୁମ୍ବିଲା ସେ
ବେଳା-ବାଳା ତନୁ
ଶୋଭାଙ୍ଗ ସକଳ ।
ଶିଶିର ସ୍ନାହାନେ
ଝାଉଁ ବନ ବୀଥି ଦୀପ୍ତ
ସଦ୍ୟସ୍ନାତା ଶ୍ୟାମା ତନୁ ସମ
ସୁରମ୍ୟ ସୁସ୍ନିଗ୍ଧ ।
ସଇକତ ସ୍ତୂପ ମୂଳେ ଅବା ଖୋଲେ
କଇଁସାରି ଲତା
ପୁଷ୍ପ ଗୁଚ୍ଛେ ହୋଇଛି ଶୋଭିତା
ହୋଇ ମେଳ ସିଦ୍ଧ ଋଷି ଗଣ
ଅର୍ଘ୍ୟ ସ୍ଥଳପଦ୍ମ ଢ଼ାଳି
ସବିତା ପୟରେ
ଦିବାଲୋକ ପ୍ରବେଶରେ
ଗଲେ କି ବାହୁଡ଼ି !
ଆର୍କ ପୁଷ୍ପେ ମନୋହର
କେଉଁ ବନ୍ତ କାନ୍ତି
ତରଳ ଧବଳ ମିଶା
ବାଇଗଣି ଦଳେ
ଢ଼ଳଢ଼ଳ ହେଉଛି ଶିଶିର
ବାଳଭାନୁକର ହୋଇଣ ବିମ୍ବିତ
ସର୍ଜିଅଛି କମ୍ର ରମ୍ୟ
ବର୍ଣ୍ଣାଳୀର ସ୍ରୋତ ।
କେଉଁ ବନ୍ତ ଦେହେ
ଜଡ଼ିଥିବା ଲତା
ଅପରାଜିତା କୁସୁମେ ।
ହୋଇଛି ମଣ୍ଡିତା
ଶ୍ୟାମା ସୁନ୍ଦରୀର ଚାରୁ
ଚିକ୍କଣ ଚହଟ
ରସିକ ମନେ ଜଗାଏ
ବିପୁଳ ଉଚ୍ଚାଟ ।
ବାଲି ପାହାଡ଼ ମଣ୍ଡିତ
ଫୁଲେ ସଦା ମଲ୍ଲୀ
ସୌର କରେ
ଦିଶେ ଝିଲିମିଲି ।
ଧୂସର-ଗଉର ଦେହେ
କଳାଟିପା ଧରି
କୁନି କୁନି କଙ୍କଡ଼ାଏ ଯାନ୍ତି
ଡଗଡଗ ଚାଲି
ପ୍ରତିଫଳି ବାଳାରୁଣ ଜ୍ୟୋତି
ଗତିଶୀଳ ମିଶ୍ରରତ୍ନ ପରି ଝଟକନ୍ତି ।
(୭)
କ୍ଷଣେ କ୍ଷଣେ ଦିଗବଳୟେ
କି ପରିବର୍ତ୍ତନ !
ଲୋହିତ ବରଣ ପରେ
ତାମ୍ର ଆସ୍ତରଣ
ତା ଉପରେ ଆଉଟା ପିତଳ
ଶୁଭ୍ର ତଥି ପରେ,
ତରଳ, ନୀଳ ଶୋଭଇ
ପୁଣି ତା ଶିଖରେ,

ଦିଗ ବଣିକର ସେ' କି
ରତନ ପସରା
ମହାର୍ଘ ମଣି ବୀଥିରେ
ହୋଇଅଛି ତୋରା
ବିକିରିତ କିରଣେ ତା'
ଦିଗ ଉଦ୍‌ଭାସିତ

ସୁନାର ସ୍ୱପନେ ପ୍ରାଣ
ହୁଏ କୋରକିତ
ଦେଖି ଦେଖି ପ୍ରତିକ୍ଷଣ
ନବ ଶୋଭାବନ
ମନେ ଉଠେ ଇନ୍ଦ୍ରନୀଳ ଝଡ଼
ପ୍ରଶ୍ନିଳ ପାହାଡ଼
ଯାଦୁକର ବିଶ୍ୱସ୍ରଷ୍ଟା
ଦୀପାନ୍ୱିତ ଦିବ୍ୟ ମଞ୍ଚେ
ଦେଖାଏ ହୁନ୍ଦର
ପ୍ରବାଳ କନ୍ଦୁକ
ଫିଙ୍ଗିଥିଲା ପ୍ରାଚୀ ଦିଗପର
କ୍ରମେ ସେ କନ୍ଦୁକ ଧରେ
ସୁନେଲୀ ବର୍ଣ୍ଣର
ବଳୟ ଘେରିଣ
ହରଶ୍ଚକ୍ର ପ୍ରାୟ ଦିଶେ
ଅଧଃ ଅଂଶ ହୋଇ ତାର
ବଉଦେ ଆବୃତ,
ଆହା !
ସେକି ଦିଗରାଣୀ ଦିବ୍ୟ ଛତ୍ର ।
ପୁଲକ ବିଳେପ ଭରା
ଏ ଦୁଃଖ ପାସୋରା
ଲାବଣ୍ୟର ଝରା
ଦରଶନେ ନ ହୋଇବ
କାହା ଦୃଷ୍ଟି ଆମୋଦିତ
ମୁଗ୍ଧ ଅନୁଭବେ
ହୃଦୟର ମଣି କୋଠା
ହେବ ନାହିଁ ବିଭାସିତ
ଉଲ୍ଲସିତ, ବିଭୋର ସଂତୃପ୍ତ ।

(୮)

ବେଶି ବେଶି ମନେ ପଡ଼େ ଆଜି
ଶଇଶବ ସ୍ମୃତି
ପାହିନାହିଁ ପାହିବନି
ସେଇ ଜହ୍ନରାତି
ଚନ୍ଦ୍ରଭାଗା ! ତୋର ତୀରେ
ଠିକ ସପ୍ତମୀରେ
ବାଳରବି ଦରଶନ
ଶୈଶବ କୈଶୋରେ
କରୁଥିଲୁ ମାତାପିତା ସହ
ସେ ସ୍ମୃତିରେ ଛଳଛଳ
ଏବେ ମୋ ହୃଦୟ !
ପୂର୍ବଦିନ ସଞ୍ଜବେଳେ
ଚଢ଼ି ଶଗଡ଼ରେ
ପ୍ରତିବେଶୀ ପରିଜନ ନେଇ ସଂଗତରେ
ଲଂଘି ଅପନ୍ତରା ଭୂଇଁ
ବେଣାପାଟ, ନଈ,
ବିଶ୍ରାମ ବେଳାରେ ହୁଏ
ବାଟର ରୋଷେଇ,
ପଂକ୍ତି ଭୋଜନାନ୍ତେ ସର୍ବେ
ମାହା ଆନନ୍ଦରେ
ଯାତ୍ରା କରୁ ତୀର୍ଥ ଉଦ୍ଦେଶ୍ୟରେ ।
ଗାଡ଼ିଆଳଙ୍କ କୁହାଟ

ମନଫୁଲା ଗୀତ

ଦଳଦଙ୍କ ଗଳ-ଘଣ୍ଟିନାଦ,
ହାରକିନି ଆଲୁଅର ମାଳ
ମନପ୍ରାଣ କରେ ବିମୋହିତ ।
ଲୋକାରଣ୍ୟ ମଧ୍ୟେ ଯାଇ
କରି ପୁଣ୍ୟ ସ୍ନାନ ଓ ତର୍ପଣ
ଧାଉଁ କରିବାକୁ ବାଳରବି ଦରଶନ,
ମାଘମାସ ପାହାନ୍ତାରେ
ହାଡ଼ଭଙ୍ଗା ଜାଡ଼କୁ ନମାନି
ଥରି ଥରି ଚାଲିଥାଉଁ
ଧରି ବୋଉ କାନି
ତାହା କୋଳେ ସବା ସାନ
ମହାନନ୍ଦେ ଥାଏ
ବାଆ କଲେ ବାଇଆର
କିବା ଆସେ ଯାଏ,
ତା ଉପର ବସିଥାଏ
ବାପାଙ୍କ କାନ୍ଧରେ
କଣିଆଇ ଚାହିଁ
ହସୁଥାଏ କିରିକିରି
ବାଲିବନ୍ତେ ଚୂଳେ ଚଢ଼ି
ଚାହିଁ ରହୁ ଏକ ଲୟ,
କେତେବେଳେ ହେବେ
ଧର୍ମଦେବତା ଉଦୟ ।
ବୋଉକହେ-
"ଦେଖ ଧନ, ଦେଖ ମାଆମଣି,
ମହାର୍ଣ୍ଣବର କପାଳ
ହିଙ୍ଗୁଳ-ହିଲ୍ଲୋଳ
ଲାଲେ ଲାଲ, ଟହଟହ ଲାଲ,
ଦେଖ ଢ଼େଉ ମୁଖେ
ଦୁଧ-ଅଳତାର ବୋଳ,
ହଳଦୀ କାଠୁଆ ପରି
ଏବେ କି ରଙ୍ଗରେ
ବିହରନ୍ତି ଦେବ ଦିନମଣି,
ହେଇ, ଦେଖ-ଦେଖ
ପାଟବର୍ଣ୍ଣ କଅଁଳା ବାଛୁରୀ-
ସମ ପ୍ରଭୁ ଡ଼େଇଁ ଲେଣି
ମାଆକୋଳ ଛାଡ଼ି ।
ଏହି କାଳେ-
ସ୍ତବ, ସ୍ତୁତି ହରିବୋଲ
ହୁଳହୁଳୀ ନାଦ
ଅଂସଖ୍ୟ କଣ୍ଠରୁ ଝରି
କାନସବୁ କରୁଥାଏ ସ୍ତବ୍ଧ ।
ବାଳଭାନୁ ରୂପ
ଭକତ ଭାବୁକ ଜନେ
କେବେ ହୁଏ ଗୋପ୍ୟ ।
ଧାର୍ମିକ ଭାବୁକ ମାନେ
ଭଗ୍ନ ମନୋରଥେ
ବାହୁଡନ୍ତି ଯେଝାପଥ
ବିଷାଦିତ ହୃଦେ
ଅପେକ୍ଷାରେ ଅନନ୍ୟ ପ୍ରଭାତ ।
ଏ ବିଶ୍ୱ ମୋହନ ଦୃଶ୍ୟ
ଦେଖିବାକୁ ମନେ ମୋର
ବଳବତୀ ଆଶ,
ସଫଳ ହୋଇଛି ଆଜି
ବିକଳ ବାସନା
ଅନ୍ତରେ ମୋ ଜାଗି ଉଠେ

କି ଦିବ୍ୟ ଚେତନା
ବରଷା କୁହେଳୀ
ଧୂଳି ପଟଳେ ଆଛନ୍ନ
ଆକେଶେ ଦୁର୍ଲଭ ଏଇ
ସଚିତ୍ର ସକାଳ
ବିରଞ୍ଚିର ରମ୍ୟ ବିରଚନ ।
ସେକାଳରେ ବିଶ୍ୱାସ ତ
ନାଇଁ ଏହି କାଳେ
ଜ୍ଞାନ ମଦେ ସନ୍ଦେହ ଦୋଳାରେ
ପ୍ରାଣ ମୋର ଦୋଳେ,
ସୌନ୍ଦର୍ଯ୍ୟର କୁହୁକରେ
ଆସି ମୁହିଁ ଏ ତଟରେ
ଏ କି ଦିବ୍ୟ ଭାବ
ମନେ ମୋ ସଞ୍ଚାର
ସୌନ୍ଦର୍ଯ୍ୟ ଜଗତ, ସତ୍ୟ
ନୁହେଁ ବହୁ ଦୂର,
ହଜାର ସପନ
ଭାବ ଆନ ଆନ ।



# ବେଙ୍ଗୁଲୀ ନାନିଲୋ ! ବେଙ୍ଗୁଲୀ ନାନି !

ବେଙ୍ଗୁଲୀ ନାନିଲୋ ! ବେଙ୍ଗୁଲୀ ନାନି !
ଦେ' ହୁଳହୁଳି ଗରଜୁ ମେଘଲୋ, ବରଷୁ ପାଣି... ।
ତୋହରତ ନାହିଁ ଆପଣାପର
ଜଳ, ସ୍ଥଳ, ଘରଆଉ ବାହାର,
ସବୁ ଠାଇଁରେତ ତୋ'ର ସଞ୍ଚାର
ହେଲେ ତୋ'ପାଣିକୁ ବେଶି ଆଦର ।
ଫଙ୍କ ଫଙ୍କ ଡେଇଁ ପୋକତୁ ଖାଉ
ଏଇଠି ଥାଉତୁ ଏଠି ନ ଥାଉ,
ବିଧାତା ବରରେ ତୋ ଦେହ ବର୍ଣ୍ଣ
ମାଟି ପଥର ଠୁଁ ନହିଁଶେ ଭିନ୍ନ ।
ପଥର ର ତଳ, ଗାତ, କୋରଡ଼
ବଇରୀଡରେ ତୋ ଆଶରା ଥଳ,
ଖରା ତାତିରେ ତୁ ଗାତରେ ଶୋଉ
ଶୀତଳ ବେଳାରେ ଶିକାରେ ଯାଉ ।
ଗ୍ରୀଷମରେ ହେଲା ଖରା ପ୍ରବଳ
ଶୁଖିଗଲା ନଈ, ପୋଖରୀ ଜଳ,
ତରୁ, ଲତା, ଜୀବଜନ୍ତୁ ବିକଳ
ଦେଖି ମନମାରି ହେଲୁ ନିଶ୍ଚଳ ।
ଆକାଶେ ଭରିଲା । କଳାବାଦଲ
ବାଦଲ କୋଳରେ ବିଜୁଳି ଖେଳ,
ଦେଖି ନାଚିଉଠେ ପରାଣ ତୋର
ସାରା ରାତି ରଚୁ ଗୀତଆସର ।
କେଡ଼େ ଉପକାରୀ ମୋଘତୋ ମିତ
ତା' ସ୍ୱାଗତ ପାଇଁ ଗାଉତୁ ଗୀତ
ଉପକାରୀ ଜନ ଗୁଣ ଯେ ଗାଏ
ମହତ ଜନଟି ଅଟଇ ସିଏ ।
ବେଙ୍ଗୁଲୀ ନାନିଲୋ, ବେଙ୍ଗୁଲୀ ନାନି !
ଦେ ହୁଳହୁଳୀ ଗରଜୁ ମେଘ ଲୋ ! ବରଷୁ ପାଣି ।



# ବିଲୁଆ ନାନା

ବିଲୁଆନନାରେ ବିଲୁଆନନା !
ଘର ପୋଡ଼ିଗଲା ପଛକୁ ଅନା ।
ନନା, ତୁହି ଅଛୁ ବଡ଼ ଚତୁର
କାହାରିକୁ ତୋର ନାହିଁ ଖାତର ।
ବୁଦାମୂଳେ, ଗାତେ ତୁ ବାସକରୁ
ଅଳସେ ସମୟ ନଷ୍ଟ ନକରୁ ।
ବଣ, ବୁଦା, ତୋଟା, ତୁ ବୁଲୁଥାଉ
ଶିକାର ପାଇଲେ ଆନନ୍ଦେ ଖାଉ ।
ରାତିରେ ତୁ ଛପି ଗାଆଁକୁ ଯାଉ
ପଶୁପକ୍ଷୀ ଛୁଆ ଉଠାଇ ନେଉ ।
ଖାଦ୍ୟପ୍ରତି ତୋର ନାହିଁ ବିକାର
ଯାହା ପାଇଲେ ତୁ କରୁ ଆହାର ।
ପଚା ସଢ଼ା ମଢ଼ ଆନନ୍ଦେ ଖାଇ
ଆମ ପରିବେଶ କରୁ ସଫାଇ ।
ରାତିକାଳେ ସାଥୀମେଳେ ତୁ ବୁଲୁ
ପହରକେ ଥରେ ସଂଗୀତ ବୋଲୁ ।
'ହୁକେ ହୁକେ ହୋ ... ଅ' ତୋର ସଂଗୀତ
ଦିଏନି କେବଳ ମନେ ଆନନ୍ଦ ।
ଅଝଟ ପିଲାଏ ସେ ଡାକ ଶୁଣି
ମାଆ କୋଳେ ପଶି ହୁଅନ୍ତି ତୁନି ।
ପହର ପହର ତୋ ରଡ଼ି ଶୁଣି
ଗଣିବ ପାରଇ ସମୟ ଜାଣି ।
ବିଲୁଆ ନନାରେ ବିଲୁଆ ନନା !
ତୋର ଉପକାର ଭୁଲି ହୁଏନା ।



# ଡଃ ଲକ୍ଷ୍ମୀଧରଙ୍କୁ ଶୁଭକାମନା

ମା ରମାଦେବୀ

ରହସ୍ୟମୟ ମନୁଷ୍ୟର ଜୀବନ । କିଏ ଯେ କିପରି ଭାବରେ ପ୍ରବାହମାନ ହୁଏ ତାହା ଭାବିଲାବେଳକୁ ମୋତେ ଲାଗେ, ମନୁଷ୍ୟର ଜୀବନଟି ଠିକ୍ ଗୋଟିଏ ନଈପରି । ଯେପରି ନଈଟିଏ କେଉଁ ଅଜ୍ଞାତ ପାହାଡ଼ରୁ ଜନ୍ମି ଧିରେ ଧିରେ ନିବିଡ଼ ଅରଣ୍ୟ, କେତେ ମାଳଭୂମି, ଧୂଷର ବାଲଖଣ୍ଡଠାରୁ ଶ୍ରାମଳ କେଦାର ଦେଇ ଅଙ୍କାବଙ୍କା ହୋଇ ବୋହିଖିରାବେଳେ ତାର ଦୁଇକୂଳର ଗଛଲତା ସହିତ ଜୀବଜଗତକୁ କୃତାର୍ଥ କରି ଶେଷରେ ନୀଳପାରାବାରରେ ଲୀନ ହୋଇଯାଏ ।

ଠିକ୍ ସେହିପରି ଜୀବନ ଗୋଟିଏ ଡକ୍ଟର ଲକ୍ଷ୍ମୀଧରଙ୍କର ଯାହାକି କଳନା କରିବା ମୋପରି ଗୋଟିଏ ସାଧାରଣ ଲୋକପକ୍ଷେ କଷ୍ଟକର । ଭାବିଲେ ଆଶ୍ଚର୍ଯ୍ୟ ଲାଗେ ଯେ କେଉଁ ସ୍ନିଗ୍ଧ ସବୁଜ ବିଲ, ମାଳ ଓ ବନାନୀ ଘେରା ଅଖ୍ୟାତପଲ୍ଲୀରେ ପିତା ଅମରେଶ୍ୱର ଓ ମାତା କ୍ଷେତ୍ରମଣିଙ୍କ ତୃତୀୟ ସନ୍ତାନଭାବେ ଜନ୍ମ ନେଇଥିଲେ ବିଦ୍ୱାନ୍ ଲକ୍ଷ୍ମୀଧର । କିନ୍ତୁ ଦୁର୍ଭାଗ୍ୟ ବଶତଃ ଲକ୍ଷ୍ମୀଧରଙ୍କ ପିତାକୁ ଲକ୍ଷ୍ମୀ ଅକରୁଣା ହେବାରୁ ସେ ଆର୍ଥିକ ଅନଟନ ସମ୍ମୁଖିନ ହୋଇ ପିଲାମାନଙ୍କ ଶିକ୍ଷାପ୍ରତି ଉଦାସୀନ ହୋଇପଡ଼ିଥିଲେ ସତ, କିନ୍ତୁ ସେହି ଜନ୍ମଭୂମିରେ ଲକ୍ଷ୍ମୀଧର ତାଙ୍କ ବାଲ୍ୟ, କୈଶୋର ଅତିବାହିତ କରିବା ସହିତ ପ୍ରାଥମିକ ଶିକ୍ଷାବି ସମାପନ କରିଥିଲେ ଏବଂ ସେହି କିଶୋର ଅବସ୍ଥାରେ ନିମ୍ନମାଧମିକ ଶିକ୍ଷାପାଇଁ ତାଙ୍କୁ ନିତି ଛଅ ମହଲାବାଟ ଆସିବାକୁ ପଡ଼ିଥିଲା । ଏହାଥିଲା ତାଙ୍କ ଆଦ୍ୟ ଜୀବନରୁ ଶିକ୍ଷା ପାଇଁ ସଂଗ୍ରାମ ।

ପରେ ପରେ ସେହି ସ୍ୱଳ୍ପ ଶିକ୍ଷାକୁ ଅବଲମ୍ବନ କରି ଲକ୍ଷ୍ମୀଧର ଗୋଟିଏ ଗ୍ରାମସେବକ ଚାକିରୀ ପାଇ ସେ ଚାଲିଆସିଥିଲେ କୋରାପୁଟର ଦୁର୍ଗମ ଅଞ୍ଚଳକୁ ଏବଂ ସେହିଠାରୁ ତାଙ୍କର ଉଚ୍ଚଶିକ୍ଷାର ଆକାଙ୍‌କ୍ଷା ଧିରେ ଧିରେ ଉଜ୍ଜୀବିତ ହେବାକୁ ଲାଗିଲା । ଠିକ୍ ସେତିକିବେଳେ ତାଙ୍କ ଜୀବନରେ ଆସିଥିଲେ ସ୍ନେହମୟୀ ସହଧର୍ମିଣୀ ସ୍ନେହଲତା । ଯିଏକି ଥିଲେ ତାଙ୍କ ପ୍ରେରଣାର ଉତ୍ସ । ସେ ସେତେଯେପରି ଶ୍ୱେତବସନା ଶ୍ୱେତ ପଦ୍ମାସନା, ବରଦଣ୍ଡମଣ୍ଡିତ କରରେ ତାକୁ ନିଜ ଆଡକୁ ଟାଣିନେଇଥିଲେ ମା ବାଗ୍‌ଦେବୀଙ୍କ ରୂପରେ । ତାପରେ ଲକ୍ଷ୍ମୀକାନ୍ତ ଆଉ ପଛକୁ ଫେରି ଚାହିଁନାହାନ୍ତି । ସେ ଘରୋଇ ଭାବରେ ମେଟ୍ରିକ୍ ପାଶ କଲାପରେ ଧନ୍ୟ ସମସ୍ତ ଶିକ୍ଷାଗତ ଯୋଗ୍ୟତା । କୌଣସି ଶିକ୍ଷାନୁଷ୍ଠାନରେ ନପଢ଼ି ନିଜ ଚେଷ୍ଟାରେ ଅର୍ଜନ କରିପାରିଥିଲେ । ସେତିକିରେ ତାଙ୍କର ମନ ବୁଝି ନଥିଲା । ପରେ ପରେଓଡ଼ିଆ, ଇତିହାସ ଓ ରାଜନୀତି ବିଜ୍ଞାନ ତିନୋଟିରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଥିଲେ ଏବଂ ପରେ ଗବେଷଣାକରି ସାହିତ୍ୟରେ ପି.ଏଚ.ଡି ମଧ୍ୟ ହାସଲ କରିଥିଲେ ତାହା ସହିତ ଅସମୀହା ଭାଷାରେ

ମଧ୍ୟ ଡିପ୍ଲୋମା ହାସଲ କରିଥିଲେ ଏବଂ ଶିକ୍ଷା ସେବାରେ ମନୋନିବେଶ କରି ଲକ୍ଷ୍ମୀଧର ଶିକ୍ଷତା, ଅଧ୍ୟାପକ, ପ୍ରାଧ୍ୟାପକ ଓ ବରିଷ୍ଠ ପ୍ରାଧ୍ୟାପକ ଭାବରେ ଶିକ୍ଷା ସେବାରୁ ନିବୃତ୍ତ ହୋଇଥିଲେ । ଏହିପରି ଗୋଟିଏ ଜୀବନର ଧାରା କେଉଁଠୁ ବହି ବହି ଆସି କେଉଁଠି ସମାପ୍ତ ହୋଇଛି ଭାବିଲେ ଆଶ୍ଚର୍ଯ୍ୟର ବିଷୟ ନୁହେଁ କି ? ଏହା ବ୍ୟତୀତ ତାଙ୍କ ଜୀବନରେ ଗୁଡ଼ିଏ ସାହିତ୍ୟ ସୃଷ୍ଟିର ମଧ୍ୟ ସାଧନାରତା କବିତା, ପ୍ରବନ୍ଧ, ସମାଲୋଚନା, ଗଳ୍ପ ଓ ଅନୁଷ୍ଠାନ ଲେଖାମାନ ଲେଖି ଓଡ଼ିଶା ବାଣୀ ଭଣ୍ଡାରକୁ ସମୃଦ୍ଧ କରୁଅଛନ୍ତି । ମୁଁ ତାଙ୍କ କବିତାରୁ ଖଣ୍ଡିଏ ପଢ଼ିଛି ସେହିଟି ଥିଲା 'ସକାଳର ଚନ୍ଦ୍ରଭାଗା' । ସେ ଲେଖାଟି ଯେପରି ପ୍ରାଣବନ୍ତ ଥିଲା ସେହିପରି ପତ୍ନୀତିପଦ ମଧ୍ୟ ଥିଲା ।

ଶେଷରେ ସରସ୍ୱତୀଙ୍କ ସହିତ ଡଃ ଲକ୍ଷ୍ମୀଧର ଦାସ ତାଙ୍କ ନିଜର ନାମକୁ ସାର୍ଥକ କରି ଜୀବନର ୭୫ଟି ବସନ୍ତ ଅତିବାହିତ କରି ଯାହାକି ଜୀବନଟିକୁ ଖଣ୍ଡିଏ ହୀରା ସଦୃଶ ଜାଜ୍ଜ୍ୱଲ୍ୟମାନ କରାଇପାରିଛନ୍ତି । ମୁଁ ଆଜି ତାଙ୍କୁ ଧନ୍ୟବାଦ ଅର୍ପଣ କରେ କି ସେ ସର୍ବଶୁଭରେ କାଳାତିପାତ କରି ପ୍ଲାଟିନମ୍‌ଟିକୁ ହାତରେ ଧରନ୍ତୁ ।

*// ଜୟ ଜଗନ୍ନାଥ //*

ଆଶୀର୍ବାଦ ସହ
ମା' ରମାଦେବୀ
ଦ୍ୱାରକାପୁରୀ, ପୁରୀ
ମୋ: ୮୯୩୭୪୮୪୫୫୩
ଦୂରଭାଷା : (୦୬୭୫୨) ୨୨୨୧୪୬

# ସ୍ମୃତିପ୍ରଜ୍ଞ - ଲକ୍ଷ୍ମୀଧର

ଡ. କିଶୋରଚନ୍ଦ୍ର ମିଶ୍ର

ସମଧର୍ମା ସହଯୋଗୀ ସମକର୍ମା ସତୀର୍ଥ୍ୟ ଏବଂ ସହୃଦୟ ବନ୍ଧୁ ଲକ୍ଷ୍ମୀଧରଙ୍କ ପଞ୍ଚସପ୍ତତିତମ୍ (୭୫) ବର୍ଷପୂର୍ତ୍ତି ଉପଲକ୍ଷେ ଅମରକ୍ଷେତ୍ର ଜଗନ୍ନାଥ ଧାମରେ ଆୟୋଜିତ ଭବ୍ୟ ସମାରୋହର ଉଦ୍‌ଘାଟକ ହେବା ସୁବର୍ଣ୍ଣ ସୁଯୋଗ ଲାଭ କରି ମୁଁ ନିଜକୁ ଗୌରବାନ୍ୱିତ ମନେକରେ ।

ଆମର ନିରନ୍ଧି-ନିବିଡ଼ ବନ୍ଧୁତ୍ୱ ଦୀର୍ଘ ୪୦ ବର୍ଷର । ଆଜି ମନେପଡ଼େ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପରିସରରେ ପରୀକ୍ଷା ଖାତା ମୂଲ୍ୟାୟନ ବେଳେ ପ୍ରଥମ ସାକ୍ଷାତ । କି ଏବ ଈଶ୍ୱରଦତ୍ତ ଅନାବିଳ ସ୍ନେହରେ ଉଭୟେ ବାନ୍ଧି ହୋଇ ଯାଇଥିଲୁ ।ସେ ହୋଇଗଲେ ପ୍ରଥମେ ମୋର ପ୍ରେରଣାର ଉତ୍ସ । ପି.ଏଚ୍.ଡ଼ି ଉପାଧି ପାଇଁ ମୋର ଆକାଙ୍କ୍ଷା ବିଷୟ ଜାଣି ସେ ତାଙ୍କର ପୂର୍ବ ଜ୍ଞାତ ପ୍ରଫେସର ଡ: ବାଳକୃଷ୍ଣ ଶତପଥୀଙ୍କ ସହିତ ପରିଚିତ କରାଇ ନ ଥିଲେ କେବଳ ସେ ମଧ୍ୟ ଡ: ଶତପଥୀଙ୍କ ତତ୍ତ୍ୱାବଧାନରେ ଅନୁରୂପ ଉପାଧି ପାଇଁ ନାମାଙ୍କନ କରିସାରିଥିଲେ । ଉଭୟେ ସେ ମହାଶୟଙ୍କ ତତ୍ତ୍ୱାବଧାନରେ ଡିଗ୍ରୀ ପାଇଥିଲୁ ସେହି ବିଶ୍ୱବିଦ୍ୟାଳୟରୁ ।

ଆମ ଦୁହିଁଙ୍କ ମଧ୍ୟରେ କେତେକ ବିଷୟରେ ସମତା ଥିଲା । ଲକ୍ଷ୍ମୀଧର ବାବୁ ଯେପରି ମେଟ୍ରିକ୍‌ଠାରୁ ଏମ୍.ଏ ପର୍ଯ୍ୟନ୍ତ ବିଦ୍ୟାଳୟ ମହାବିଦ୍ୟାଳୟରେ ନ ପଢ଼ି ସ୍ୱତନ୍ତ୍ରଭାବେ ଉତ୍ତୀର୍ଣ୍ଣ ହୋଇଥିଲେ । ମୁଁ ମଧ୍ୟ ଅନୁରୂପ ରୀତିରେ ଯୋଗ୍ୟତା ହାସଲ କରିଥିଲି । ଉଭୟଙ୍କ ଶିକ୍ଷକତା ଥିଲା ଅନୁରୂପ । ଉଭୟେ ଥିଲୁ ଓଡ଼ିଆ ଅଧ୍ୟାପକ । ପଞ୍ଚାୟତ କଲେଜ ବରଗଡ଼ ଓ ଖଲ୍ଲିକୋଟ ମହାବିଦ୍ୟାଳୟରେ କିଛି ବର୍ଷ ଏକାଠି ଅଧ୍ୟାପନା କରିବା ସୁଅବସର ମିଳିଥିଲା । ଉଭୟଙ୍କ ଆଦର୍ଶ ଓ ସୃଷ୍ଟିକର୍ମରେ ଏକରୂପତା ଲକ୍ଷ୍ୟ କରି ବହୁବ୍ୟକ୍ତି ଭ୍ରମରେ ଲକ୍ଷ୍ମୀଧରଙ୍କୁ କିଶୋର ଓ କିଶୋରଙ୍କୁ ଲକ୍ଷ୍ମୀଧର ମନେ କରୁଥିଲେ । ଏପରିକି କଲେଜର ଅଧକ୍ଷ-ସହକର୍ମୀ-ଛାତ୍ର-ଛାତ୍ରୀ ତଥା ପୋଷ୍ଟ ପିଅନଙ୍କ ଭ୍ରମ-ପ୍ରମାଦ ଉଭୟଙ୍କୁ ବିସ୍ମିତ କରୁଥିଲା ।

ପ୍ରବନ୍ଧ-ସମାଲୋଚନା ବା କବିତାଟିଏ ଲେଖିଲେ ଜଣେ ଅନ୍ୟକୁ ନ ଦେଖାଇଲେ ତୃପ୍ତି ଆସୁନଥିଲା ଓ ପ୍ରକାଶନ ପୂର୍ବରୁ ଜଣେ ଅନ୍ୟର ସ୍ୱୀକୃତିକୁ ଅପେକ୍ଷା କରୁଥିଲା । ଏ ଥିଲା ସାହିତ୍ୟିକ ଜୀବନ । ସୃଷ୍ଟି ଅନ୍ତରାଳରେ ଉଦ୍ଦେଶ୍ୟ ଥିଲା, ଆମେ ଆମ ପ୍ରତିଭାଧର ପୂର୍ବପୁରୁଷଙ୍କ ଅବଦାନରେ ସମୃଦ୍ଧ ହୋଇଛେ, ସେହିପରି ଆମେ ମଧ୍ୟ ଆହୃତଜ୍ଞାନ ଓ ନିଜ ବିକଶିତ ଚେତନାରୁ ଉଦ୍‌ଭୂତ ବିଚାର ମିଶ୍ରଣରେ ପରପୁରୁଷଙ୍କ ପାଇଁ ଶକ୍ତି ଅନୁରୂପ କିଛି ଅବଦାନ ଦେଇଯିବା ।

କିନ୍ତୁ ଲକ୍ଷ୍ମୀଧରଙ୍କ ସୃଷ୍ଟି ବ୍ୟାପକ ଓ ଅତୁଳନୀୟ । ସେ ଓଡ଼ିଆ-ଭାଷା ବ୍ୟତୀତ ଆସାମୀ ଭାଷାରେ ମଧ୍ୟ ପ୍ରବନ୍ଧ ଲେଖିଛନ୍ତି । ବହୁ ସୁନ୍ଦର ଶିକ୍ଷାପ୍ରଦ ଆସାମୀ ଗଳ୍ପର

ଅନୁବାଦ କରି ଓଡ଼ିଆ ଭାଷାକୁ ସମୃଦ୍ଧ କରିଛନ୍ତି । ସେ ଜୀବନୀ ଆତ୍ମଜୀବନୀ ରମ୍ୟଜୀବନୀ, ଶିଶୁ କବିତା, ମନସ୍ତତ୍ୱ ଆଧାରିତ ପ୍ରବନ୍ଧ ରଚନାରେ ତଥା ଶ୍ରେଣୀପାଠ୍ୟ ପାଇଁ କବିତା ସଂକଳନରେ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଛନ୍ତି । ତୁଳନାତ୍ମକ ସାହିତ୍ୟ ସୃଷ୍ଟିରେ ତାଙ୍କର କୃତିତ୍ୱ ଉଲ୍ଲେଖଯୋଗ୍ୟ । ଲକ୍ଷ୍ମୀଧର ବାବୁଙ୍କ ବୈଶିଷ୍ଟ୍ୟ ଏହି ଯେ, ସେ ସୃଷ୍ଟିକର୍ମରେ ନିବିଷ୍ଟ ଥିବାବେଳେ ପରିବାର ଓ ପରିବେଶକୁ ଭୁଲିଯାଇ ଏକନିଷ୍ଠ ହୋଇଯାନ୍ତି । ଫଳରେ ତାଙ୍କର ସୃଷ୍ଟି ସହିତ ସ୍ରଷ୍ଟାର ତାଦାତ୍ମ୍ୟ ଯେ କୌଣସି ପାଠକ ଅନୁଭବ କରିପାରିବ । ତାଙ୍କର ସମାଲୋଚନା ଓ ସମୀକ୍ଷା ଓଡ଼ିଆ ସାହିତ୍ୟର ପ୍ରାଚୀନ ଯୁଗଠାରୁ ଆରମ୍ଭ କରି ମଧ୍ୟଯୁଗ ଦେଇ ଆଧୁନିକ ଯୁଗ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏତଦ୍ ବ୍ୟତୀତ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ପରିଚାଳନାରେ ତଥା ଇନ୍ଦିରାଗାନ୍ଧୀ ମୁକ୍ତ ବିଶ୍ୱବିଦ୍ୟାଳୟର ପରିଚାଳନାରେ ସେ ଦକ୍ଷତା ପ୍ରଦର୍ଶନ କରିଛନ୍ତି ।

ମୁଁ ଲକ୍ଷ୍ମୀଧରଙ୍କୁ ଅତି ନିକଟରୁ ଦେଖିବା ସୁଯୋଗ ପାଇଲି । ଅନୁଭବ କରିଛି । ତାଙ୍କର ବ୍ୟକ୍ତିଗତ ଜୀବନ ବୈଚିତ୍ର୍ୟପୂର୍ଣ୍ଣ ଗ୍ଲାନି-ଗ୍ଲାନିମା ବା ଅଭିମାନ ତାଙ୍କର ଶରୀର-ମନ ଓ ହୃଦୟକୁ ସ୍ପର୍ଶ କରିନାହିଁ । ସେ ଯଥାର୍ଥରେ ସ୍ଥିତପ୍ରଜ୍ଞ ।

"ଦୁଃଖେଷ୍ୱନୁଦ୍‌ବିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ, ବୀତରାଗ ଭୟକ୍ରୋଧଃ"

ତାଙ୍କର ମହାନତା ବିଷୟରେ ପ୍ରସିଦ୍ଧୋକ୍ତି ପ୍ରଯୋଜ୍ୟ ।

"ଉଦେତି ସର୍ବିତା ତାମ୍ର ସ୍ତାମ୍ରଏବାସ୍ତମେତି ଚ ସଂପତ୍ତୌ ଚ ବିପତ୍ତୌ ଚ
ମହାମେକରୂପତା"

ସେ ମନୁଷ୍ୟ ବ୍ୟତୀତ ବୃକ୍ଷ-ଲତା, ପଶୁ-ପକ୍ଷୀ ଆଦିଙ୍କୁ ସ୍ନେହୋଦକରେ ସିକ୍ତ କରି ଅପୂର୍ବ ଆନନ୍ଦ ଲାଭ କରନ୍ତି । ସେ ସ୍ୱକୃତ ଉପବନରେ ରୋପିତ ପୁଷ୍ପ, ଲତାରେ ସଦ୍ୟ ବିକଶିତ କୁସୁମ ପରି ଉତ୍‌ଫୁଲ୍ଲ ଓ ଅମ୍ଳାନ ।

ତାଙ୍କର ଗୃହସ୍ଥ ଜୀବନର ଅନ୍ୟ ଏକ ଦିଗ ପରିବାର ପୋଷଣ । ନିଜ ପୁତ୍ର କନ୍ୟାଙ୍କ ଶିକ୍ଷା-ସ୍ୱାସ୍ଥ୍ୟ-ସାଂସ୍କୃତିକ ଚେତନାର ବିକାଶ ପାଇଁ ଯେପରି ତତ୍‌ପରତା ଦେଖାଇ ଅଛନ୍ତି । ସେହିପରି ତ୍ରିଂଶାଧିକ ଆତ୍ମୀୟ ସ୍ୱଜନଙ୍କ ପୁତ୍ର-କନ୍ୟାର ଭାର ଗ୍ରହଣ କରି ସମାଜରେ ପ୍ରତିଷ୍ଠା ଦେବାରେ ଯତ୍‌ପରୋନାସ୍ତି ଚେଷ୍ଟା କରିଛନ୍ତି । ଏ ଦିଗରେ ତାଙ୍କର ସହଧର୍ମିଣୀଙ୍କ ସହଯୋଗ ଅବିସ୍ମରଣୀୟ ।

ମନୋମତ ପତ୍ନୀପ୍ରାପ୍ତି ପାଇଁ ଭକ୍ତ ଚଣ୍ଡୀଙ୍କ ନିକଟରେ ଭକ୍ତି ପୂର୍ଣ୍ଣ ହୃଦୟରେ ଯେଉଁ ପ୍ରାର୍ଥନା କରେ- ହେ ଦୁର୍ଗେ- ଭାର୍ଯ୍ୟାଂ ମନୋରମାଂ ଦେହି ମନୋବୃତ୍ତ୍ୟନୁସାରିଣୀମ୍ । ଲକ୍ଷ୍ମୀଧରଙ୍କ ଜୀବନରେ ତାଙ୍କର ଗୃହଲକ୍ଷ୍ମୀ ମନୋରମା ଓ ମନୋବୃତ୍ତି ଅନୁସୃତା । ନୋଚେତ୍ ଏପରି ଏକ ମହାନ୍ କର୍ମ ସାଧନ ଏ ଯୁଗରେ ସମ୍ଭବପର ନୁହେଁ । ପତ୍ନୀଙ୍କ ମାତୃହୃଦୟର ମହନୀୟତା ଅନନ୍ୟ ସାଧାରଣ ମୁଁ ଲକ୍ଷ୍ୟ କରିଛି । ଲକ୍ଷ୍ମୀଧରଙ୍କ ସମସ୍ତ ସତ୍‌କର୍ମର ସେ ପ୍ରେରଣା ଦାୟିନୀ । ସେ ଧନ୍ୟା ଓ ବନ୍ଦନୀୟା ।

ଲକ୍ଷ୍ମୀଧର ବାବୁ ଦୀର୍ଘଦିନ ଧରି ସହରବାସୀ ହେଲେ ମଧ୍ୟ ଜନ୍ମମାଟି ପଲ୍ଲୀର ମହକ ଭୁଲିନାହାନ୍ତି । ସହର ଓ ପଲ୍ଲୀ ତାଙ୍କ ପାଇଁ ସମାନ ଆନନ୍ଦଦାୟକ । ଉତ୍‌ଫୁଲ୍ଲ

ବନରେ ସମସ୍ତଙ୍କୁ ସ୍ୱାଗତ କରିବା ଓ ଅନ୍ୟାଙ୍କୁ ସାହାଯ୍ୟ କରିବା ପାଇଁ ମୁହୂର୍ତ୍ତ ହେବା ତାଙ୍କର ସହଜାତ ଗୁଣ ।

ଭାରତୀୟ ପରଂପରାରେ ଇଷ୍ଟାପୂର୍ତ୍ତି ବେଦ ବିହିତ କର୍ମଭାବେ ବିଦିତ । ଇଷ୍ଟ ଅର୍ଥାତ୍ ଯାଗ-ଯଜ୍ଞାଦି ପୂର୍ତ୍ତ ଅର୍ଥାତ୍ ମନ୍ଦିର ନିର୍ମାଣ ଦେବତା ପ୍ରତିଷ୍ଠା ପୁଷ୍କରିଣୀ ବା କୂପ ଖନନ ଉପବନ ନିର୍ମାଣ ଆଦି । ସେ ନିଜ ଗ୍ରାମରେ ହନୁମାନ ମନ୍ଦିର ପୁଷ୍କରିଣୀ ଉପବନ ଆଦି ନିର୍ମାଣ କରି ଆଧାତ୍ମିକ ଚେତନାର ପରିଚୟ ଦେବା ସଙ୍ଗେ ସଙ୍ଗେ ଅଶେଷ ଜନକଲ୍ୟାଣ ସାଧନ କରିଛନ୍ତି । ଏକାଧାରରେ ସେ ନିରଳସ ସାଧକ କରିତ୍କର୍ମା ଓ ପରିବ୍ୟାପ୍ତ ଚେତନାର ଅଧିକାରୀ ଅଟନ୍ତି ।

ଆଜିର ଏହି ମଙ୍ଗଳମୟ ବେଳାରେ ନିଷ୍କପଟ ବନ୍ଧୁଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇବା ସହିତ ହାର୍ଦ୍ଦିକ ଶୁଭାଶୀର୍ବାଦ ପ୍ରଦାନ କରୁଛି ।

ଆତ୍ମୀୟୈଃ ସ୍ୱଜନୈଃ ସାର୍ଦ୍ଧଂ ପ୍ରୀତ୍ୟାକୀର୍ତ୍ତ୍ୟା ବିଭୂଷିତଃ ।<br>ଜଗଦ୍ଧିତାୟ ଦେହି ସ୍ୱଂ ତ୍ୱଂ ଜୀବେଃ ଶରଦଃ ଶତମ୍ ।

ଇତିଶମ୍

ଲାଞ୍ଜିପଲ୍ଲୀ, ଶ୍ରୀକୃଷ୍ଣ ନଗର, ବ୍ରହ୍ମପୁର-୮



# ମୁଁ ଡଃ ଦାସଙ୍କୁ ଯେପରି ଜାଣିଛି

ଶ୍ରୀମତୀ ପ୍ରତିମା ମିଶ୍ର

ଶ୍ରୀ ଜଗନ୍ନାଥ ଧାମ ପୁରୀ ଶ୍ରୀକ୍ଷେତ୍ରର ସାହିତ୍ୟିକ, ସାଂସ୍କୃତିକ ଗଗନରେ ଯେଉଁ କେତେ ଜଣ ମହାନ୍ ବ୍ୟକ୍ତି ଆମ୍ଭମାନଙ୍କ ସାମନାରେ ଉଦାହରଣ ହୋଇ ରହିଛନ୍ତି, ସେମାନଙ୍କ ମଧ୍ୟରେ ଡଃ ଲକ୍ଷ୍ମୀଧର ଦାସ ଅନ୍ୟତମ । ସେ ଏକାଧାରରେ ଜଣେ ପ୍ରଥିତ ଯଶା କବି, ସାହିତ୍ୟିକ, ଗବେଷକ, ପ୍ରକୃତିପ୍ରେମୀ, ସମାଲୋଚକ, ପ୍ରାବନ୍ଧିକ, ଶିଶୁକବି, ବିଶିଷ୍ଟ ଶିକ୍ଷାବିତ୍, ସଂଗ୍ରାମୀ, ପରୋପକାରୀ, ନମ୍ର, ବିନୟୀ ବ୍ୟକ୍ତି ଅଟନ୍ତି । ସେ ଜଣେ ମଧ୍ୟବିତ୍ତ ପରିବାରରେ ଗୋଟିଏ ନିଭୃତ କୋଣରେ ଥିବା ଗ୍ରାମରେ ଜନ୍ମଗ୍ରହଣ କରି ମଧ୍ୟ ନିଜର ଉଦ୍ୟମ, ସାଧନା, ପରିଶ୍ରମ ଓ ପ୍ରବଳ ଆତ୍ମବିଶ୍ୱାସ ଫଳରେ ଆଜି ପୁରୀ ତଥା ସାରା ଓଡ଼ିଶାର ଶିକ୍ଷା କ୍ଷେତ୍ରରେ, ସାହିତ୍ୟ କ୍ଷେତ୍ରରେ ଜଣେ ଆଦର୍ଶ ମଣିଷ ହୋଇ ପାରିଛନ୍ତି ।

ପୁରୀ ଜିଲ୍ଲା ଗୋପଥାନା ଅନ୍ତର୍ଗତ ଓଟରଶାସନ ଗ୍ରାମରେ ୧୯୩୯ ମସିହା ଜୁନ୍ ୧୨ ତାରିଖରେ ପିତା ଅମରେଶ୍ୱର ଓ ମାତା କ୍ଷେତ୍ରମଣୀଙ୍କ କୋଳ ମଣ୍ଡନ କରିଥିଲେ । ସେ ଅପୂର୍ବ ଶୋଭାମଣ୍ଡିତ ନିଛକ ଗ୍ରାମରେ ହିଁ ତାଙ୍କର ବାଲ୍ୟ ଜୀବନ ଓ କୈଶୋର ଜୀବନ ଅତିବାହିତ ହୋଇଥିଲା । କିଛି ଦୂରରେ ଥିବା ନୟାହାଟ ଗ୍ରାମରେ ତାଙ୍କର ନିମ୍ନ ପ୍ରାଥମିକ ଶିକ୍ଷା ପ୍ରାୟ ଶେଷ ହୋଇଗଲା । ଡଃ ଦାସଙ୍କ ପିତା ଥିଲେ ଜଣେ ଶିକ୍ଷା ଓ ସଂସ୍କୃତିପ୍ରେମୀ ଓ ଦେଶପ୍ରେମୀ । କିନ୍ତୁ ତତ୍କାଳିନ ଭାଗଚାଷୀ ଆନ୍ଦୋଳନ ଓ ପ୍ରଜାମେଳି ଫଳରେ ମାଲିମକଦ୍ଦମାରେ ତାଙ୍କ ପିତା ଲିପ୍ତ ହେବାକୁ ବାଧ୍ୟ ହେଲେ, ତେଣୁ ଆର୍ଥିକ ଅନାଟନର ସମ୍ମୁଖୀନ ହୋଇ ସନ୍ତାନମାନଙ୍କ ଉଚ୍ଚଶିକ୍ଷା ପ୍ରତି ଉଦାସୀନ ହୋଇପଡ଼ିଲେ ।

କିନ୍ତୁ ତୁଳସୀ ଦୁଇପତ୍ରରୁ ବାସିଲା ଭଳି ଡଃ ଲକ୍ଷ୍ମୀଧର ଦାସ ଉଚ୍ଚଶି କ୍ଷା ପାଇଁ ବ୍ୟତିବ୍ୟସ୍ତ ହୋଇ ଯାଉଥିଲେ । ତାଙ୍କ ଜୀବନରେ ଏକମାତ୍ର ଲକ୍ଷ୍ୟ ଥିଲା ସେ ନିଜେ ଉଚ୍ଚ ଶିକ୍ଷିତ ହେବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ଶିକ୍ଷାର ଆଲୋକ ବାଣ୍ଟିବା । କିନ୍ତୁ ବାଧକ ସାଜିଥିଲା ଅର୍ଥ । ତେଣୁ ସେ ମାତ୍ର ୧୮ ବର୍ଷ ବୟସରେ ସୁଦୂର କୋରାପୁଟ ଜିଲ୍ଲାର ଗ୍ରାମମଙ୍ଗଳ ବିଭାଗର ଏକ ସେବାଶ୍ରମରେ ସେବକ ରୂପେ ଯୋଗ ଦେଇଥିଲେ କିନ୍ତୁ ତାଙ୍କର ଉଚ୍ଚଶିକ୍ଷା ପ୍ରତି ପ୍ରବଳ ଆଗ୍ରହ ଥିଲା । ତାଙ୍କର ବିବାହ ସଂପନ୍ନ ହେବା ପରେ ତାଙ୍କ ସହଧର୍ମିଣୀ ସ୍ନେହଲତା ଦେବୀ ତାଙ୍କର ପ୍ରେରଣାର ଉତ୍ସ ପାଲଟି ଗଲେ । ସେ ମଧ୍ୟ ଶିକ୍ଷାର ଗୁରୁତ୍ୱକୁ ବେଶ୍ ଅନୁଭବ କରି ତାଙ୍କୁ କାୟ,ମନ, ବାକ୍ୟରେ ସାହାଯ୍ୟ ଓ ସହଯୋଗ କରୁଥିଲେ ।ତା ପରେ ଡଃ ଲକ୍ଷ୍ମୀକାନ୍ତ ଦାସଙ୍କର ଆରମ୍ଭ ହେଲା କଠୋର ତପସ୍ୟା ଉଚ୍ଚ ଶିକ୍ଷା ଗ୍ରହଣ କରିବା ନିମନ୍ତେ । ସେ କୌଣସି ହାଇସ୍କୁଲରେ ନ ପଢ଼ି ଘରୋଇ ଭାବରେ ମାଟ୍ରିକ ପାସ୍ କରିଥିଲେ । ତା' ପରବର୍ତ୍ତୀ କାଳରେ କୌଣସି ଶିକ୍ଷାନୁଷ୍ଠାନରେ ରେଗୁଲାର ଛାତ୍ର ଭାବେ ନ ପଢ଼ି ମଧ୍ୟ ତିନି ତିନୋଟି

ବିଷୟରେ ସେ ସ୍ନାତୋକୋତ୍ତର ଡ଼ିଗ୍ରୀ ହାସଲ କରିଥିଲେ । ବର୍ତ୍ତମାନ ପରିସ୍ଥିତିରେ ଭାବିଲେ ଆଶ୍ଚର୍ଯ୍ୟ ଅନୁଭବ ହୁଏ । ପରେ ପରେ ସେ ଗବେଷଣା କରି ସାହିତ୍ୟରେ ପି.ଏଚ୍.ଡ଼ି ଡ଼ିଗ୍ରୀ ପାଇଥିଲେ । ପୂର୍ବାଞ୍ଚଳୀୟ ଭାଷା-ସାହିତ୍ୟରେ ଡଃ ଦାସଙ୍କର ବେଶ୍ ପ୍ରବେଶ ଥିଲା । ସେ 'ଅସମୀୟ' ଭାଷାରେ ଡ଼ିପ୍ଲୋମା ହାସଲ କଲେ । ଏମ୍.ଇ ପାସ୍ କରିସାରିବା ପରେ ଶିକ୍ଷକତାକୁ ବୃତ୍ତି କରି 'ଇଟି', 'ସିଟି' ଓ 'ବି.ଏଡ୍' ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପ୍ରାଥମିକ, ମାଧ୍ୟମିକ, ଏବଂ ମହାବିଦ୍ୟାଳୟରେ ଶିକ୍ଷକ ରୂପେ କାର୍ଯ୍ୟ କରି ବହୁ ଯଶଖ୍ୟାତି ଅର୍ଜନ କରିଥିଲେ । ସେ ୪୦ ବର୍ଷରୁ ଉର୍ଦ୍ଧ୍ୱ ଶିକ୍ଷା କ୍ଷେତ୍ରରେ ଶିକ୍ଷକ, ଅଧ୍ୟାପକ, ପ୍ରାଧ୍ୟାପକ ଏବଂ ବରିଷ୍ଠ ପ୍ରାଧ୍ୟାପକ ଭାବେ କାର୍ଯ୍ୟ କରି ୧୯୯୮ ମସିହା ଜୁଲାଇ ୩୧ ତାରିଖରେ ସେବାରୁ ନିବୃତ୍ତ ହୋଇଛନ୍ତି । ସେ ତୃଣମୂଳରୁ ଆସି ଶୀର୍ଷ ସ୍ଥାନରେ ଆଜି ପହଞ୍ଚି ପାରିଛନ୍ତି କେବଳ ତାଙ୍କର ଅସାଧାରଣ ଉଦ୍ୟମ ଆଗ୍ରହ ଓ ଆତ୍ମବିଶ୍ୱାସ ବଳରେ ।

ସେ ଏତିକିରେ ଥକି ଯାଇନାହାନ୍ତି । ଅଧ୍ୟାପକ ଥିଲାବେଳେ ନିଜେ ଗବେଷଣା କରିବା ସଙ୍ଗେ ସଙ୍ଗେ କେତେକ ଆଧ୍ୟପକଙ୍କ ଗବେଷଣାର ଦିଗ୍‌ଦର୍ଶକ ଭାବେ କାର୍ଯ୍ୟ କରିଥିଲେ । ଏତଦ୍ ବ୍ୟତୀତ କଲେଜ ଓ ସ୍କୁଲମାନଙ୍କର ପାଠ୍ୟକ୍ରମ ଓ ପୁସ୍ତକ ପ୍ରସ୍ତୁତି, ପରୀକ୍ଷା ପରିଚାଳନା ଦିଗରେ ତାଙ୍କର ଉଲ୍ଲେଖ୍ୟନୀୟ ଅବଦାନ ରହିଛି । ସେ ଅନୁଭବ କରୁଥିଲେ ଯେ ଶିକ୍ଷା ହିଁ ଆମର ମାନଦଣ୍ଡ । ତେଣୁ ସେ ନିରକ୍ଷର ଜନତାଙ୍କୁ ସାକ୍ଷର କରିବା ନିମିତ୍ତ ବିଶ୍ୱବିଦ୍ୟାଳୟ ଆୟୋଗ ଆନୁକୂଲ୍ୟରେ ପରିଚାଳିତ ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମ ପରିଚାଳନା ତଥା ଇନ୍ଦିରାଗାନ୍ଧୀ ମୁକ୍ତ ବିଶ୍ୱବିଦ୍ୟାଳୟରେ କାଉନ୍‌ସିଲର ଭାବେ ସ୍ୱଚ୍ଛରୁପେ କାର୍ଯ୍ୟ ନିର୍ବାହ କରି ପ୍ରଶଂସିତ ହୋଇଛନ୍ତି ।

ସେ ଥିଲେ ଭଗବତ୍ ପ୍ରେମୀ । ତାଙ୍କର ଶୈଶବରୁ ପରିବାର ପଡ଼ୋଶୀ ଓ ପରିଜନ ପ୍ରୀତି ବିଶେଷ ଭାବେ ଦେଖାଯାଇଥିଲା । ସେ ତାଙ୍କ ପିତାଙ୍କର ସାହିତ୍ୟ ପ୍ରୀତିରୁ ପାଉଥିଲେ ଯଥେଷ୍ଟ ପ୍ରେରଣା । ଖୁବ୍ ଅଳ୍ପ ବୟସରୁ ସେ ମଧ୍ୟଯୁଗୀୟ ରୀତିରେ ଭଜନ, ଜଣାଣ ଆଦି ଭକ୍ତି ସଙ୍ଗୀତ ରଚନା କରିଥିଲେ । ତାଙ୍କର ପ୍ରାଥମିକ ରଚନାବଳୀ ଏବେ ଅନେକାଂଶରେ ଅବଲୁପ୍ତ । ୧୮୬୫ ମସିହାରୁ ନିରବଚ୍ଛିନ୍ନ ଭାବରେ ଏଯାବତ୍ , କବିତା, ଗଳ୍ପ, ପ୍ରବନ୍ଧ ଇତ୍ୟାଦି ସୃଷ୍ଟି କରି ଆସିଛନ୍ତି ।

କବିତା, ପ୍ରବନ୍ଧ ଓ ସମାଲୋଚନା ଗୀତିକାବ୍ୟ, ଗଳ୍ପ ଓ ଅନୁବାଦ କ୍ଷେତ୍ରରେ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ତାଙ୍କର ଅବଦାନ ଉଲ୍ଲେଖଯୋଗ୍ୟ, ସେ ଅସମୀୟ ଭାଷାରେ ୮ଟି ପ୍ରବନ୍ଧ ଲେଖିଛନ୍ତି । ସେଗୁଡ଼ିକ "ନତୁନ ପ୍ରବାହ"ର ବିଭିନ୍ନ ସଂଖ୍ୟାରେ ଗୌହାଟୀ ୧୯୭୨-୧୯୭୩ରେ ସ୍ଥାନିତ । ଡଃ ଦାସଙ୍କର ତୁଳନାତ୍ମକ ସାହିତ୍ୟ, କାବ୍ୟ ଓ ଉପନ୍ୟାସ ଉପରେ ସ୍ୱତନ୍ତ୍ର ପ୍ରବେଶ ରହିଛି । ତାଙ୍କର ଲିଖିତ ପ୍ରକାଶିତ ପୁସ୍ତକ ଗୁଡ଼ିକ ହେଉଛି-

ପ୍ରବନ୍ଧ ଓ ଆଲୋଚନା "ଅସମିୟା ସାହିତ୍ୟ, ପରିକ୍ରମା (୧୯୮୫), ଉପନ୍ୟାସ ତତ୍ତ୍ୱ ଓ ଓଡ଼ିଆ ଉପନ୍ୟାସର କ୍ରମାଭିବ୍ୟକ୍ତି (୧୯୯୦), କର୍ମବୀର ରାମଚନ୍ଦ୍ର, ଛନ୍ଦ ଓ ଅଳଙ୍କାର (୧୯୯୮) "ଭଞ୍ଜ ସାହିତ୍ୟର ବର୍ଣ୍ଣ ଓ ବର୍ଣ୍ଣାଳୀ (୧୯୯୭) ଇତ୍ୟାଦି

ଉଲ୍ଲିଖିତ ସଂକଳନ ମଧ୍ୟରୁ ପ୍ରଥମ ଚାରିଟି ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ତରରେ ସହାୟକ ପୁସ୍ତକ ରୂପେ ମନୋନୀତ ଓ ପ୍ରଚଳିତ ।

ତାଙ୍କର 'ଚିତ୍ରିତ' ଓ 'ସକାଳର ଚନ୍ଦ୍ରଭାଗା' ନାମରେ କାବ୍ୟ ସଂକଳନ ପ୍ରକାଶିତ । ଶେଷୋକ୍ତ ପୁସ୍ତକଟି ଐତିହ୍ୟ ଓ ସଂସ୍କୃତି ଭିତ୍ତିକ ଏକ ଅନନ୍ୟ ପୁସ୍ତକ । ସେହିପରି ଅନୁବାଦରେ ଇଉରୋପର ଇତିହାସ 'ଅସମୀୟା କ୍ଷୁଦ୍ରଗଳ୍ପ ଓ ସାତୋଟି ଆସାମୀୟ କ୍ଷୁଦ୍ରଗଳ୍ପ (୧୯୯୧) ପ୍ରକାଶିତ ।

ସେହିପରି ସଂପାଦନାରେ ରହିଛି "କାବ୍ୟ ବିଚିତ୍ରା" କବିତା ସଂକଳନ, ସେମାନଙ୍କ ନିଜକଥା ଯାହାକି ସତେଇଶଟି ଆତ୍ମଜୀବନୀର ଅଂଶ ବିଶେଷ ଏବଂ "ପଦ୍ୟମାଧୁରୀ" ଯୁକ୍ତ ଦୁଇ ଶ୍ରେଣୀରେ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ । ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ୧୧ଟି ପ୍ରବନ୍ଧ ସାମୁହିକ ଗଦ୍ୟ ସଂକଳନ ପୁସ୍ତକମାନଙ୍କରେ ସ୍ଥାନିତ । ଏତଦ୍ ବ୍ୟତୀତ ସାହିତ୍ୟ, ସମାଜ, ସଂସ୍କୃତି, ଶକ୍ଷା ସମାଲୋଚନା, ଜୀବନୀ, ମନସ୍ତତ୍ତ୍ୱ ଆଦି ଉପରେ ଆଧାରିତ ପ୍ରବନ୍ଧ, ରମ୍ୟରଚନା, ସମାଲୋଚନା କବିତା, ଶିଶୁ କବିତା, ଗଳ୍ପ, ଅନୁବାଦ ଗଳ୍ପ ଆଦି ଶତାଧିକ ରଚନା ବିଭିନ୍ନ ପତ୍ରିକାରେ ପ୍ରକାଶିତ ହୋଇ ସଂପୂର୍ଣ୍ଣ ପୁସ୍ତକ ଆକାରରେ ପ୍ରକାଶ ଅପେକ୍ଷାରେ ରହିଛି । ବଙ୍କିମଚନ୍ଦ୍ର ଓ ଫକୀରମୋହନ କଥାସାହିତ୍ୟର ଚରିତ୍ର ଏକ ତୁଳନାତ୍ମକ ଅଧ୍ୟୟନ ହେଉଛି ତାଙ୍କର ଗବେଷଣା ସାଦର୍ଭ । ଏତଦ୍ ବ୍ୟତୀତ ଡଃ ଦାସ ବିଭିନ୍ନ ସ୍ତରରେ ସେବାମୂଳକ କାର୍ଯ୍ୟରେ ସଂପୃକ୍ତ ହୋଇ ଏ ପର୍ଯ୍ୟନ୍ତ ତାଙ୍କ ଜୀବନ ବିତାଉଛନ୍ତି । ଏତେ ସବୁ ସଦ୍‌ଗୁଣର ଅଧିକାରୀ ହୋଇଥିଲେ ମଧ୍ୟ ଡଃ ଦାସଙ୍କୁ ଅହଂ ସ୍ପର୍ଶ କରିନାହିଁ କିମ୍ବା ଆତ୍ମପ୍ରଚାର ପାଇଁ କେବେ ବି ମନ ବଳାଇ ନାହାନ୍ତି । ସେ ଜଣେ ନିରବ ସାଧକ ଅଟନ୍ତି । ଏ ପର୍ଯ୍ୟନ୍ତ ତାଙ୍କୁ ଯେତିକି ସମ୍ମାନ ଓ ପୁରସ୍କାର ଦେବା ଉଚିତ୍ ଦୁଃଖର କଥା ଏ ସମାଜ ତାହା ଦେଇନାହିଁ ।

ଆମର ଏକ ଅଗ୍ରଣୀ ସାହିତ୍ୟ ଓ ସଂସ୍କୃତି ଅନୁଷ୍ଠାନ "ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପରିଷଦ"ର ସେ ଆଜୀବନ ସଦସ୍ୟ ତଥା ଦିଗ୍‌ଦର୍ଶକ ଭାବେ ରହି ଅନୁଷ୍ଠାନର ବିକାଶ କଳ୍ପେ ବହୁ ମୂଲ୍ୟବାନ ଦିଗ୍‌ଦର୍ଶନ ଦେଇ ଉନ୍ନତି ପଥରେ ଆଗେଇ ନେଇଛନ୍ତି । ପରିଷଦର 'ମୁଖପତ୍ର'ରେ "ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟକୁ ପୁରୀର ଅବଦାନ" ବିଷୟରେ ପ୍ରବନ୍ଧ ଲେଖି ଉଚ୍ଚ ପ୍ରଶଂସିତ ହୋଇ ପାରିଛନ୍ତି । ପ୍ରତି ମୁହୂର୍ତ୍ତରେ ପରିଷଦର ସମସ୍ତ କାର୍ଯ୍ୟରେ ସାହାଯ୍ୟର ହାତ ବଢ଼ାଉଛନ୍ତି । ଓଡ଼ିଆ ଭାଷା ସାହିତ୍ୟର ଭବିଷ୍ୟତ ପାଇଁ ତାଙ୍କର ଅବଦାନ ଅତୁଳନୀୟ । ସାହିତ୍ୟ ସଂପର୍କରେ ଆଲୋଚନା କରିବାକୁ ଯାଇ ସେ ସାହିତ୍ୟକୁ ସମଗ୍ର ଜୀବନଟି ସହିତ ସମ୍ମିଳିତ ହେବାର ଏକ ସ୍ୱପ୍ନ ଦେଖନ୍ତି । ପ୍ରଥିତଯଶା ଡଃ ଦାସ ଆପଣା ଚିନ୍ତାକୁ ସାର୍ଥକରୂପେ ଭାଷାରେ ବିନ୍ୟସ୍ତ କରିବାରେ ସିଦ୍ଧହସ୍ତ ଅଟନ୍ତି । ନିକଟରେ ସେ ତାଙ୍କ ପୁଅ, ବୋହୂଙ୍କ ପାଖକୁ ବୁଲିବା ପାଇଁ ଆମେରିକା ଯାଇଥିଲେ । ସେଠାରେ କେବଳ ବୁଲିବା ମଉଜ କରିବା କି ଖାଇବା ପିଇବାରେ ବ୍ୟସ୍ତ ରହୁ ନ ଥିଲେ । ହାତରେ ଥାଏ ଖଣ୍ଡିଏ ଡାଏରୀ ଓ କଲମ । ଯେଉଁଠାରେ ଯାହା ଆଶ୍ଚର୍ଯ୍ୟ ଓ ନୂଆ ଦେଖନ୍ତି, ତାକୁ ସବୁ ଡାଏରୀରେ ଟିପି ଦିଅନ୍ତି ।

ଓଡ଼ିଶା ଆସିଲାପରେ ସେ ଆମେରିକା ଭ୍ରମଣ କାହାଣୀ' ଲେଖିବାରେ ମଗ୍ନ । ଆମେ ଚାତକ ପରି ଚାହିଁ ବସିଛୁ କେବେ ତାଙ୍କର "ଆମେରିକା ଭ୍ରମଣ କାହାଣୀ" ପ୍ରକାଶିତ ହେବ । ନିଜର ବିପୁଳ ଅଭିଜ୍ଞତା, ଶବ୍ଦସମ୍ଭାର ଓ କଳାତ୍ମକ ପରିପାଟୀ ଦେଇ ତୋଳି ଧରନ୍ତି ତାଙ୍କ କଲମ ମୁନରେ । ଏମିତି ଭାବରେ ସେ ଅଭିବ୍ୟକ୍ତ କରନ୍ତି ଯେ ତାଙ୍କ ମନତଳର ଗହନ କଥାକୁ ପଢ଼ି ପାଠକ ଅଭିଭୂତ ହୋଯାଏ । ତଦାତ୍ମ୍ୟ ହୁଏ । ସେ ହୁଏ ଆଶ୍ଚର୍ଯ୍ୟ ଚକିତ ଓ ପୁଲକିତ । ଡଃ ଦାସଙ୍କର ଜ୍ଞାନଗାରିମା ସହୃଦୟତା, ମନୁଷ୍ୟ ପ୍ରତି ଆନ୍ତରିକ ଆବେଗ ସ୍ୱଚ୍ଛ ଅଭିବ୍ୟକ୍ତି ଯୁଗ ଯୁଗ ଧରି ପାଠକକୁ ତନ୍ମୟ ଓ ତଲ୍ଲୀନ କରିବ ।

ଆଜି ତାଙ୍କର ପବିତ୍ରତମ ହୀରକ ଜୟନ୍ତୀ ଅବସରରେ ପ୍ରଭୁ ଜଗନ୍ନାଥଙ୍କ ପାଖରେ ପ୍ରଣିପାତ ସହ ଜଣାଉଛି ଯେ ତାଙ୍କୁ ପ୍ରଭୁ ଶତାୟୁ କରନ୍ତୁ । ଡଃ ଦାସ ଜଣେ ସାହିତ୍ୟ ଓ କଳା ପ୍ରେମୀ । ସଂସ୍କୃତ ପ୍ରେମୀ,ପରୋପକାରୀ, ବନ୍ଧୁବତ୍ସଳ, ମିତ୍ରଭାଷୀ ନିରହଙ୍କାରୀ ମଣିଷ । ତାଙ୍କର ସାଧନା ଆଗାମୀ ଯୁବପିଢ଼ି ପାଇଁ ପ୍ରେରଣାର ଅନନ୍ତ ଉତ୍ସ ହୋଇ ରହିଥାଉ । ପ୍ରଭୁ ଶ୍ରୀ ଜଗନ୍ନାଥ ସଦା ତାଙ୍କୁ କରୁଣାର ନେତ୍ରରେ ଚାହିଁ ରହିଥାଆନ୍ତୁ । ତାଙ୍କର ଲକ୍ଷ୍ୟ ପୂରଣ ହେଉ । ମୁଁ ତାଙ୍କର ସାନ ଭଉଣୀ ହିସାବରେ ସେ ମହାନ୍ ପ୍ରଜ୍ଞା ପୁରୁଷଙ୍କର ଶତାୟୁ କାମନା କରିବା ସହିତ ଏକ ସମୃଦ୍ଧ ସ୍ୱାସ୍ଥ୍ୟବାନ୍ ଓ ଶକ୍ତିମାନ ଆଦର୍ଶ ପ୍ରତି ଗଭୀର ସମ୍ମାନ ଜଣାଉଛି । ସାହିତ୍ୟ ସାଧନାରେ ଏକ ବଟଦ୍ରୁମ ହୋଇ ଆମ୍ଭମାନଙ୍କୁ ଶୀତଳ ଛାୟା ପ୍ରଦାନ କରୁଥାଆନ୍ତୁ । ଜୟ ଜଗନ୍ନାଥ ।

ସଭାପତି, ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପରିଷଦ, ପୁରୀ



# ହସିଲା ବ୍ୟକ୍ତିତ୍ୱ ! ଡଃ ଲକ୍ଷ୍ମୀଧର ଦାସ

ଡ.ଲକ୍ଷ୍ମୀପ୍ରିୟା ଆଚାର୍ଯ୍ୟ

୧୯୯୨ ମସିହା। ମୁଁ ଖଲ୍ଲିକୋଟ ସ୍ୱୟଂଶାସିତ ମହାବିଦ୍ୟାଳୟ, ବ୍ରହ୍ମପୁରରେ ଓଡ଼ିଆ ଅଧ୍ୟାପିକା ଭାବେ ଯୋଗଦେଲି। ଓଡ଼ିଆ ବିଭାଗରେ ପହଞ୍ଚିବା ମାତ୍ରେ ମୋର ତତ୍‌କାଳୀନ ବିଭାଗୀୟ ମୁଖ୍ୟା ଶ୍ରୀମତୀ ପରିଡ଼ା ଅତ୍ୟନ୍ତ ଖୁସି ହୋଇ କହିଲେ, ପୁରୀରୁ ଆସିଛ ନା ? ଭଲ ହେଲା। ଲକ୍ଷ୍ମୀଧର ବାବୁଙ୍କ ଭଳି ତୁମେବି ବିଭାଗର ସବୁ ଦାୟିତ୍ୱ ନିଶ୍ଚିତ ତୁଲେଇବ। ବିଶେଷତଃ ଶନିବାର ଉପରବେଳା ପ୍ରିନ୍‌ସିପାଲ ବିଭାଗୀୟ ମୁଖ୍ୟ ମାନଙ୍କ ସହ ଯେଉଁ ମିଟିଂ ରଖନ୍ତି, ଲକ୍ଷ୍ମୀଧର ବାବୁ ହିଁ ସେ ଦାୟିତ୍ୱ ନିର୍ବାହ କରନ୍ତି ବୋଲି ମୁଁ ଶନିବାର, କଟକ ଯିବା ସମ୍ଭବ ହୁଏ। ସେ ମୋତେ ବହୁତ ସାହାଯ୍ୟ କରୁଛନ୍ତି।

ଲକ୍ଷ୍ମୀଧର ଦାସ - ଏଇ ନାଁଟି ପ୍ରଥମେ ସେଦିନ ଶୁଣିଥିଲି। କିଛି ସମୟ ଅବାକ୍ ନୟନରେ ବିଭାଗୀୟ ମୁଖ୍ୟାଙ୍କୁ ଚାହିଁଛି। ପୁରୀରେ ମୋର ଛୋଟ ଝିଅ ଦୁଇଟିଙ୍କୁ ସ୍ୱାମୀଙ୍କ ପାଖରେ ଛାଡ଼ି ଯାଇଥାଏ। ମନଟା ଅପ୍ରସନ୍ନ ଥାଏ। ତା' ଛଡ଼ା ମୋର ପ୍ରକୃତିଗତ ଦୋଷ ହେଲା ଖାଲରେ ପଡ଼େ କି ଢ଼ିପରେ ପଡ଼େ ସତକଥାହିଁ କହିବି। ମୁହଁରେ ଗୋଟିଏ କଥା ପଛରେ ଆଉ ଗୋଟାଏ କଥା- ଏହା ମୋର ସ୍ୱଭାବ-ବିରୁଦ୍ଧ। ବରଂ ଅପ୍ରିୟ ସତ୍ୟବାଦୀର ଏକ ଦୁର୍ନାମ ମୋର ଥାଏ। ମୁଁ ଶ୍ରୀମତୀ ପରିଡ଼ାଙ୍କୁ କହିଲି- 'ମୋ କାମ ମୁଁ ନିଶ୍ଚୟ କରିବି; କିନ୍ତୁ ଲକ୍ଷ୍ମୀଧର ବାବୁଙ୍କ ଭଳି ଆପଣଙ୍କୁ ସାହାଯ୍ୟ କରିବି ବୋଲି ଆଶା ରଖିବେ ନାହିଁ। କାରଣ ପ୍ରତି ଶନିବାର ମୁଁ ବି ପୁରୀଯିବି।'

୧୯୯୩ ମସିହାରେ ସାମନ୍ତଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀକୁ ବଦଳି ହୋଇ ଆସିଲି। କଲେଜ୍ କରିଡ଼ର୍‌ରେ ଯାଉଥାଏ। ମୁହାଁ ମୁହିଁ ଦେଖାହେଲା ଜଣେ ଦୀର୍ଘକାୟ, ବଳିଷ୍ଠ ବ୍ୟକ୍ତିଙ୍କ୍ ସହ। ନାକତଳକୁ ହଳେ ସାଆନ୍ତିଆ ନିଶ, ଦରପାଚିଲା (ସେତେବେଳେ), ଆଖି ଦୁଇଟି ଭାବଗମ୍ଭୀର, ଓଠରେ କିନ୍ତୁ ଅମାୟିକ, ସରଳ ହସ ଧାରେ ସର୍ବଦା ଉତୁରି ରହିଥାଏ। କେଜାଣି କାହିଁକି ମନେହେଲା, ଏଇ ବୋଧହୁଏ ସେଇ ଲକ୍ଷ୍ମୀଧର ଦାସ। ତାପରେ ସଦା କର୍ମତତ୍ପର ସେଇ ମଣିଷଟିକୁ ବହୁବାର ଭେଟିଛି। ମୋ ସ୍ୱାମୀ ପ୍ରଫେସର ଡକ୍ଟର କୃଷ୍ଣଚନ୍ଦ୍ର ମିଶ୍ରଙ୍କର ସେ ଜଣେ ଉତ୍ତମ ବନ୍ଧୁ, ହିତୈଷୀ। ବହୁବାର ତାଙ୍କ ବାସଭବନକୁ ଯାଇଛି। ନିର୍ଭେଜାଲ୍, ଆନ୍ତରିକ ପୂର୍ଣ୍ଣ ଆତିଥେୟତାରେ ମୁଗ୍ଧ ହୋଇଛି। ସଦା କର୍ମତତ୍ପର, ହାସ୍ୟମୁଖର ମଣିଷଟିଏ। କେବେ କ୍ଲାନ୍ତି ଅନୁଭବ କରିବା ଦେଖିନାହିଁ। କାହାକୁ କଟୂକଥା କହିବା ଶୁଣିନାହିଁ। ପ୍ରାୟ ଫୋନ୍ କରନ୍ତି, ସ୍ୱାସ୍ଥ୍ୟାବସ୍ଥା ବୁଝନ୍ତି, ଅବସ୍ଥା ସୁଧାରିବା ପାଇଁ ବିଭିନ୍ନ ଔଷଧର ନାଁ [illegible]ନ୍ତି। ସେ ସବୁ ଔଷଧର ସୁଫଳ ଯେ ମିଳିନାହିଁ ତା ନୁହେଁ।

୧୯୯୮ ମସିହାରେ ମୋର ବହୁଚର୍ଚ୍ଚିତ 'ପିତାମହ ଭୀଷ୍ମ' ଉପନ୍ୟାସ [illegible] ହେଲା, ପ୍ରଥମ ସଂସ୍କରଣ, ଏବେ ତ ତା'ର ତୃତୀୟ ସଂସ୍କରଣ ପ୍ରକାଶିତ

ହୋଇ ଶେଷ ହେବା ଉପରେ । ପ୍ରକାଶ ପାଇବା ମାତ୍ରେ ଲକ୍ଷ୍ମୀଧର ସାର୍ ତା' ଉପରେ ଭିତ୍ତି ପ୍ରବନ୍ଧ ଲେଖିବାକୁ ଆଗ୍ରହ ପ୍ରକାଶ କରି ବହି ଖଣ୍ଡିଏ ମାଗି ନେଇଥିଲେ । ମୋ ପାଖରେ ମାତ୍ର ଦୁଇଖଣ୍ଡି ବହିରୁ ଖଣ୍ଡିଏ ମୁଁ ଦେଇଦେଇଥିଲି । ଏଯାବତ୍ ଭିତ୍ତି ପ୍ରବନ୍ଧ ଲେଖା ହୋଇନାହିଁ । ସେ ଜଣେ ଉଚ୍ଚ କୋଟୀର ବୟାକରଣିକ । ଭୀଷ୍ମ ଭଳି ବୃହଦାୟତନ ବିଶିଷ୍ଟ ଉପନ୍ୟାସ ଓ ତା'ର ଆବେଗିକ ଭାଷା ସଂପଦକୁ ନେଇ ହୁଏତ ତାଙ୍କର ଚିତ୍ତ ଦ୍ୱିଧାଗ୍ରସ୍ତ ହୋଇଥିବ । ମୋର ସେଥିପାଇଁ ଆଦୌ ଦୁଃଖ ନାହିଁ । ଆଗ୍ରହ ପ୍ରକାଶ କରିଥିଲେ, ସେତିକିରେ ମୁଁ କୃତଜ୍ଞ ।

୨୦୦୬ ମସିହାରେ ଯେତେବେଳେ ଆମେ ସ୍ୱାମୀ-ସ୍ତ୍ରୀ ତ୍ରୟମାସିକ ସାହିତ୍ୟ ପତ୍ରିକା 'ମହୋଦଧି' ପ୍ରକାଶ କରିବା ଆରମ୍ଭ କଲୁ, ଲକ୍ଷ୍ମୀଧର ସାର୍ ସେତେବେଳେ ବହୁ ଆବଶ୍ୟକୀୟ ପରାମର୍ଶ ଦେଇଛନ୍ତି, ଆନ୍ତୁରିକ ସହଯୋଗ ମଧ୍ୟ କରିଛନ୍ତି । ଯାହା ଆମ ପତି ପତ୍ନୀଙ୍କ ପାଇଁ ଚିର ଅବିସ୍ମରଣୀୟ । 'ମହୋଦଧି' ପତ୍ରିକାରେ ତାଙ୍କ ରଚିତ 'ସକାଳ ଚନ୍ଦ୍ରଭାଗା' ଦୀର୍ଘ ତଥା ଛନ୍ଦୋବଦ୍ଧ କବିତା ଧାରାବାହିକ ଭାବେ ପ୍ରକାଶିତ ହୋଇ ଆସିଛି । ସେ ପୁରସ୍କାର ପାଇ ନଥିବାରୁ ଦୁଃଖ ପ୍ରକାଶ କରନ୍ତି । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, 'ମହୋଦଧି ପୁରସ୍କାର'ରେ ସେ ୨୦୦୯ ମସିହାରେ ସମ୍ବର୍ଦ୍ଧିତ ହୋଇଛନ୍ତି । ଏହି ପୁରସ୍କାର ରାଶି ପଚିଶି ହଜାର ଟଙ୍କା ଯୁଗ୍ମଭାବେ ପାଇଥିବାରୁ ଲକ୍ଷ୍ମୀଧର ସାର୍ ବାରହଜାର ପାଞ୍ଚଶତ ମୁଦ୍ରା ପ୍ରାପ୍ତ ହୋଇଥିଲେ । 'ମହୋଦଧି ପୁରସ୍କାର' କୁ କ'ଣ ପୁରସ୍କାର ଭାବେ ଗଣ୍ୟ କରାଯାଏ ନାହିଁକି ?

ଶେଷରେ ସଭ୍ୟତା ଓ ସଂସ୍କୃତିର ଦୌଡ଼ରେ ସାହିତ୍ୟିକଙ୍କ ସଂଖ୍ୟା କ୍ରମବର୍ଦ୍ଧିଷ୍ଣୁ; କିନ୍ତୁ ଲକ୍ଷ୍ମୀଧର ସାର୍ ଜଣେ ନିରବଚ୍ଛିନ୍ନ ସାହିତ୍ୟ ସାଧକ । ସର୍ବୋପରି ସଭ୍ୟତାର ଏ ଜଙ୍ଗଲରୁ କ୍ରମେ ମଣିଷ ହିଁ ନିଶ୍ଚିହ୍ନ ହୋଇ ଯାଉଛନ୍ତି; ମାତ୍ର ଲକ୍ଷ୍ମୀଧର ସାର୍‌ଙ୍କ ମଣିଷ ପଣିଆ ହିଁ ସର୍ବୋତ୍ତମ କୃତିତ୍ୱ; ସ୍ୱଚ୍ଛଳତାରେ ସଂପୂର୍ଣ୍ଣ, ନମ୍ରତାରେ ସଂପନ୍ନ ଏକ ନିଆରା ବ୍ୟକ୍ତିତ୍ୱ ତାଙ୍କର ଏ ପଚସ୍ତରୀ ବର୍ଷ ପୂର୍ତ୍ତି ଅବସରରେ ମୁଁ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଛି ।

ମହାମୃତ୍ୟୁଞ୍ଜୟ ମନ୍ଦିର ଲେନ୍,
ସିଦ୍ଧମହାବୀର, ପୁରୀ -୨



# ପ୍ରଥମ ଅନୁଭୂତି

ଗୋବିନ୍ଦ ଚନ୍ଦ୍ର ମହାନ୍ତି

ମଣିଷର ଅଜାଣତରେ କେତେ କଥା ଘଟେ ! ସେ ସବୁ ମନେ ପଡ଼ିଗଲେ ମନଟା ଶିହିରି ଉଠେ ଓ ଆଶ୍ଚର୍ଯ୍ୟ ବି ଲାଗେ ।

ସମୟ ଆସେ ସମ୍ପର୍କଟା ମଧୁମୟ ହୋଇଯାଏ । ଗୋଟେ ମୁହୂର୍ତ୍ତର ନୁହେଁ- ସାରା ଜୀବନର । ସେଦିନ - ଏଦିନ ଭିତରେ କେତେ ଯେ ସଂରକ ଆଖି ପାଏନା ।

କଥାରେ ନିଛକତା ଥିବା ମଣିଷ ସିଏ, ବୃତ୍ତିରେ ଅଧ୍ୟାପକ, ତାଙ୍କ ମହାନତାକୁ ମାପି ହୁଏନା, ହୃଦୟରେ ଦୃଢ଼ତା ଓ ଭରା ସଂକଳ୍ପ ନେଇ ସେ ଦିନେ ଲେଖନୀ ଚାଳନା କରିଥିଲେ- ତେଲ,ଲୁଣ ସଂସାରର ନିଛକ ସତ୍ୟକୁ ପୁସ୍ତକ ମାଧ୍ୟମରେ ପରି ପ୍ରକାଶ କଲେ । ବନ୍ଧୁ, ମାନ, ସମ୍ମାନର ଅଧିକାରି ସେ ଆଜି । ମୁହଁରେ, ମୁହଁରେ ନିରାଟ ସତ୍ୟକୁ ପ୍ରକାଶ କରିବା ଡ: ଲକ୍ଷ୍ମୀଧର ଦାସ ମହୋଦୟଙ୍କୁ । ମୁଁ ମୋ ହୃଦୟ ଭରା ପ୍ରଣିପାତ କରୁଛି । ମୁଁ ତାଙ୍କୁ ଭଲ କରି ଜାଣିଛି, ଚିହ୍ନିଛି, ପରଖିଛି ମଧ୍ୟ । ତାଙ୍କ ରଚିତ କେତେ ଖଣ୍ଡି ପୁସ୍ତକ ମୁଁ ପାଠ କରି ସେ ଭାବର ଭାଷାରେ ମୁଁ ନୀଳ ସବୁଜୀମା, ନୀଳ ଦରିଆ, ଶ୍ୟାମଳ କେଦାର, କୋଇଲିର କୁହୁ ଗୀତି, ଭଅଁର, ପ୍ରଜାପତି ଢ଼େଣାଝାଡ଼ି ଉଡୁଥିବା, ଚଷିର ମୁହଁରେ ହଳିଆର ସ୍ୱର ଭିତରେ ମୁଁ ହଜିଯାଇଥିଲି । ନିପଟ ପଲ୍ଲୀ ଗାଁର ଜୀବନର ଦୃଶ୍ୟ ମୁଁ ଆଙ୍କୁ ଥିଲି ଆଖିରେ, ଆଖିରେ । ଓଡ଼ିଆର ହୃଦୟକୁ ଛୁଉଁଥିବା ସରଳ ଭାଷାକୁ (ଡ: ଲକ୍ଷ୍ମୀଧର ଦାସ) ତାଙ୍କ ରଚିତ ପୁସ୍ତକ (ଚନ୍ଦ୍ରଭାଗା)ରେ ଯେପରି ବର୍ଣ୍ଣନା କରିଛନ୍ତି ଯେ କେହି ଓଡ଼ିଆ ପାଠ କଲେ ସେ ଭାଷାରେ ବଗଳିତ ହୋଇ ଉଠିବ । ପାସୋରି ଥିବା ଜନ୍ମମାଟି ଗାଁକୁ ସେ ହୃଦୟ ଭିତରେ ବାରମ୍ବାର ମନେ ପକେଇବ ।

ଡ. ଲକ୍ଷ୍ମୀଧର ଦାସ- ବଟବୃକ୍ଷ ପରି ସହିଷ୍ଣୁ, ସେ ଜଣେ ନିଷ୍ପାପର ବ୍ୟକ୍ତିତ୍ୱ, ତାଙ୍କ ଡ଼ାଳ, କେନା, ମୁଣ୍ଡ, ଗଣ୍ଡି ଓ ଚେରରେ ମଧ୍ୟ ସରଳତା, ନିଛକତା, ସତ୍ୟତା ଓ ନିଷ୍ଠା ଭରି ରହିଚି । ଭରି ରହୁ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ପ୍ରଭୁ ଜଗନ୍ନାଥ ତାଙ୍କୁ ଲେଖନୀ ଚାଳନା ପାଇଁ ଶକ୍ତି ଯୋଗାଉ ଥାଆନ୍ତୁ ତାଙ୍କର ସୁଦୀର୍ଘ ଆୟୁ କାମନା କରି ମୁଁ ରହୁଛି । ନାଟ୍ୟକାର ।



# ଋଷି ପ୍ରତିମ ଶ୍ରୀଯୁକ୍ତ ଲକ୍ଷ୍ମୀଧର ଦାସ

ପ୍ରସନ୍ନ ମହାନ୍ତି

ଶ୍ରୀଯୁକ୍ତ ଲକ୍ଷ୍ମୀଧର ଦାସ ଓଡ଼ିଆ ସାହିତ୍ୟ ରାଜ୍ୟର ଜଣେ ଅମ୍ଳାନ ପ୍ରତିଭା । କବିତା, ଗଳ୍ପ, ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟ ତାଙ୍କ ବହୁମୁଖୀ ପ୍ରତିଭାର ପରିଚାୟକ । ନୀରବ ସାଧକ ଶ୍ରୀଯୁକ୍ତ ଦାସ ବାସ୍ତବରେ ଜଣେ ଋଷିପ୍ରତିମ ବ୍ୟକ୍ତିତ୍ୱ । ତାଙ୍କର ଲେଖା ଯେପରି ସରଳ କଥା ସେହିପରି ମନୋରମ । ଶ୍ରୀଯୁକ୍ତ ଦାସଙ୍କ ସଙ୍ଗେ କହି ବସିଲେ ସମୟ ସରିଯାଏ, କଥା ସରେନି । ଦେଖିଲା ମାତେ ଓଠରେ ତାଙ୍କର ହସ ଖେଳିଯାଏ ।

ବୟସାଧିକ୍ୟ ହେତୁ ଶରୀରରେ ଶିଥିଳତା ଦେଖାଗଲାଣି ହେଲେ ଲିଖନ କ୍ଷେତ୍ରରେ ଶିଥିଳତା ଦେଖା ଦେଇନି । ଏବେ ବି ତାଙ୍କ ଲିଖନୀ ପୂର୍ବପରି ଚଳଚଞ୍ଚଳ ।

ଭ୍ରମଣକାହାଣୀ ଲେଖିବାର ସଂକଳ୍ପ ନେଇ ଏବେ ଗୋଟାକ ପରେ ଗୋଟେ ଭ୍ରମଣ କାହାଣୀ ସୃଷ୍ଟି କରି ଚାଲିଛନ୍ତି ସେ ।

ଏତଦ୍ ବ୍ୟତୀତ ଶିକ୍ଷାଦାନ କ୍ଷେତ୍ରରେ ସେ ଜଣେ ଦକ୍ଷ ପ୍ରଫେସର । ଓଡ଼ିଆ ସାହିତ୍ୟରେ ତଥା ଓଡ଼ିଆ ଭାଷା ଶିକ୍ଷାଦାନ କ୍ଷେତ୍ରରେ ଦକ୍ଷତା ହାସଲ କରିଥିବା ଶ୍ରୀଯୁକ୍ତ ଦାସ ମୋର ଗୁରୁତୁଲ୍ୟ ।

ଆଜି ସେହି ଗୁରୁପ୍ରତିମ ଶ୍ରୀଯୁକ୍ତ ଦାସଙ୍କର ପଞ୍ଚସପ୍ତତିତମ ଜନ୍ମଦିନରେ ମୁଁ ପ୍ରାର୍ଥନା କରୁଛି ଶ୍ରୀ ଜଗନ୍ନାଥ ତାଙ୍କୁ ଦୀର୍ଘାୟୁ କରନ୍ତୁ । ତାଙ୍କ ଲେଖନୀକୁ ସୁଦୃଢ଼ କରନ୍ତୁ । ସେ ଏମିତି ଗୋଟାକ ପରେ ଗୋଟେ, କବିତା, ଗଳ୍ପ, ଭ୍ରମଣ କାହାଣୀ ଲେଖି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରନ୍ତୁ ।

ଶଗଡ଼ିଆ ସାହି, ପୁରୀ



# ଜାତକ ବିଚାରରେ

# ସ୍ରଷ୍ଟା ଡ. ଲକ୍ଷ୍ମୀଧର ଦାସ

ଅନାମ ଚନ୍ଦ୍ର ସାହୁ

ମଣିଷ ଜୀବନ ବୃତ୍ତି ଓ ପ୍ରବୃତ୍ତିର ସମାରୋହରେ ଗଢ଼ା । ତେବେ ସରକାରୀ କର୍ମଚାରୀ ଭାବେ ଅବସର ସମୟକୁ ସେବା ନିବୃତ୍ତିର ପରିଚୟ ଦିଆଯାଇଥାଏ । ବୃତ୍ତି କ୍ଷେତ୍ରରେ ଆର୍ଥିକ ପ୍ରାପ୍ତିର ପ୍ରାଧାନ୍ୟ ଦେଖିବାକୁ ମିଳୁଥିବା ବେଳେ ପ୍ରବୃତ୍ତି କ୍ଷେତ୍ରରେ ଗୁଣାତ୍ମକ ସ୍ଥିତିର ବିଚାର ଓ ଚଳଣୀ ଦେଖିବାକୁ ମିଳିଥାଏ । ସେବା ନିବୃତ୍ତି ପରେ ସାଧାରଣ ମଣିଷ ଜୀବନକୁ ଉପଭୋଗ କରିବାର ଦୃଷ୍ଟାନ୍ତ ଦେଖିବାକୁ ମଳୁଥିବା ସମୟରେ ଉତ୍ତମ ବ୍ୟକ୍ତି ସେବା ନିବୃତ୍ତି ସମୟରେ ବୌଦ୍ଧିକ, ସାଧନା, ସମାଜସେବା ଆଦି କାର୍ଯ୍ୟରେ ନିମଗ୍ନ ରହଥାନ୍ତି । ସେହିମାନେ ପ୍ରକୃତ ପକ୍ଷରେ ହିନ୍ଦୁ ଚାରି ଆଶ୍ରମ ମଧ୍ୟର ବାନପ୍ରସ୍ଥ ଆଶ୍ରମର ପୂଜାରୀ ଅଟନ୍ତି । ବ୍ରହ୍ମଚର୍ଯ୍ୟ ଆଶ୍ରମ ବା ଅବିବାହତ ଜୀବନ ଶିକ୍ଷା ପ୍ରାପ୍ତି ଓ ଅନୁଭୂତି ପ୍ରାପ୍ତିର ସମୟ ଗୃହସ୍ଥାଶ୍ରମ ମନୁଷ୍ୟର କାମ, ଅର୍ଥ ପ୍ରାପ୍ତି ଓ ବ୍ୟବହାରରେ ଅତିବାହିତ ହୋଇଥାଏ । ବାନପ୍ରସ୍ଥ ଆଶ୍ରମରେ ମଣିଷ ସମାଜ ପ୍ରତି ଅନୁରକ୍ତ ରହି ପ୍ରତ୍ୟକ୍ଷ ଓ ପରୋକ୍ଷରେ ସେବା କରିଥାଏ ! ଶରୀରରେ ନିସ୍ତେଜତା ଆସିଲେ ମଣିଷ, ମାନସିକ ସ୍ତରରେ ଈଶ୍ୱରଙ୍କ ସହିତ ସାନ୍ନିଧ ଲାଭ କରି ସନ୍ନ୍ୟାସ ଆଶ୍ରମରେ ଅଧିକାରୀ ହୋଇଥାଏ ।

୭୫ ବର୍ଷରେ ମଧ ଲକ୍ଷ୍ମୀଧର ଦାସଙ୍କର ବାନପ୍ରସ୍ଥ ଆଶ୍ରମ ଏବେବି ଜାଗ୍ରତ ଅବସ୍ଥାରେ ରହିଅଛି । ସେବା ନିବୃତ୍ତ ଅବସ୍ଥା ପରେ ସେ ସାହିତ୍ୟ, ସଂସ୍କୃତି, ଧର୍ମ ଆଦି ପରୋପକାର କାର୍ଯ୍ୟରେ ମନୋନିବେଶ କରିଚାଲିଅଛନ୍ତି ।

ସେ ଜୀବନରେ ବୃତ୍ତିଗତ ଯୋଗ୍ୟତାରେ ଉଚ୍ଚତମ ଶିଖରରେ ପହଚିଂବା ପାଇଁ ପ୍ରାରମ୍ଭିକ ସ୍ତରରେ ସଂଘର୍ଷରତ ଏବଂ ଆମାୟିକ ବ୍ୟବହାର ତଥା ସରଳ ଜୀବନ ଯାପନ ଦ୍ୱାରା ଆତ୍ମୀୟ, ବନ୍ଧୁ ଓ ମିତ୍ରଙ୍କ ଗହଣରେ ଆଦର୍ଶ ସ୍ଥାନୀୟ ବ୍ୟକ୍ତିତ୍ୱର ପ୍ରଦର୍ଶନରେ ସେ ଏକ ଦୃଷ୍ଟାନ୍ତ-ବ୍ୟକ୍ତିତ୍ୱ ।

## *ଡ. ଲକ୍ଷ୍ମୀଧର ଦାସଙ୍କ ଜାତକ ବିଚାର*

ପ୍ରାରବ୍ଧ ର ପରିମାଣାତ୍ମକ ବିଚାର,
କ୍ରିୟମାଣ କର୍ମର ଚେଷ୍ଟା, ନିଷ୍ଠା ଆଦି କର୍ମତତ୍ପର
ବିଷୟର ଏବଂ ସଂସ୍କାର କର୍ମର ଗୁଣାତ୍ମକ ସ୍ଥିତିର
ବିଚାର ନିମ୍ନରେ ପ୍ରଦତ୍ତ କରାଯାଉଅଛି ।

ଜନ୍ମ - ତା୧୨.୦୬.୧୯୩୯
ସମୟ - ରାତି ଘ.୦୯.୨୫ ପି.ଏମ୍ (ସୋମବାର)
ଜ୍ୟେଷ୍ଠ ଦଶମୀତିଥି କୃଷ୍ଣପକ୍ଷ

ଜନ୍ମସମୟକୁ ବୁଧ ମହାଦଶା - ବ୦୫/୦୨ମା/୧୬ଦିନ ବାକି ରହିଥିଲା
ରେବତୀ ନକ୍ଷତ୍ର/ ମୀନ ରାଶି ।

<u>ଗ୍ରହସ୍ଥିତି</u>

୧.ରବି = ୨୭°.୪୬'
୨.ଚନ୍ଦ୍ର = ୨୫°.୫୬'
୩.ମଙ୍ଗଳ = ୧୧°.୦୫'
୪.ବୁଧ = ୦୪°.୧୪'
୫.ବୃହସ୍ପତି = ୧୨°.୨୩'
୬.ଶୁକ୍ର = ୦୪°.୫୨'
୭.ଶନି = ୦୫°.୦୮'
୮.ରାହୁ = ୧୪°.୫୦'
୯.କେତୁ = ୧୪°.୫୦'
୧୦.ଲଗ୍ନ = ୧୨°.୨୬'

<u>ରାଶିଚକ୍ର</u>

| | | |
|---|---|---|
| ୫ରବି ଶୁକ୍ର / ୬ବୁଧ | ୪ଶନି କେତୁ | ୩ବୃ,ଚ / ୨ |
| ୭ | ୨୭ ୧,୨ | ୧ ଲଗ୍ନ ମଙ୍ଗଳ |
| ୮ / ୯ | ୧୦ ରାହୁ | ୧୧ / ୧୨ |

***ରାଜଯୋଗ :-***

(କ) ରୁଚକ ଯୋଗ :- ବଳିଷ୍ଠ ଦେହୀ, ବଦାନ୍ୟ ଓ ରକ୍ଷଣଶୀଳ ।
(ଖ) ମହାଯୋଗ :- ଗର୍ବିତ, ଧନ,ଯଶ ଓ ସମ୍ପଦ ଯୋଗ ।
(ଗ) ନୀଚଭଙ୍ଗ ରାଜଯୋଗ :- ବ୍ୟକ୍ତିତ୍ୱର ବିକାଶ ଓ ଧନ, ସମ୍ପଦଯୁକ୍ତ ।
(ଘ) କ୍ଷେତ୍ରସିଂହାସନ ଯୋଗ:- କର୍ମକ୍ଷେତ୍ରରେ ଗୁଣାତ୍ମକ ଯୋଗ ଯଶ, କୀର୍ତ୍ତି ଓ ପ୍ରତିଷ୍ଠାଯୁକ୍ତ ।
(ଙ) ହର୍ଷଯୋଗ:- ଅନ୍ୟାୟ କର୍ମହୀନ- ଶତ୍ରୁଠାରୁ ଜୟ, ରୋଗଠାରୁ ମୁକ୍ତି ।
(ଚ) ଭାଗ୍ୟବାନ ଯୋଗ :- ଧନ, ଯଶ ଓ ପ୍ରତିଷ୍ଠାଯୁକ୍ତ ।

***ଜାତକର ସାଧରଣ ଯୋଗ :-*** ଲେଖକ ଯୋଗ : ତୃତୀୟ ସ୍ଥାନରେ ତୃତୀୟାଧିପତି ବଳଯୁକ୍ତ ତଥା ଚନ୍ଦ୍ର (ମନର କାରକ)ଙ୍କ ସହିତ ହୃଦୟର କାରକ ଗୁରୁ (ବୃହସ୍ପତି)ଙ୍କ ବଳିଷ୍ଠ ଯୁକ୍ତି ଜାତକକୁ ମହାନ୍ ଭାଗ୍ୟବାନ କରାଇବା ସହିତ ଲେଖକ ହିସାବରେ ପ୍ରତିଷ୍ଠିତ କରାଇ ପାରିଅଛି ।

***ଭାଷାବିତ୍ ଯୋଗ :-*** ଓଡ଼ିଆ ଭାଷା ସହିତ ଅସମୀୟା ବଙ୍ଗଳା, ହିନ୍ଦୀ ଆଦି ଭାଷା ଉପରେ ତାଙ୍କର ବିଶେଷ ଦଖଲ ରହିଅଛି । ବୁଧ, ଜଣେ ଭାଷାବିତ୍ ତଥା ବିଦ୍ୟାର କାରକ ଭାବରେ ଜ୍ୟୋତିଷ ଶାସ୍ତ୍ରରେ ପ୍ରତିଷ୍ଠିତ । ବୁଧ ଏଠାରେ ଭାଗ୍ୟ (ଉଚ୍ଚ ବିଦ୍ୟା)ର ଅଧିପତି ହୋଇ ସ୍ୱକ୍ଷେତ୍ରଗତ ହୋଇ ଅଛନ୍ତି । ତେଣୁ ବିଦ୍ୟା, ଲେଖକ ଓ ଭାଷାର ଜ୍ଞାନ ପ୍ରଦାନ କରାଇଅଛନ୍ତି ।

* ବୁଧ (ବିଦ୍ୟା), ଶୁକ୍ର (ପାଣ୍ଡିତ୍ୟ), ବୃହସ୍ପତି ପ୍ରଜ୍ଞାର ଅଧିପତି ଅଟନ୍ତି ।

ଏହି ତିନିଗ୍ରହ ସ୍ୱକ୍ଷେତ୍ରରେ ଅବସ୍ଥିତ ଅଛନ୍ତି । ତେଣୁ ବିଦ୍ୟା,ବୁଦ୍ଧି ଏବଂ ଲେଖକ କରାଇବାରେ ଏମାନେ ସହାୟକ ହୋଇଅଛନ୍ତି । ବୃତ୍ତି ଓ ପ୍ରବୃତ୍ତିଗତ ଜୀବନ

ସହିତ ସେବା ନିବୃତ୍ତ ହୋଇ ମଧ୍ୟ ସାରସ୍ୱତ ସାଧନାରେ ବ୍ରତୀ ଅଛନ୍ତି ।

***ଧନ, ଭୂସମ୍ପଦ ଯୁକ୍ତ :-*** ଶନି ଓ ମଙ୍ଗଳ ଯଥାକ୍ରମେ ଭୂମି ଓ ଗୃହର କାରକ ଅଟନ୍ତି । ଏହି ଦୁଇ ଗ୍ରହଙ୍କ ମଧ୍ୟରେ ଗୃହ ପରିବର୍ତ୍ତନ ହୋଇଥିବାରୁ ଜାତବ୍ୟକ୍ତି ଭୂମି, ଗୃହ ସମ୍ପଦ କ୍ଷେତ୍ରରେ ବଳିଷ୍ଠ ସ୍ଥିତିରେ ରହିଅଛନ୍ତି ।

ସେହିପରି ଏହି ଦୁଇ ମହାଗ୍ରହଙ୍କ ମଧ୍ୟରେ ଦୃଷ୍ଟି ସମ୍ବନ୍ଧ ଥିବାରୁ ଜାତବ୍ୟକ୍ତିଙ୍କ ଜୀବନ ପ୍ରାରମ୍ଭିକ ଅବସ୍ଥାରୁ ସଂଘର୍ଷପୂର୍ଣ୍ଣ ଅଟେ । ଜୀବନର ଦ୍ୱିତୀୟାର୍ଦ୍ଧରେ ସେ ଶାନ୍ତି ଅନୁଭବ କରୁଅଛନ୍ତି ।

ଧନଳ କୁଟୁମ୍ବର ଅଧିପତି ଶନି ନୀଚ ଉଚ୍ଚ ରାଜଯୋଗ ପ୍ରାପ୍ତି କରିଥିବାରୁ ଜାତବ୍ୟକ୍ତି, ପାରିବାରିକ ଦୃଷ୍ଟିକୋଣରୁ ସୁଦୃଢ଼ ଅଟନ୍ତି ।

ମନ୍ଦିର ନିର୍ମାଣ :- ବ୍ୟୟ (ଦ୍ୱାଦଶ) ସ୍ଥାନରୁ ସତ୍‌କାର୍ଯ୍ୟରେ ଧନବ୍ୟୟ ତଥା ଦେବକାର୍ଯ୍ୟ ଓ ମନ୍ଦିର ନିର୍ମାଣାଦି ସମ୍ବନ୍ଧରେ ବିଚାର ଆଲୋଚନା କରାଯାଏ । ଏହି ସ୍ଥାନଟି ଶୁଭ (ଦେବ ଗୁରୁ) ବୃହସ୍ପତିଙ୍କ କ୍ଷେତ୍ର ତଥା ଶୁଭ ଗ୍ରହ ବୁଧ ସ୍ୱକ୍ଷେତ୍ରରୁ ସମ୍ପୂର୍ଣ୍ଣ ଦେଖୁଅଛନ୍ତି । ବୁଧ ନିଜେ (ଧର୍ମ) ଭାଗ୍ୟ ସ୍ଥାନର ଅଧିପତି ଅଟନ୍ତି । ସେ ନିଜେ ବିଷ୍ଣୁଙ୍କ ପ୍ରତିନିଧିତ୍ୱ କରିଥାଆନ୍ତି । ଡଃ ଦାସ ସ୍ୱଗ୍ରାମରେ ମନ୍ଦିରାଦି ନିର୍ମାଣ କରିଛନ୍ତି ।

ସନ୍ତାନ ସନ୍ତତି ଯୋଗ :- ଜାତକରେ ୫ମର କାରକ ଗୁରୁ, ଗୁରୁଚନ୍ଦ୍ରୀ ଯୋଗ ସୃଷ୍ଟି କରି ବଳିଷ୍ଠ ଥିବାରୁ ସନ୍ତାନ ଗତ ଗୁଣବାନ ଅଟନ୍ତି । ପଂଚମାଧିପତି ଶୁକ୍ର ମକର ଲଗ୍ନର ପରମ ଯୋଗ ଭାବରେ ସ୍ୱକ୍ଷେତ୍ରଗତ ହେତୁ ପରିମାଣାତ୍ମକ ଦୃଷ୍ଟିରୁ ଜାତବ୍ୟକ୍ତି ସନ୍ତାନକ୍ଷେତ୍ରରେ ବଳିଷ୍ଠ ସ୍ଥିତିରେ ରହିଅଛନ୍ତି ।

ବସୁମତୀ ଯୋଗ:- ଉପଚୟ ସ୍ଥାନରେ ସ୍ୱକ୍ଷେତ୍ରଗତ ଶୁଭଗ୍ରହମାନଙ୍କ ସ୍ଥିତିରୁ ଜାତବ୍ୟକ୍ତି ଆର୍ଥିକ ଦିଗରେ ଅତ୍ୟନ୍ତ ବଳିଷ୍ଠ ସ୍ଥିତିରେ ରହିଅଛନ୍ତି ।

***ସମାଲୋଚନାତ୍ମକ / ଗବେଷଣାତ୍ମକ ଯୋଗ:-*** ଜାତକରେ ତୃତୀୟ, ଅଷ୍ଟମ ତଥା ପଂଚମ ଭାବର ବଳିଷ୍ଠ ସ୍ଥିତି ସମାଲୋଚନାତ୍ମକ ଜ୍ଞାନର ବୃଦ୍ଧିରେ ସହାୟକ ହୋଇଥାଏ । ମାତ୍ର ଏହି ତିନି ଭାବରେ ସମ୍ମିଳତ ସଂଯୋଗରୁ ଗବେଷଣାତ୍ମକ ଯୋଗ ସୃଷ୍ଟି ହୋଇଥାଏ । ଅଷ୍ଟମରୁ ଗବେଷଣା, ତୃତୀୟରୁ ଗବେଷଣା ସହିତ ଲେଖାଲେଖି ଆଦି ସମାଲୋନାତ୍ମକ ସ୍ଥିତିରେ ବିଚାର କରାଯାଏ ।ରାହୁ ତଥା କୁମ୍ଭ ରଶିର ସ୍ଥିତିରୁ ଗବେଷଣା ସମ୍ବନ୍ଧ ବିଚାର କରାଯାଏ । ଏହି ପରିପ୍ରେକ୍ଷିରେ ଡକ୍ଟର ଦାସଙ୍କ ତୁଳନାତ୍ମକ ଗବେଷଣାରେ କୃତିତ୍ୱ ଏବଂ ଅନ୍ୟମାନଙ୍କ ଗବେଷଣାରେ ତତ୍ତ୍ୱାବଧରକତା କରିବା ଏହାର ସୂଚକ ।



# ଉତ୍କଳ ବିଭ୍ରାଜ ପୁରୁଷ ଡଃ ଲକ୍ଷ୍ମୀଧର ଦାସ

ରବୀନ୍ଦ୍ରନାଥ ପଟ୍ଟନାୟକ

୨୦୧୪ ମସିହା ଜୁନ୍ ମାସ ୧୨ ତାରିଖ ବେଳକୁ ଡଃ ଲକ୍ଷ୍ମୀଧର ଦାସଙ୍କୁ ୭୫ ବର୍ଷ ପୂର୍ଣ୍ଣ ହେବ । ପୁରୀ ଜିଲ୍ଲା ଗୋପ ନିକଟ ଓଟରଶାସନ ଗ୍ରାମରେ ୧୯୩୯ ମସିହାରେ ଜନ୍ମିତ ଏହି ଅନନ୍ୟ ପ୍ରତିଭା ସଂପନ୍ନ ବ୍ୟକ୍ତିଙ୍କ ସଂପର୍କରେ ଦୃଷ୍ଟିପାତ କରିବାର ବହୁବିଧ ମାର୍ଗ ଉନ୍ମୋଚିତ ହୋଇ ରହିଅଛି । ତାଙ୍କ ପରି ଏଇ ମାଟି ମା' କୋଳରେ କେବେକେବେ ଯେଉଁମାନେ ଜନ୍ମ ଲାଭ କରିଥାନ୍ତି, ସେମାନଙ୍କୁ ପ୍ରକୃତି ଶକ୍ତି ପ୍ରଦାନ କରି ତାଙ୍କ ସୁନ୍ଦର ବାଟିକାରେ ସେ ମଣିଷର ଚିତ୍ତକୁ ନିର୍ମଳ ଓ ସୁଗନ୍ଧିତ କରିଥାନ୍ତି । ପ୍ରକୃତି କୋଳରେ ସେମାନେ ବଢ଼ି ଚାଲନ୍ତି- ଅତିକାୟ-ମନୁଷ୍ୟ-ବୃକ୍ଷଟିଏ ଉଭା ହୋଇ, ସମଗ୍ର ପ୍ରାଣୀ ଜଗତର ଅଶେଷ ମଂଗଳ ବିଧାନ କରିଥାନ୍ତି । ଶ୍ରୀ ଲକ୍ଷ୍ମୀଧର ଦାସ ସେହିପରି ଜଣେ ବ୍ୟକ୍ତି, ଯାହାପାଇଁ ପ୍ରକୃତିଙ୍କର ଆଶୀର୍ବାଦ ଚିରବିଦ୍ୟମାନ !

ନଚେତ୍ କଣ ମାଟ୍ରିକ ପାଶ୍ କରିନଥିବା ୧୮ ବର୍ଷ ବୟସରୁ ଦୁର୍ଗମ କୋରାପୁଟ ଜିଲ୍ଲାର ଗ୍ରାମ ମଙ୍ଗଳ ବିଭାଗର ଏକ ସେବାଶ୍ରମରେ ଜଣେ ସାଧାରଣ ସେବକ ଭାବରେ ନିଜର ଜୀବନ ଆରମ୍ଭ କରିଥିବା ପିଲାଟି ପରବର୍ତ୍ତୀ ଅବସ୍ଥାରେ ଓଡ଼ିଆ, ଇତିହାସ ଓ ରାଜନୀତି ବିଜ୍ଞାନ ତିନିତିନୋଟି ସ୍ନାତକୋତ୍ତର ଡିଗ୍ରୀ ଓ ସାହିତ୍ୟରେ ପି.ଏଚ୍.ଡ଼ି କରି ଦୀର୍ଘ ୪୦ ବର୍ଷରୁ ଅଧିକ କାଳ ଶିକ୍ଷା-ସେବା କ୍ଷେତ୍ରରେ ଶିକ୍ଷକ, ଅଧ୍ୟାପକ, ପ୍ରାଧ୍ୟାପକ ଓ ବରିଷ୍ଠ ପ୍ରାଧ୍ୟାପକ ଭାବରେ ନିଯୁକ୍ତି ପାଇଥାନ୍ତେ ! ସହଧର୍ମିଣୀ ସ୍ନେହଲତାଙ୍କର ନିବିଡ଼ ସ୍ନେହ, ଅନୁରାଗ ଏବଂ ମହାପ୍ରଭୁଙ୍କର ଅସୀମ କୃପା ଫଳରେ ଲକ୍ଷ୍ମୀଧରଙ୍କର ଜୀବନ ଧନ୍ୟ, ଏଇ ମାଟି ମା' ଧନ୍ୟା-ଏହା ନିଃସନ୍ଦେହ କୁହାଯାଇପାରେ ।

ଏହି ନିବନ୍ଧରେ ଲେଖକ ଡଃ ଦାସଙ୍କ ଏକାଧିକ ବାର ଆଳାପ କରିବାର ସୁଯୋଗ ପ୍ରାପ୍ତ ହେବା ସହ ଶ୍ରୀକ୍ଷେତ୍ର ଓ ଆଖପାଖ ଅଂଚଳରେ ଅନୁଷ୍ଠିତ ହେଉଥିବା ବିଭିନ୍ନ ସାରସ୍ୱତ ଓ ସାଂସ୍କୃତିକ ସମାରୋହ ତଥା ଆଲୋଚନା ଚକ୍ରରେ ସ୍ୱଳ୍ପ ସମୟ ପାଇଁ କଥାଭାଷା ହେବାର ସୌଭାଗ୍ୟ ପାଇଥାଏ । ମୋର ବ୍ୟକ୍ତିଗତ ମତରେ ଏତିକି କହିବି ଯେ, ଶ୍ରୀ ଦାସଙ୍କ ପରି ଜଣେ ସାଧାସିଧା, ମେଳାପୀ, ମିଷ୍ଟଭାଷୀ,

ଅତିଥିପ୍ରିୟ, ସ୍ନେହୀ ଓ ଶାନ୍ତ ସରଳ ସ୍ୱଭାବର ମଣିଷକୁ ଗର୍ବ, ଅହଙ୍କାର ଏବଂ ଆତ୍ମପ୍ରଚାର ପରି ବିକଟ ଚିନ୍ତାଧାରା ମୋଟେ ସ୍ପର୍ଶ କରିପାରି ନାହିଁ ।

ଡଃ ଦାସଙ୍କ ପିତା ଅମରେଶ୍ୱର ଥିଲେ ଜଣେ ଶିକ୍ଷା ଓ ସଂସ୍କୃତି-ପ୍ରେମୀ ! ମାତା କ୍ଷେତ୍ରମଣୀ ସ୍ୱାମୀ ଅନୁରକ୍ତା ଏବଂ ଭଗବତ୍-ପ୍ରେମୀ । ପିତାମାତାଙ୍କ ଗୁଣରେ ବଳୀୟାନ ତୃତୀୟ ସନ୍ତାନ ଲକ୍ଷ୍ମୀଧର ଅଳ୍ପ ବୟସରୁ ମଧ୍ୟଯୁଗୀୟ ରୀତିରେ ଭଜନ, ଜଣାଣ ଆଦି ଭକ୍ତି-ଗୀତ ରଚନା କରୁଥିଲେ ।୧୯୬୫ ମସିହାରୁ ନିରବଚ୍ଛିନ୍ନ ସାହିତ୍ୟ ସୃଷ୍ଟି କରି ଓଡ଼ିଆ, ବଙ୍ଗଳା ଓ ଅହମିୟା ଭାଷାରେ ବହୁପୁସ୍ତକ ରଚନା କରିଥିଲେ । ଅହମିୟା ଭାଷାରେ ଆଠଟି ପ୍ରବନ୍ଧ 'ନତୁନ ପ୍ରବାହ' ପତ୍ରିକାରେ ୧୯୭୨-୭୩ରେ ପ୍ରକାଶିତ ହେବା, ତାଙ୍କର ପୂର୍ବାଞ୍ଚଳୀୟ ଭାଷା-ସାହିତ୍ୟ ଗଭୀର ଅଧ୍ୟୟନର ଉଦାହରଣ ଏବଂ ଅନ୍ୟ ପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରୁ ୧୯୮୫ ମସିହାରେ "ଅସମୀୟା ସାହିତ୍ୟ-ପରିକ୍ରମା," ୧୯୯୦ ମସିହାରେ "ଉପନ୍ୟାସ ତତ୍ତ୍ୱ ଓ ଓଡ଼ିଆ-ଉପନ୍ୟାସର କ୍ରମାଭିବ୍ୟକ୍ତି," ୧୯୯୧ ମସିହାରେ 'ଛନ୍ଦ ଓ ଅଳଙ୍କାର,' ୧୯୯୭ ମସିହାରେ "ଭଞ୍ଜ ସାହିତ୍ୟର ବର୍ଣ୍ଣ ଓ ବର୍ଣ୍ଣାଳି" ପ୍ରମୁଖ ପୁସ୍ତକ ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ତରରେ ସହାୟକ ପୁସ୍ତକ ରୂପେ ମନୋନୀତ ଏବଂ ପ୍ରଚଳିତ !

ଅନୁବାଦ ସାହିତ୍ୟର ୧୯୯୧ ମସିହାରେ ପ୍ରକାଶିତ "ଇଉରୋପର ଇତିହାସ," "ଅସମୀୟା କ୍ଷୁଦ୍ରଗଳ୍ପ" ଓ "ସାତୋଟି ଅସମୀୟା କ୍ଷୁଦ୍ରଗଳ୍ପ" ପାଠକୀୟ ଶ୍ରଦ୍ଧାଲାଭ କରିପାରିଛି । କବିତା ସଂକଳନ "ଚିତ୍ରିତ ଚଇତ୍" ଓ "ସକାଳର ଚନ୍ଦ୍ରଭାଗା" ପରି ପୁସ୍ତକ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ଅଧିକ ପ୍ରାଣବନ୍ତ କରିପାରିଛି । ଅଧ୍ୟାପକ ଭାବରେ ନିଜେ ଗବେଷଣା କରିବା ସହିତ ଓଡ଼ିଆ ଓ ଅସମୀୟା ଭାଷାର ଅଧ୍ୟାପକଙ୍କ ଗବେଷଣାର ଦିଗ୍‌ଦର୍ଶକ ଭାବରେ ସେ ନିଜକୁ କାର୍ଯ୍ୟରତ ରଖୁଥିଲେ । ଅସମୀୟ ଭାଷାରେ ଡ଼ିପ୍ଲୋମା ହାସଲ କରିଥିବା ଏହି ବିଚକ୍ଷଣ ବ୍ୟକ୍ତି ଜୀବନସାରା ଅଧ୍ୟାପନାରେ ନିଜକୁ ସଂପୂର୍ଣ୍ଣ ଉତ୍ସର୍ଗ କରିଥିଲେ ।

ଶ୍ରୀ ଦାସଙ୍କର ବିଶେଷ ଗୁଣ ହେଉଛି, ତାଙ୍କ ସଂପର୍କରେ ଆସିଥିବା ସାରସ୍ୱତ ସ୍ରଷ୍ଟାଙ୍କ ସଂପର୍କରେ ନିଜର ଜ୍ଞାନ ବୃଦ୍ଧି କରିବା । ତାଙ୍କ ଜ୍ଞାତ ସାରରେ ଥିବା ସାରସ୍ୱତ ସ୍ରଷ୍ଟାଙ୍କୁ ସେ କେବେ ବି' ହେୟ ମନେ କରନ୍ତି ନାହିଁ । ଜଣେ ପ୍ରବୀଣ ନିରୀକ୍ଷକ ଭାବରେ ଅତି ନିକଟରୁ ଅନ୍ୟ ସାରସ୍ୱତ ସ୍ରଷ୍ଟାଙ୍କ ସୃଷ୍ଟିକୁ ପାଠ କରି, ତ୍ରୁଟି ଦର୍ଶାଇ, ଉତ୍ସାହ-ବର୍ଦ୍ଧକ ଶବ୍ଦରେ ପ୍ରୋତ୍ସାହନ ଦେଇଥାନ୍ତି । ସେଇ ତ'

ମହତ୍ ଜନର ମହତ୍ ଚିନ୍ତା ! ଜଣେ ସାଂସାରିକ ମଣିଷ ଭାବରେ ବିବିଧ କର୍ମରେ ଲିପ୍ତ ଥାଇ, ନିରକ୍ଷର ଜନଙ୍କୁ ସାକ୍ଷର କରିବା ନିମିତ୍ତ ବିଶ୍ୱବିଦ୍ୟାଳୟ ନିୟୋଗ ଆନୁକୁଲ୍ୟରେ ପରିଚାଳିତ "ପ୍ରୌଢ଼ଶିକ୍ଷା" କାର୍ଯ୍ୟକ୍ରମର ପରିଚାଳକ ଏବଂ ଇନ୍ଦିରାଗାନ୍ଧୀ ମୁକ୍ତ ବିଶ୍ୱବିଦ୍ୟାଳୟ କାଉନ୍‌ସିଲର ଭାବରେ କାର୍ଯ୍ୟକରି ସେ ଉଚ୍ଚ ପ୍ରଶଂସିତ ।

ଜଣେ ସଂପର୍କୀୟ ବଂଧୁ ଭାବରେ ଡଃ ଦାସଙ୍କ ସହ ମୋ' ପରିଚୟ ସୃଷ୍ଟି ହେବାରେ ବହୁ ପୂର୍ବରୁ ମୋର ସ୍ୱରଚିତ ଗଳ୍ପ ସଂକଳନ 'ତୃଷ୍ଣା'ର ପ୍ରଶଂସା ମୋତେ ପ୍ରେରଣା ଦେଇଥିଲା । ନିଜକୁ ସଜାଡ଼ି ନେଇ ଅଧିକ କିଛି ଲେଖାଲେଖି କରିବାର ସ୍ୱପ୍ନ ଜାଗ୍ରତ ହୋଇଥିଲା । ଜଣେ ପ୍ରତିଷ୍ଠିତ ବ୍ୟକ୍ତି, କାୟ ଓ ମନରେ ଅନ୍ୟପ୍ରତି ସଂବେଦନଶୀଳ ନ ହୋଇପାରେ କିନ୍ତୁ ବାକ୍ୟରେ ଅନ୍ୟକୁ ଉତ୍ସାହିତ କରିବା କର୍ତ୍ତବ୍ୟ ନୁହେଁ କି ? ବୃକ୍ଷ ତାର ପ୍ରାକୃତିକ ସମାପ୍ତି ପୂର୍ବରୁ ସାରା ଜୀବଜଗତକୁ ଯାହା ସବୁ ଦାନ କରିଥାଏ, ତାହା ସହ କ'ଣ କିଛି ତୁଳନା କରାଯାଇପାରେ ?

ସେହି ଅତୁଳନୀୟ ଯୋଗଜନ୍ମା ବିଭ୍ରାଜ ପୁରୁଷ ଡଃ ଲକ୍ଷ୍ମୀଧର ଦାସଙ୍କ ଆଜୀବନ କଠୋର ସାରସ୍ୱତ ସାଧନାକୁ ଯଥୋଚିତ ସମ୍ମାନ ଓ ପୁରସ୍କାର ପ୍ରଦାନ କରିବାରେ ଯେଉଁ ବ୍ୟତିକ୍ରମ ରହିଅଛି ତାହା ଆମ୍ଭମାନଙ୍କୁ ବ୍ୟଥିତ କରେ, ମହାପ୍ରଭୁ ଶ୍ରୀ ଦାସଙ୍କୁ ସୁସ୍ଥ ଓ ନିରୋଗ ରଖିବା ସହ ସପରିବାର ଆନନ୍ଦରେ କାଳାତିପାତ କରିବାକୁ ଆଶିଷ ପ୍ରଦାନ କରନ୍ତୁ ।

ହୀରକ ଜୟନ୍ତୀ ପାଳନ ଅବସରରେ ଆପଣଙ୍କ ସର୍ବଶୁଭ ମନାସୁଛି ।

ସମ୍ପାଦକ - "ନେପଥ୍ୟ ପରିଚୟ"

ଏବଂ

"ଶ୍ରୀକ୍ଷେତ୍ର ସାହିତ୍ୟ ସଂସଦ", ପୁରୀ

ବାସେଳି ସାହି, ଜଗନ୍ନାଥ ନଗର, ପୁରୀ- ୧

ମୋ - ୯୪୩୮୫୬୯୫୬୨



# ସ୍ନେହାବତାର ଲକ୍ଷ୍ମୀଧର

*ରୁକ୍ମିଣୀ ଶତପଥୀ*

ସାତ ମାସର ଝିଅକୁ ଧରି ବଲାଙ୍ଗୀରରେ ପହଞ୍ଚିଲା ପରେ ଭାରି ନିରସିଆ ଲାଗୁଥାଏ । ସବୁଆଡ଼େ ନିମ୍ବଗଛ, ଟାଙ୍ଗରା ଭୁଇଁ ପାଣିର ଘୋର ଅଭାବ । ଉପକୂଳ ଅଞ୍ଚଳର ସର୍ବସୁଲଭତା ସେଠାରେ ନାହିଁ । ଗାଁଟିଏ ଭଳି ଅଧ୍ୟାପକ କଲୋନୀ, ହାତଗଣତି ଅଳ୍ପ ଅଧ୍ୟାପକଙ୍କୁ ନେଇ ଛୋଟ ଗାଁର ପରିବେଶ । ଚିହ୍ନା ଲୋକ କେହି ନାହିଁ । ମାସେ ପରେ ବିବାହିତା ନଣନ୍ଦ ସିଟିଟ୍ରେନିଂ ପାଇବା ପହଞ୍ଚିଲେ । ନରିଆଣୀ (କାମବାଲୀ) ମାଠିଆରେ ଦୂର କୂଅରୁ ପାଣି ବୋହି ଆଣିବ, ଗାଧୁଆ ଘରେ ମାଟି ହାଣ୍ଡିରେ ପାଣି ପୁରାଇବ । ରୋଷେଇ ପାଇଁ ମଧ୍ୟ ସେ ପାଣି ଆଣିଦେବ । ତେବେ ଯାଇ ଘରର ସବୁ କାମ ହୋଇପାରିବ । ଛୋଟ ଝିଅଟିକୁ ନେଇ ମୁଁ ଭାରି ହଇରାଣ ହେଉଥାଏ । ଆମ ନଟବାବୁ କହିଲେ ପୁରୀ ସାଇଡ଼ର ଜଣେ, କଲୋନୀ ଶେଷ ମୁଣ୍ଡରେ ଅଛନ୍ତି । ତାଙ୍କର ଛଅଟି ପିଲା ପୁତୁରା ଭଣଜା ହୋଇ ବଡ଼ ପରିବାର । ସେ ବାବୁ ଭାରି ଭଲ ମଣିଷ । ସୁବିଧା ଅସୁବିଧାରେ ତାଙ୍କୁ ପଚ୍ଚରିବୁ, ସେ ସାହାର୍ଯ୍ୟ କରିପାରନ୍ତି । ଆଗକୁ ପ୍ରଥମାଷ୍ଟମୀ ଆସୁଥାଏ । ମୋ ଝିଅର ପ୍ରଥମ "ପ୍ରଥମାଷ୍ଟମୀ' କେମିତି କ'ଣ ହେବ । ମୋର ପିଠାପଣା ରନ୍ଧାବଢ଼ା ଉପରେ ବିଶେଷ ଦକ୍ଷତା ନଥାଏ । ଏମିତି ଦିନେ ମନ ମାରି ବସି ଥିବାବେଳେ ଇଚ୍ଛାହେଲା ତାଙ୍କ ଘରକୁ ଯିବାକୁ । ଚ଼ଲି ଚ଼ଲି,

ଝର ଝର ଝରଣାଭଳି ଅନର୍ଗଳ ଆତ୍ମିୟତା ଭରା ମିଠା କଥାରେ ମୋ ଝିଅକୁ ତାଙ୍କର ସାନପୁଅ ଗୁଲୁ ସହ ଲଗେଇ ବୋହୂ କରିନେଲେ ମିସେସ୍ ଦାସ ବନାମ ସମୁଦୁଣୀ । ସେ ଡ଼ାକ ଆଜିଯାଏ ବାନ୍ଧିଛି ଆମ ଦୁଇ ପରିବାରକୁ । ଝିଅର ଅଷ୍ଟମୀରେ ନିଜର ଭଳି ସବୁ ପିଠାପଣା, କ୍ଷୀରି ତରକାରୀ କଲେ ରାତିସାରା ଲାଗି । ମୁଁ ଅପାରଗ ଖାଲି ତାଙ୍କ ନିର୍ଦ୍ଦେଶରେ କଲୋନୀ ସାରା ପିଠା ବାଣ୍ଟିଛି । ତାପରେ ଭଲ ଲାଗିଲା ସେ ନିମ୍ବବଣ । ତାର ନାଲିମାଟି ଲାଗିଲା ନିଜର, ମନର ସରସତା ଫେରିଆସିଲା ସମୁଦୁଣୀ ଓ ତାର ସାନ ସାନ ପିଲାଙ୍କର ସ୍ନେହ ଶ୍ରଦ୍ଧାରେ ।

ବାବୁ ଲକ୍ଷ୍ମୀଧର ଦାସ କଲେଜରେ ଅବା N.S.S. କାମରେ ବ୍ୟସ୍ତ ରହନ୍ତି । ହଠାତ୍ ଦିନେ ମୁଁ ତାଙ୍କ ଘରେ ରବିବାର ୧୦ଟା ବେଳେ ଯାଇଥାଏ । କାରଣ ମୋ ଝିଅ ତାର କ୍ଷୀର ବୋତଲ ଛାତିରେ ଯାକି ଲୁଲୁଅପା ଗୁଗୁଲି ସାଙ୍ଗେ ଖେଳିବାକୁ ଚାଲିଆସେ । ମୋର କାମ ତାଙ୍କୁ ଘର ଘର ଖୋଜି ଯାଇ ଧରିବା ସେଦିନ ସେ ସମୁଦୁଣୀ ଘରେ ଖେଳୁଥାଏ । ତାଙ୍କ ବାବୁ ମାଂସ ତରକାରୀ ରାନ୍ଧୁଥାନ୍ତି । ମୁଁ ଆଜନ୍ମ ନିରାମିଷାଶୀ ସହି ପାରୁନଥାଏ । ଏତେ ସୁସ୍ୱାଦ ଯୁକ୍ତ ଗନ୍ଧ କେବେ ମୋ ନାକରେ ବାଜି ନଥିଲା । ଟିକେ ସେ ତରକାରୀ ଚାଖିବାକୁ ପ୍ରବଳ ଇଚ୍ଛା ହେଉଥାଏ । ତାହା ଚିକେନ୍ କି ମଟନ୍ ମୁଁ ଜାଣିନି । ବଡ଼ପୁଅ ପେଟରେ ଥାଏ । ଅସମ୍ଭବ ଭାବରେ ଇଚ୍ଛାକୁ ଅଟକାଇଲେ ମଧ୍ୟ ସେ ସ୍ଥାନରୁ ଉଠି ଆସିପାରୁନଥାଏ । ମନ ଜାଣିଲା ଭଳି ସମୁଦୁଣୀ ପ୍ଲେଟରେ କଷାମାଂସ ଆଣି ମୋତେ ବାଧ୍ୟ କଲା ଟିକେ ଖାଇବାକୁ । ମୁଁ ମନେ ମନେ ଜଗନ୍ନାଥଙ୍କୁ ଧନ୍ୟବାଦ ଦେଲି । ବିନା ବାକ୍ୟ ବ୍ୟୟରେ ମାଂସ ଖାଇଲି ଜୀବନରେ ପ୍ରଥମଥର ପାଇଁ ଆଇଁଷ ଖାଦ୍ୟ ଖାଉଥାଏ ।

ଆଃ ! କି ତୃପ୍ତି ! ଏତେ ସ୍ୱାଦୁ ଥାଏ ଆମିଷରେ । ଆଗରୁ ଘରେ ଆମ ନଟବାବୁ ନିଜେ ରାନ୍ଧି ନିଜେ ଖାଆନ୍ତି । ତାହାର ଏତେ ବାସ୍ନା ନ ଥାଏ । ମୁଁ ସେ ତରକାରୀ କେବେ ଛୁଇଁ ନାହିଁ । ସେଦିନ କିନ୍ତୁ ସମୁଦୁଣୀ ଘରେ ସେ ମାଂସ ଖାଇ ମୋତେ ଅମୃତ ଭଳି ଲାଗୁଥାଏ । ତାର ବାସ୍ନା ବି କେତେ ସୁନ୍ଦର । ସତରେ ସମୁଦି ଲକ୍ଷ୍ମୀଧର ଦାସ ବହୁ ସୁଗୁଣରେ ପରିପୂର୍ଣ୍ଣ । ସମୁଦୁଣୀ କହେ ସେ ତୃଣମୂଳରୁ ଶିକ୍ଷକତା କରି ଶେଷରେ ଅଧ୍ୟାପକ ହୋଇପାରିଥିଲେ । ସେ ନିଜର ମା' ଭାଇ' ସ୍ତ୍ରୀ ପିଲା, ସମସ୍ତଙ୍କ ପ୍ରତି ଦାୟିତ୍ୱବାନ । ସଯତ୍ନରେ ସମସ୍ତଙ୍କୁ ସ୍ନେହ ପ୍ରୀତି ଦେଇ କିପରି ଗୃହସ୍ଥଟି ହେବା ଦରକାର ତାର ମୂର୍ତ୍ତିମନ୍ତ ରୂପ ସମୁଦି ମହାଶୟ ନିଜେ । ଘରେ ଧନ ନ ଥିଲେ ବି ପତ୍ନୀ ବା ପିଲାମାନଙ୍କୁ କେବେ ଅଣହେଳା ଅବହେଳା କରିନାହାନ୍ତି । ତା ସବୁ ସତ୍ତ୍ୱେ ବନ୍ଧୁ ସତୀର୍ଥ ମାନଙ୍କୁ ଟଙ୍କାଧାର କରି ମଧ୍ୟ ଭୂରି ଭୋଜନ କରାନ୍ତି । କେବେ କାହା ଉପରେ କ୍ରୋଧ କରି କୁବାକ୍ୟ ପ୍ରୟୋଗ କରିଥିବା ଆଜିଯାଏ ମୁଁ ଦେଖିନି । ରୋଗପୀଡ଼ା, ଅଭାବ ଅନାଟନକୁ ଜିତିଛନ୍ତି ତାଙ୍କର ସଦା ଦୃଢ଼ ଆତ୍ମ ବିଶ୍ୱାସରେ । ଆଜି ଈଶ୍ୱର ତାଙ୍କୁ ସବୁଥିରେ ପରିପୂର୍ଣ୍ଣ

କରିଛନ୍ତି । ତଥାପି ସେ ଅହଂକାର ନ କରି ସଦା କର୍ମଠ । ସମୁଦୁଣୀ ମଧ୍ୟ ସମାନ ପ୍ରକୃତିର । ସେମାନେ ଦୁହେଁ "ମେଡ୍ ଫର ଇଚ୍ ଅଦର୍" ଆୱାର୍ଡ୍ ପାଇବା ଯୋଗ୍ୟ । ସେମାନଙ୍କୁ ଦେଖିଲେ ମୋତେ ଲାଗେ ଭଗବାନ୍ ନିଶ୍ଚୟ ଅଛନ୍ତି । ସାକ୍ଷାତ୍ ଲକ୍ଷ୍ମୀଧର ନାରାୟଣ । ମୋ ସାମାନ୍ୟ ସୁକୃତରୁ ମୋତେ ବନ୍ଧୁ ରୂପରେ ମିଳିଛନ୍ତି । ମୋ ଜୀବନ ଘୋର ବାଲିବନ୍ତ । ସ୍ନେହ ଶ୍ରଦ୍ଧା ମିଳିପାରେ ଅବା ମିଳିପାରେ କଙ୍କର । ତାହା ନିର୍ଭର କରେ ମୋ ଭାଗ୍ୟ ବିଧାତା ଉପରେ । କିନ୍ତୁ ସମୁଦି ଲକ୍ଷ୍ମୀଧର ବାବୁ ଓ ସମୁଦୁଣୀ ସ୍ନେହଲତା ଦେବୀ ନିଶ୍ଚୟ ମୋତେ ଦେଖିଲେ ସ୍ନେହଭରା କଥାପଦେ କହିବେ ଏହା ମୁଁ ଦୃଢ଼ ନିଶ୍ଚିତ । ଅନେକ ଅନୁଭୂତି ତାଙ୍କ ସହ ଅନେକ ବଦାନ୍ୟତା ତାଙ୍କର ମୋ ପ୍ରତି । ଏତିକ ଲେଖି ମୁଁ ସେ ସବୁକଥା ମୃତ୍ୟୁ ପର୍ଯ୍ୟନ୍ତ ସାଇତି ରଖିବି ମୋ ମନ ମନ୍ଦିରରେ ।

ସି.ଡ଼ି.ଏ , କଟକ



# ପ୍ରାଇମେରୀରୁ ପ୍ରାଧ୍ୟାପକ

*ଶ୍ରୀ ଆର୍ତ୍ତତ୍ରାଣ ମାନସିଂହ*

ଆମ ଭିତରେ ଏପରି ଜଣେ ଜଣେ ମଣିଷ ଥାନ୍ତି । ଯେଉଁମାନଙ୍କ ଅଗ୍ରଗତିରେ କୌଣସି ବାଧାବନ୍ଧନ ପ୍ରତିବନ୍ଧକ ସୃଷ୍ଟି କରି ପାରେନା । ସାହସ୍ୟ ସୈନିକ ପରି ସମସ୍ତ ପ୍ରତିକୂଳ ପରିବେଶ, ପରିସ୍ଥିତି ବିରୁଦ୍ଧରେ ସଂଗ୍ରାମ କରି ଆଗକୁ ଆଗେଇ ଯିବା ପାଇଁ ସେ ସମର୍ଥ ହୋଇଥାନ୍ତି । ଉନ୍ନତିର ଚରମ ସୋପାନରେ ନ ପହଞ୍ଚିବା ପର୍ଯ୍ୟନ୍ତ ତାଙ୍କୁ ବିରାମ ମିଳେନା । ଅବସର ପ୍ରାପ୍ତ ବରିଷ୍ଠ ପ୍ରାଧ୍ୟାପକ ବନ୍ଧୁ ଡଃ ଲକ୍ଷ୍ମୀଧର ଦାସ ଏଇମିତି ଏକ ବ୍ୟକ୍ତିତ୍ୱ ।

ତାଙ୍କ ସହ ଆଳାପ ଆଲୋଚନାରୁ ଜାଣିବାକୁ ପାଇ ବିସ୍ମିତ ହେଲି, ସେ କେବଳ ପ୍ରାଇମେରୀ ଓ ମାଧ୍ୟମିକ ଶିକ୍ଷା ବିଧିବଦ୍ଧ ଭାବେ ସମାପ୍ତ କରି ପିତାଙ୍କ ଆର୍ଥିକ ଦୁରାବସ୍ଥା ଯୋଗୁ ପ୍ରଥମେ ଗ୍ରାମ ମଙ୍ଗଳ ବିଭାଗର ଏକ ସେବାଶ୍ରମରେ ଜଣେ ସେବକ ରୂପେ ଚାକିରି ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ଘରୋଇ ଭାବେ ମାଟ୍ରିକ୍ ପାଶ୍‌କରି ବି.ଜେ.ପି ସାନ୍ଧ୍ୟ କଲେଜରେ ଡ଼ିଗ୍ରୀ କୋର୍ସ ସମାପ୍ତ କରିବା ପରେ ଓଡ଼ିଆ, ଇତିହାସ, ରାଜନୀତି ବିଜ୍ଞାନରେ ଘରୋଇ ଭାବେ ପରୀକ୍ଷା ଦେଇ ସ୍ନାତକୋତ୍ତର ଡ଼ିଗ୍ରୀ ହାସଲ କରିଥିଲେ ଏବଂ ବିଭିନ୍ନ କଲେଜରେ ଶିକ୍ଷକତା କରି ଶେଷରେ ଜଣେ ବରିଷ୍ଠ ପ୍ରାଧ୍ୟାପକ ରୂପେ ପୁରୀ ସାମନ୍ତ ଚନ୍ଦ୍ର ଶେଖର କଲେଜରୁ ୧୯୯୮ରେ ଅବସର ଗ୍ରହଣ କରିଥିଲେ । ଶିକ୍ଷକତା ପାଇଁ ଆବଶ୍ୟକୀୟ ତାଲିମ-ଯୋଗ୍ୟତା ଇ.ଟି, ସି.ଟି ଓ ବି.ଏଡ୍ ପରୀକ୍ଷାରେ ମଧ୍ୟ ସଫଳତାର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ଗବେଷଣା କରି ସାହିତ୍ୟରେ ପି.ଏଚ୍. ଡ଼ିଗ୍ରି ବି ହାସଲ କରିଥିଲେ । ନିଜର ମାତୃଭାଷା ବ୍ୟତୀତ ଅସମୀୟା ଓ ବଙ୍ଗଳା ଭାଷାରେ ମଧ୍ୟ ତାଙ୍କର ଦଖଲ ଅଛି । ନିଷ୍ଠା, ଅଧ୍ୟବସାୟ ଓ ଦୃଢ଼ ଇଚ୍ଛାଶକ୍ତି ବଳରେ ଏତେ ଗୁଡ଼ିଏ ଯୋଗ୍ୟତା ହାସଲ କରି ପ୍ରାଇମେରୀ ଶିକ୍ଷକ ପଦବୀରୁ ପ୍ରାଧ୍ୟାପକ ପଦବିକୁ ଉଠିବା ଏକ ବିରଳ ବ୍ୟକ୍ତିତ୍ୱ ନିକଟରେ ହିଁ ସମ୍ଭବ । ମନୋବଳ ବଢ଼ାଇ ଉପରକୁ ଉଠିବା ପାଇଁ ଲକ୍ଷ୍ମୀଧର ବାବୁଙ୍କ ଏ ପ୍ରଚେଷ୍ଟା ଅନ୍ୟମାନଙ୍କୁ ଢ଼େର ପ୍ରେରଣା ଯୋଗାଇବ ନିଶ୍ଚୟ ।

ଡଃ ଦାସଙ୍କ ଠାରୁ ତାଙ୍କ ସାହିତ୍ୟ କୃତି ସମ୍ବନ୍ଧରେ ଯାହା ଆଭାସ ମିଳିଛି । ଓଡ଼ିଆ ସାହିତ୍ୟର ପ୍ରାୟ ପ୍ରତ୍ୟେକ ବିଭାଗରେ ସେ ଲେଖନୀ ଚାଳନା କରି ଆମ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ସେ ସବୁଥିରେ ମୋର ପ୍ରବେଶ ନଥିଲେ ହେଁ ବିଭିନ୍ନ ପତ୍ର ପତ୍ରିକାରେ କେତୋଟି ପ୍ରବନ୍ଧ ପାଠକରି ତାଙ୍କ ବହୁଶାସ୍ତ୍ର ଦର୍ଶିତା, ଆହରଣ ଶକ୍ତି ଓ ଧୈର୍ଯ୍ୟଶୀଳତାର ପରିଚୟ ପାଇ ବିସ୍ମିତ ହୋଇଛୁ । ତାଙ୍କ ପ୍ରକାଶିତ କବିତା ସଂକଳନ "ସକାଳର ଚନ୍ଦ୍ରଭାଗା" କବିତା ପୁସ୍ତକ 'ପଲ୍ଲୀମାଟିର ମହକ'ର ପାଣ୍ଡୁଲିପି ପଢ଼ି ମୁଗ୍ଧ ହୋଇଛୁ । ଜଣେ ପଲ୍ଲୀ କବି ହିସାବରେ ତାଙ୍କ ପଲ୍ଲୀ କବିତା ଗୁଡ଼ିକ ମୋ ମନକୁ ଛୁଇଁପାରିଛି । ପୁରୀ ଓଡ଼ିଶା ସାହିତ୍ୟ ଓ ସଂସ୍କୃତି ପରିଷଦର ସେ ଜଣେ ମାର୍ଗ ଦର୍ଶକ ଏବଂ କାର୍ଯ୍ୟକରୀ କମିଟି ସଭ୍ୟ । ପ୍ରୋକ୍ତ ଅନୁଷ୍ଠାନର ଏ ଲେଖକ ଜଣେ ସକ୍ରିୟ ସଭ୍ୟଥିବା ହେତୁ ଅନେକବାର ପରିଷଦର କବିତା ପାଠୋତ୍ସବରେ ତାଙ୍କ କବିତା, ଆଲୋଚନା ସହିତ୍ୟିକ ସମୀକ୍ଷା ଶୁଣିବାର ସୁଯୋଗ ପାଇଛି ଏବଂ ତାଙ୍କ ସଂସ୍ପର୍ଶରେ ଆସି ଆନନ୍ଦ ଅନୁଭବ କରିଛି ।

ଲକ୍ଷ୍ମୀଧର ବାବୁଙ୍କ ସହ ମୋର ପରିଚିତ ଅଳପ ଦିନର ହେଲେ ହେଁ ସେ କେମିତି ଜଣେ ପୁରୁଣା ବନ୍ଧୁ ପରି ପ୍ରତୀୟମାନ ହୁଅନ୍ତି । ଏବେ ପୁରୀ ସର୍ବୋଦୟନଗରର ଆମେ ଉଭୟେ ବାସିନ୍ଦା । ମୋର ଦୁଇଜଣ ଅନୁଜ ଡଃ ଦିବାକର ମାନସିଂହ (ଓଡ଼ିଆ ପ୍ରାଧ୍ୟାପକ) ଓ ଡଃ ପ୍ରଫୁଲ୍ଲ କୁମାର ମାନସିଂହ (ଅର୍ଥନୀତି ପ୍ରାଧ୍ୟାପକ) ତାଙ୍କର ବେଶ୍ ପରିଚିତ ବନ୍ଧୁ । ତାଙ୍କ ବୈଠକଖାନାରେ ଅନେକଥର ଏକତ୍ର ପାରିବାରିକ ଦୁଃଖ ସୁଖ ସାଙ୍ଗକୁ ସାହିତ୍ୟ ଚର୍ଚ୍ଚାରେ ଭାଗନେବାର ସୁଯୋଗ ପାଇଛି । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କ ଗଭୀରତା ମାପିବା ମୋ ପରି କେବଳ କବିତା ଲେଖୁଥିବା ଜଣେ କବି ପକ୍ଷେ ଧୃଷ୍ଟତା ମାତ୍ର । କିନ୍ତୁ ଏଇ କବିତା ଲେଖା, ବିଶେଷକରି ମୋର ପଲ୍ଲୀ କବିତା ଗୁଡ଼କ ହିଁ ମୋତେ ତାଙ୍କର ନିକଟତର କରିପାରିଛି । ତାଙ୍କର ଏବଂ ପ୍ରଖ୍ୟାତ କଥାଶିଳ୍ପୀ କବି ଡଃ ବଳରାମ ଦାସ ଓ ଯଶସ୍ୱୀ କବି ହରିହର ମିଶ୍ରଙ୍କର ପ୍ରେରଣା ପାଇ ମୋର ପଲ୍ଲୀଚେତନାଭିତ୍ତିକ କବିତା ସଂକଳନ 'ମାଟି ମଣିଷର ଗାଥା' ଲୋକଲୋଚନକୁ ଆସି ଆଦୃତି ଲାଭ କରିଛି । ଏହି ପ୍ରବୀଣ ସାହିତ୍ୟରଥିମାନଙ୍କ ମୁଖବନ୍ଧରେ ମୁଖରିତ

ହେତୁ ମୋର ପ୍ରକାଶିତ ପୁସ୍ତକ ଧନ୍ୟହୋଇଛି ।

ଡଃ ଦାସ ଏବଂ ତାଙ୍କୁ ଏତେବାଟରେ ଆସି ପହଞ୍ଚିବା ପାଇଁ ପ୍ରେରଣା ଯୋଗାଇଥିବା ତାଙ୍କ ପତ୍ନୀ ସ୍ନେହଲତା ଉଭୟେ ପରମ୍ପରାବାଦୀ, ସଂସ୍କୃତି ସଂପନ୍ନ, ଧୀରସ୍ଥିର ଓ ମିଷ୍ଟଭାଷ୍ୟ ବ୍ୟକ୍ତିତ୍ୱ । ମୋର ପଲ୍ଲୀ କବିତା ଗୁଡ଼ିକ ସ୍ନେହଲତାଙ୍କ ମନକୁ ବେଶ୍ ଛୁଇଁ ପାରିଛି ବୋଲି ତାଙ୍କ ଠାରୁ ଶୁଣି ଆନନ୍ଦ ଅନୁଭବ କରିଛି । ସେଥିପାଇଁ ଏଇ ଅବସରରେ ତାଙ୍କୁ ଧନ୍ୟବାଦ ଜଣାଉଛୁ । ଲକ୍ଷ୍ମୀଧର ବାବୁଙ୍କ ଏ ହୀରକ ଜୟନ୍ତୀରେ ତାଙ୍କ ଦୀର୍ଘ ନିରାମୟ ଜୀବନ କାମନା କରୁଛି । ଓଡ଼ିଆ ବାଣୀ ଭଣ୍ଡାରକୁ ସେ ଆହୁରି ଋଦ୍ଧିମନ୍ତ କରନ୍ତୁ, ଆଶା କରୁଛି ।



# କର୍ମଯୋଗୀର ଊର୍ଦ୍ଧ୍ୱ ଉଡ଼ାଣ

*ଶ୍ରୀମତୀ ସୁଷମା ଦାସ*

ଊର୍ଦ୍ଧ୍ୱରୁ ଆହୁରି ଉଡ଼ିବାର ଇଚ୍ଛା ନେଇ ଡ଼େଣା ଦୁଇଟିର ବଳ କଷୁଥିଲା ପକ୍ଷୀଟି । ମୁଣ୍ଡ ଉପରେ ସ୍ୱପ୍ନର ଆକାଶ । ଆକାଶର ଅନନ୍ତ ନୀଳିମା ଭିତରେ ଏକ ଲକ୍ଷ୍ୟବିନ୍ଦୁ । ସେଇଠି ସ୍ଥିର ରହିଯାଏ ତାର ଦୃଷ୍ଟି । ମନରେ ଊର୍ଦ୍ଧ୍ୱଗାମୀ ଉଡ଼ାଣର ଆବେଗ । ଯାହା ତା'ର ପକ୍ଷୀ ଜୀବନର ସଫଳତା । ଏହି ଭାବନା ତାକୁ ବାରମ୍ବାର ଅସ୍ତବ୍ୟସ୍ତ କରୁଥିଲା । ପାଖରେ ଥାଇ ସ୍ତ୍ରୀ ପକ୍ଷୀଟି ତାକୁ ଲକ୍ଷ୍ୟକରୁଥିଲା । ଆଉ ଲକ୍ଷ୍ୟ କରୁଥିଲା ବହୁ ଉପରେ ଚିରାଁକାଟି ଉଡ଼ିଯାଉଥିବା ସହଚର ପକ୍ଷୀମାନଙ୍କୁ । ଏଇଆ ବୋଧେ ଆଶା ରଖୁଥିଲା ତା'ର ପାରିବା ନ ପାରିବା ଦ୍ୱନ୍ଦ୍ୱକୁ ଭାଙ୍ଗି ଆତ୍ମପ୍ରତ୍ୟୟ ଭରିଥିଲା ତା ମନରେ । ପକ୍ଷୀଟିଆଉଥରେ ତା'ର ଛୋଟ ଡ଼େଣା ଦୁଇଟିକୁ ଚାହିଁଲା । ସେଇ ମୁହୂର୍ତ୍ତରେ ତାକୁ ଲାଗିଲା ସେମାନେ ସାଧାରଣ ଡ଼େଣା ନୁହଁନ୍ତି, ତା'ର ଅନ୍ତର୍ନିହିତ 'ବିଶ୍ୱାସ' ଓ 'ପ୍ରୟାସ' । କ୍ରମଶଃ ଭାରାକ୍ରାନ୍ତ ଭାବନାରୁ ମୁକ୍ତି ପାଇଲା ପକ୍ଷୀଟି ମନରେ ଅପାର ଆନନ୍ଦ । ଅଫୁରନ୍ତ ତୃପ୍ତି । ସେ ତୃପ୍ତିର ପରିସମାପ୍ତି ନାହିଁ । ତା'ର ପରିସମାପ୍ତି କେବଳ ଅନ୍ୱେଷଣରେ । ନିଭୃତରେ ଜାଗ୍ରତ ହେଉଥିବା ଆବେଗ ଦ୍ୱିଗୁଣିତ ହେବାରେ ଲାଗିଲା । ରୋକି ପାରିଲା ନାହିଁ ସେ ଆବେଗକୁ । ରୋକି ଦେଲେ ହୁଏତ ସରିଯିବ ତା ଜୀବନ । ଡହ ଡହ ସୂର୍ଯ୍ୟାଲୋକ, ଉତ୍ତାଳ ପବନ, ଝଡ଼ର ତାଣ୍ଡବ ସହ ଯୁଝି ଯୁଝି ପକ୍ଷୀଟି ତା'ର ଡେଣା ପ୍ରସାରିତ କଲା । ଭୁଲିଗଲା ବୃକ୍ଷ କୋରଡ଼ର ଶୀତଳତା । ବିପର୍ଯ୍ୟସ୍ତ ପ୍ରକୃତିର ପତିକୂଳତା ରେ କେତେଯେ ଯନ୍ତ୍ରଣା ଅନୁଭବ ନକରିଛି ପକ୍ଷୀଟି । ତଥାପିତା ଡେଣା ଥକିଯାଇନି । କାରଣ ସେ ଉଡ଼ିବ । ଉଡ଼ିବା ତା'ର ଧର୍ମ । ଲକ୍ଷ୍ୟସ୍ଥଳରେ ନ ପହଞ୍ଚିବା ପର୍ଯ୍ୟନ୍ତ ସେ ତା'ର ଉଡ଼ିବା ଜାରି ରଖିବ । ସ୍ତ୍ରୀ ପକ୍ଷୀଟି ତା' ପୁରୁଷ ପକ୍ଷୀଟିର ଲକ୍ଷ୍ୟଭେଦର ଦୃଶ୍ୟ ଦେଖୁ ଦେଖୁ ଆନନ୍ଦାଶ୍ରୁ ଝରାଉଥିଲା ।

ଠିକ୍ ଏମିତି ଲକ୍ଷ୍ୟାଭିମୁଖୀ, ଉଚ୍ଚାଭିଳାଷୀ ମଣିଷଟିଏ ତା ଲକ୍ଷ୍ୟପଥରେ ଦୃଷ୍ଟିନିବେଶ କରିଥାଏ । ଯେ ପର୍ଯ୍ୟନ୍ତ ତା'ର ଲକ୍ଷ୍ୟପୂରଣ ନ ହୋଇଛି । ଗତିପଥ କଣ୍ଟକିତ ହେଉ କି ପୁଷ୍ପିତ ହେଉ । ପରିସ୍ଥିତି ଅନୁକୂଳ ହେଉ କି ପ୍ରତିକୂଳ ହେଉ

ସେଥିପ୍ରତିତା'ର ନଜର ନଥାଏ । କାରଣ ଏ ସବୁକୁ ସେ ସାଧାରଣ ଜୀବନର ବ୍ୟବସ୍ଥା ବୋଲି ଧରିନେଇଥାଏ । ମଣିଷ ସଂସାରୀ ହେବା ପରେ ସନ୍ତାନ ସନ୍ତତି, ପରିବାର ବର୍ଗ, ଆତ୍ମୀୟ ସ୍ୱଜନଙ୍କ ଭିଡ଼ ଭିତରେ ଅଣନିଃଶ୍ୱାସୀ ହୋଇ ଦିଗହରା ହୋଇଯାଏ । ଆଗକୁ ଯିବାକୁ ବାଟ ପାଏ ନାହିଁ ।ସେଇ ଚକ୍ରବ୍ୟୂହ ଭିତରେ ଧନ୍ଦିହୋଇ ରହିଯାଏ ସାରା ଜୀବନ । ଭାବନା ଆଗକୁ ବଢ଼ିପାରେ ନାହିଁ । ସବୁ କଳ୍ପନା ଜଳ୍ପନା ଆଗକୁ ବଢ଼ୁ ବଢ଼ୁ ପୁଣି ଫେରିଆସି ଅଟକି ଯାଏ ତା'ର ସେଇ ତଥା କଥିତ ସଂସାର ଭିତରେ । କିନ୍ତୁ ସେ ଦୃଷ୍ଟିରୁ ଦେଖିବାକୁ ଗଲେ ଆମ ଭାଇଥିଲେ ସଂପୂର୍ଣ୍ଣ ବ୍ୟତିକ୍ରମ । ପରିପୂର୍ଣ୍ଣ ସଂସାରିକ ଜଞ୍ଜାଳ ଭିତରେ ଥାଇ ମଧ୍ୟ ନିଜକୁ ପରିପ୍ରକାଶ କରିପାରିଥିଲେ ସ୍ୱଢ଼ଙ୍ଗୀରେ । ଚିରାଚରିତ ଜୀବନ ଧାରା ଭିତରେ ଆସୁଥିବା ସମସ୍ତ ଝଡ଼ ଝଞ୍ଜା, ଘାତ ପ୍ରତିଘାତକୁ ତାଙ୍କ ଲକ୍ଷ୍ୟପଥର ବାଧାବୋଲି ଭାବୁନଥିଲେ ।

ପ୍ରାଥମିକ ସ୍କୁଲ ଶିକ୍ଷକରୁ ଆରମ୍ଭ ହୋଇଥିଲା ତାଙ୍କର ଜୀବନଯାତ୍ରା । ନୂଆ ନୂଆ ସଂସାରୀ ହୋଇଥାନ୍ତି ଭାଇ । ସ୍ୱଳ୍ପ ବେତନ ଭୋଗୀ କର୍ମଚାରୀ । ତାଙ୍କ ଉପରେ ନିର୍ଭରଶୀଳ କୋଡ଼ୋଟି ଜୀବନ । ଦାୟିତ୍ୱ ବହୁତ ଏବଂ ଏହି ଦାୟିତ୍ୱ ସଂପାଦନ ଭିତରେ ସେ ବାରମ୍ବାର ଆସିଲା । ସେଥିପାଇଁ ସେ ହେଲେ ସଂକଳ୍ପବଦ୍ଧ । । ଛୋଟ ମନଭିତରେ ବିରାଟ ସମ୍ଭାବନାକୁ ଜନ୍ମ ଦେଇସାରିଥିଲେ ଭାଇ । ତାହା ସାକାର କରିବା ଦିଗରେ ସେ ଯତ୍ନବାନ୍ ହେଲେ । ଶିକ୍ଷକତା କରିବା ଭିତରେ ସାଂନ୍ଧ୍ୟ କଲେଜରେ ଉଚ୍ଚଶିକ୍ଷାପାଇଁ ଅଧ୍ୟୟନ କଲେ ପ୍ରାଥମିକ ଶିକ୍ଷକରୁ । ଉଚ୍ଚ ମାଧ୍ୟମିକ ସ୍କୁଲର ଶିକ୍ଷକ ହେଲା ପରେ ଘରୋଇ ଭାବରେ ତାଙ୍କର ଅଧ୍ୟୟନ ଜାରିରହିଲା । ପରେ ସେ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲେ । ମୋର ମନେଅଛି, ଭାଇ ଓଳସିଂ ହାଇସ୍କୁଲରେ ଶିକ୍ଷକତା କରିବା ସମୟରେ ତାଙ୍କ ଅନୁପସ୍ଥିତିରେ ତାଙ୍କର ଅଧ୍ୟାପକ ଭାବେ ଆସିଥିବା ନିଯୁକ୍ତିପତ୍ର ମୁଁ ହିଁ ଖୋଲିଥିଲି । ଆଜି ବି ମନେପଡ଼େ ସେଦିନର ଅନୁଭୂତି । ତାଙ୍କର ଗୌରବରେ ମୁଁ ବହୁତ ଗର୍ବ ଅନୁଭବ କରିଥିଲି । ନୂଆ ହୋଇ ତାଙ୍କ ଭାଇବୋହୂ ହୋଇ ତାଙ୍କଘରକୁ ଆସିଥିଲି । ଆଗରୁ ତାଙ୍କ ବିଷୟରେ ସବୁ ଶୁଣିଥିଲି । ପାଖରୁ ଦେଖିଲି, ତାଙ୍କ ପରିବାରର ସଦସ୍ୟା ହୋଇପାରିଛି, ଏହା ହିଁ ଥିଲା ମୋ ପାଇଁ ବହୁତ କିଛି । ତାଙ୍କ ପାଖରେ ଯେତେ

ଦିନ ମୁଁ ରହିଛି ତାଙ୍କ ଅଧ୍ୟୟନରେ ଏକାଗ୍ରତା ଦେଖିଛି । ଜଣେ ନିଷ୍ଠାପର ଶିକ୍ଷକ ଭାବରେ ସେ ଜଣାଶୁଣା ଥିଲେ । ସ୍କୁଲ ସମୟ ବ୍ୟତୀତ ଛାତ୍ର ମାନଙ୍କୁ ସକାଳ ଏବଂ ସଂଜରେ ମଧ୍ୟ ଶିକ୍ଷାଦାନ କରୁଥିଲେ । ତା ସହ ପରିବାର ପାଇଁ ସମୟ ମଧ୍ୟ ଦେଉଥିଲେ । ଏତେ ସବୁ କର୍ମ ଭିତରେ ତାଙ୍କୁ ଖୁବ୍ କମ୍ ସମୟ ଅବଶିଷ୍ଟ ମିଳୁଥିଲା । ସେ ସେହି ସୀମିତ ସମୟକୁ ହାତମୁଠାରେ ବାନ୍ଧି ରଖୁଥିଲେ ନିଜ ଅଧ୍ୟୟନ ପାଇଁ । ତାଙ୍କର ପ୍ରଥମ ଅଧ୍ୟାପନା କ୍ଷେତ୍ର ଥିଲା ବଲାଙ୍ଗୀରର "ରାଜେନ୍ଦ୍ର କଲେଜ" । ଅଧ୍ୟାପନା କାର୍ଯ୍ୟରେ ଯୋଗ ଦେବା ସଙ୍ଗେ ସଙ୍ଗେ ସେ ଗବେଷଣା ଆରମ୍ଭ କରିଥିଲେ । ତୁଳନାତ୍ମକ ସାହିତ୍ୟକୁ ନେଇ ଏବଂ ଯଥା ସମୟରେ ତାହା ଶେଷ କରି ଜଣେ ସଫଳ ଗବେଷକର ଖ୍ୟାତି ଅର୍ଜନ କରିଛନ୍ତି । ଗଦା ଗଦା ବହି କାଗଜ କଲମ ସହିତ ଚାଲିଛି ତାଙ୍କର ଅନବରତ ସଂଘର୍ଷ । ଅଧ୍ୟାପନା ଓ ଅଧ୍ୟବସାୟ ଥିଲା ତାଙ୍କ ଜୀବନର ପ୍ରାଥମିକତା । ଓଡ଼ିଆ ଭାଷା ସାହିତ୍ୟର ଏକନିଷ୍ଠ ସାଧକ ଭାବରେ ନିଜକୁ ପ୍ରତିଷ୍ଠିତ ମଧ୍ୟ କରିଛନ୍ତି । ଭାଇ ଏକଧାରରେ ଜଣେ ସଫଳ ଗୃହସ୍ଥ । କର୍ତ୍ତବ୍ୟନିଷ୍ଠ ଛାତ୍ର ବତ୍ସଳ ଅଧ୍ୟାପକ ଓ ସର୍ବୋପରି ଦାୟିତ୍ୱବାନ ଅଭିଭାବକ ସ୍ୱଭାବରେ ଭାଇ ଖୁବ୍ ଅମାୟିକ, ନିରାଡ଼ମ୍ବର, ସ୍ପଷ୍ଟବାଦୀ, ବନ୍ଧୁପ୍ରିୟ, ପରୋପକାରୀ, ତା ବ୍ୟତୀତ ନିଜେ ଭଲ ଖାଇବା ଓ ଅନ୍ୟକୁ ଖୁଆଇବା ଥିଲା ତାଙ୍କ ସ୍ୱାଭାବରେ ଅନ୍ୟ ଏକ ସ୍ୱତନ୍ତ୍ର ଦିଗ । ସ୍ୱାଦିଷ୍ଟ ଖାଦ୍ୟ ରାନ୍ଧିବାରେ ଆମ ଅପା ଅତ୍ୟନ୍ତ ନିପୁଣା । ଲକ୍ଷ୍ମୀ ସ୍ୱରୂପା ଅପାଙ୍କ ହାତ ରନ୍ଧା ଖାଇବା ପାଇଁ ଅଧିକାଂଶ ସମୟ ବନ୍ଧୁ ମାନଙ୍କର ଭିଡ଼ ଲାଗିରହିଥାଏ । ଭାଇଙ୍କ ବ୍ୟସ୍ତ ଜୀବନରେ ତାଙ୍କର ସାଥି ଅପା, "ସ୍ନେହଲତା" ନାମର ଯଥାର୍ଥତା ରହିଛି ତାଙ୍କ ପାଖରେ । ସ୍ନେହ, ବାତ୍ସଲ୍ୟ, କରୁଣାର ସେ ଏକ ସୁନ୍ଦର ଉଦାହରଣ ଭାବରେ ହେଉ ବା ଅଭାବରେ ହେଉ କେତେବେଳେ ସେ କାହାକୁ ଦୂରେଇ ଦେଇନାହାନ୍ତି । ଆଜି ବି ତାଙ୍କ ମମତା ଭରା ପଣତରେ ସାରା ପରିବାରର ଜୀବନ୍ତ ମାନଚିତ୍ର ସତେ ଯେମିତି ଲିପିବଦ୍ଧ ହୋଇ ରହିଯାଇଛି ।

ଭାଇ ଏବେ ଅବସର ପ୍ରାପ୍ତ । କିନ୍ତୁ ଅବସର ଜୀବନର ଅବସନ୍ନ ବୋଧ ତାଙ୍କ ମାନସିକ ଅବସ୍ଥା ଉପରେ କୌଣସି ପ୍ରଭାବ ପକାଇ ପାରିନି । ଜୀବନର ଅପରାହ୍ନରେ ଅବଶ୍ୟ ଶରୀର କିଛି ମାତ୍ରାରେ ଦୁର୍ବଳ ହୋଇଯାଇଛି । କିନ୍ତୁ ଯେ

ପର୍ଯ୍ୟନ୍ତ ତାଙ୍କ ହାତ ଓ ଲେଖନୀ କାଗଜ ଉପରେ ସକ୍ରିୟ ରହିଥିବେ, ସେ ପର୍ଯ୍ୟନ୍ତ ସେ ଥିବେ ସୁସ୍ଥ ଓ କାର୍ଯ୍ୟକ୍ଷମ, ଶାରୀରିକ ଦୁର୍ବଳତାକୁ ସେ ନିଶ୍ଚୟ ନିଜ ଆୟତ୍ତରେ ରଖିପାରିବେ । ଭାଇଙ୍କ ବିଷୟରେ କହି ବସିଲେ କି ଲେଖିବାକୁ ଚାହିଁଲେ ଶବ୍ଦର ଅଭାବ ହିଁ ଘଟିବ । ଏ ଭଳି ଏକ କର୍ମଯୋଗୀ, ସଂକଳ୍ପବଦ୍ଧ ବ୍ୟକ୍ତିତ୍ୱ ପାଖରେ ମୋର କୋଟି କୋଟି ଭକ୍ତିପୂତ ପ୍ରଣାମ ଈଶ୍ୱରଙ୍କ ପାଖରେ ମୋର ଏତିକି ନିବେଦନ, ସେ ତାଙ୍କୁ ପୂର୍ବାପେକ୍ଷା ଅଧିକ ଯଶସ୍ୱୀ କରାନ୍ତୁ । ତାଙ୍କର ଅବଶିଷ୍ଟ ଜୀବନକୁ କ୍ଳେଶମୁକ୍ତ କରିବା ସହ ସୁଖ ସ୍ୱାଚ୍ଛନ୍ଦରେ ଭରିଦିଅନ୍ତୁ । ପ୍ରିୟ ପରିଜନ, ବନ୍ଧୁ ଆତ୍ମୀୟ ସ୍ୱଜନଙ୍କର ଶୁଭଦୃଷ୍ଟି ଶୁଭକାମନା ତାଙ୍କ ଉପରେ ଏମିତି ରହିଥାଉ । ଜଗତର ନାଥ ତାଙ୍କୁ ଓ ତାଙ୍କ ଲେଖନୀକୁ ଦୀର୍ଘାୟୁ କରନ୍ତୁ । ଗତିପଥକୁ କରନ୍ତୁ ପୁଷ୍ପିତ ଓ ବାଧାରହିତ ।

"ଜୟ ଜଗନ୍ନାଥ"

ମା: ଡକ୍ଟର କୃଷ୍ଣଚନ୍ଦ୍ର ଦାସ
ମହାବୀର ବାଟିକା, ଓଟର ଶାସନ
ପୋ: ଅ:- ଦେଉଳୀ
ଜି: - ପୁରୀ ।



# ଅପୂର୍ବ ତ୍ରିବେଣୀ : ସକାଳର ଚନ୍ଦ୍ରଭାଗା

ଡଃ. କାହ୍ନୁଚରଣ ପାଢ଼ୀ

ଓଡ଼ିଆ କବି ମାନସରେ କୋଣାର୍କ ଏକ କରୁଣ ମଧୁର ରହସ୍ୟ ରୂପେ ଚିର ଦଣ୍ଡାୟମାନ । ରାଧାନାଥ ଏହାକୁ ଦେଖିଚନ୍ତି କାମାନ୍ଧ ସୂର୍ଯ୍ୟଦେବଙ୍କ ପ୍ରତି ତପସ୍ୱୀ ସୁମନ୍ୟୁଙ୍କ ଅଭିଶାପର ପରିଣତି ରୂପେ ତ ନୀଳକଣ୍ଠ ନରସିଂହ ଓ ମାୟାଦେବୀଙ୍କ ପ୍ରଣୟ କାହାଣୀର ମୂକସାକ୍ଷୀ ରୂପେ । ଅନ୍ୟମାନଙ୍କ ଦୃଷ୍ଟିରେ କେତେବେଳେ ଏହା ଧର୍ମପଦର ଉଦାର ଜାତୀୟତାବୋଧର ସ୍ମାରକୀ ତ କେତେବେଳେ ବିଗତ ଯୌବନା ସୈକ ତ ଶୟନ ରୂପସୀ ଆଉ କେତେବେଳେ ପୁଣି କୋଟି କଙ୍କାଳ ଭଗ୍ନ ବୁକୁର ସ୍ତୁପ ଅଥବା ଲାଲ ପାଗୋଡ଼ାର ପ୍ରେତ । କିନ୍ତୁ ସଦ୍ୟ ପ୍ରକାଶିତ କବି ଲକ୍ଷ୍ମୀଧର ଦାସ 'ସକାଳର ଚନ୍ଦ୍ରଭରଗର' ଏ ସବୁଠାରୁ ସଂପୂର୍ଣ୍ଣ ଭିନ୍ନ ଧରଣର ଏକ କୃତି । ସୌନ୍ଦର୍ଯ୍ୟର ବେଦ୍ୟାନ୍ତର ସ୍ପର୍ଶ ଶୂନ୍ୟ ବ୍ରହ୍ମାନନ୍ଦ ସହୋଦରର ଲୋକୋତ୍ତର ଚମତ୍କାର ଆସ୍ୱାଦନ, ଆବାଲ୍ୟ ସଂଚିତ ସ୍ମୃତିର ଉତ୍ତରଳ ଚିନ୍ମୟ ପ୍ରବାହ ସହ ଐତିହାସିକ ଗୌରବବୋଧ ଏକାଠି ହୋଇ ଗଢ଼ି ଉଠିଚି ଏ ଚମତ୍କାର କାବ୍ୟକୃତି । କବି ସଚେତନ: 'ସେ କାଳର ବିଶ୍ୱାସ ଏ କାଳରେ ନାହିଁ' ଜ୍ଞାନ ମଦରେ ପ୍ରାଣ ସନ୍ଦେହର ଦୋଳାରେ ଦୋଳୁଚି ତଥାପି ସୌନ୍ଦର୍ଯ୍ୟର କୁହୁକରେ ଏ ତଟ ମନରେ ଦିବ୍ୟଭାବ ସଂଚାର କରୁଛି, ମନେ ହେଉଛି ସୌନ୍ଦର୍ଯ୍ୟ ଜଗତ ସତ୍ୟଠାରୁ ବହୁ ଦୂରବର୍ତ୍ତୀ ହୋଇ ରହିନାହିଁ (ପୃ-୨୩) । ଏହାକୁ ରାଧାନାଥ, ନୀଳକଣ୍ଠ ଓ ମାନସିଂହଙ୍କ ପରମ୍ପରାରେ ବିଚାର କରିବାକୁ ପାଠକ ଉତ୍ସୁକ ହେଲେ ମଧ୍ୟ ଯାହା ତାଙ୍କୁ ବିସ୍ମୟ ବିମୁଗ୍ଧ କରେ ସେଇଟି ହେଉଚି ସକାଳର ଚନ୍ଦ୍ରଭାଗାରେ ନିହିତ ବିସ୍ମୃତିର ଅତଳଗହ୍ୱରଗତ ଇତିହାସ ଓ କିମ୍ବଦନ୍ତୀର ସୁଷ୍ଠୁ ଉତ୍ତୋଳନ ସାଙ୍ଗକୁ ପ୍ରତ୍ୟକ୍ଷ ଉପସ୍ଥିତି ନିସର୍ଗ ସୌନ୍ଦର୍ଯ୍ୟ ଅରୁଣ ରାଗର ସାବଲୀଳ ରୂପାନ୍ତର । କବିଙ୍କ ବ୍ୟକ୍ତିଗତ ରୁଚି,ପ୍ରକୃତି ପରିଚର୍ଯ୍ୟା ଓ ରସବୋଧ ଏ ଗ୍ରନ୍ଥକୁ ଅସରନ୍ତି ଉପାଖ୍ୟାନର ଏକ ଭବ୍ୟ ସମାହାର ରୂପେ ଉପସ୍ଥାପନା କରାଇପାରିଛି ।

ଆଲୋଚ୍ୟ ସ୍ରଷ୍ଟା ସକାଳର ଚନ୍ଦ୍ରଭାଗା ରଚନା ବେଳେ ଅନ୍ୟକିଛି ନୁହେଁ କେବଳ କଥାକହି ସ୍ୱୀୟ ମୁଗ୍ଧ ଅନୁଭବକୁ ଭୋକ୍ତାଙ୍କ ଅନ୍ତରରେ ସଂଚାର କରାଇ ଦେବାକୁ ନିଜ ଲେଖାରେ ମୂଳ ଧର୍ମ ରୂପେ ସ୍ୱୀକାର କରିଛନ୍ତି । ଗ୍ରନ୍ଥଟିର ଗଠନକୌଶଳ ଦୃଷ୍ଟିରୁ ଏହା ହିଁ ସତ୍ୟ । ଏହା ମୁଖ୍ୟତଃ କଥା କାହାଣୀର ମନୋଜ୍ଞ

ମଧୁଭଣ୍ଡାର, ଏକ ମହାପ୍ରବାହ । କବି ଲକ୍ଷ୍ମୀଧର ପ୍ରକୃତରେ ଜଣେ ଦ୍ରଷ୍ଟା, ଓ ବିଚକ୍ଷଣ କଥାକାର ଗଳ୍ପସବୁ ଯୋଡ଼ି ମୂଳ ଆଖ୍ୟାନକୁ ରସସିକ୍ତ କରିବାରେ ଅତ୍ୟନ୍ତ ଧୂରୀଣ କଳାକାର । ତାଙ୍କ ପ୍ରତିଭା କୌଣସି ଆଦର୍ଶ ପ୍ରଚାରର ଛଳନା କରିନାହିଁ । ଏହା କେବଳ ଗଳ୍ପ କହିବାକୁ ଉଦ୍ୟତ, ସେ ଗଳ୍ପକୁ ହୃଦୟଗ୍ରାହୀ କରିବା ପାଇଁ ସାଧାରଣ ଅତିରଂଜନ ଘଟାଇବାକୁ ପ୍ରସ୍ତୁତ । କେତେବେଳେ କେଉଁ କଥା ଯୋଡ଼ିଲେ ବିଷୟବିନ୍ୟାସ ସୁନ୍ଦର ହୁଏ, ତାହା ସାରଳା ଦାସଙ୍କ ପରି ଲକ୍ଷ୍ମୀଧର ଦାସ ମଧ୍ୟ ଭଲ ଭାବେ ଜାଣନ୍ତି । ତଥ୍ୟ ଓ ତତ୍ତ୍ୱର ଗୂଢ଼ ବ୍ୟାଖ୍ୟା କିଭଳି କାହାଣୀ ଧର୍ମିତାରେ ରୂପାନ୍ତର ହୋଇପାରେ ସେଥିପ୍ରତି ସ୍ରଷ୍ଟା ଖୁବ ସଚେତନ (ପୃ୩୨.୬୦) । କେତେବେଳେ ସେ କଥାବୀଜଟି ମାତ୍ର ଉଲ୍ଲେଖ କରିଛନ୍ତି ତ କେତେବେଳେ କଥାଟିଏ ବର୍ଣ୍ଣନା କରୁ କରୁ ଆଉ ଏକ କଥା କେବଳ ସୂଚାଇ ଦେଇଛନ୍ତି । ତାଙ୍କ ଗ୍ରନ୍ଥର ଅନ୍ତଃସ୍ଥଳ ଯୁଦ୍ଧ ଓ ପ୍ରଣୟ ଭିତ୍ତିକ କଥାବସ୍ତୁକୁ ନେଇ ତରଙ୍ଗାୟିତ । ପ୍ରତ୍ୟକ ଉପାଖ୍ୟାନ ତାଙ୍କ କାବ୍ୟିକ ଚେତନାର ଗୋଟିଏ ଗୋଟିଏ ସାର୍ଥକ ପ୍ରତିନିଧି । ଏଗୁଡ଼ିକ ଏକ ପକ୍ଷରେ ଯେପରି ଗ୍ରନ୍ଥର କାବ୍ୟିକ ସୌନ୍ଦର୍ଯ୍ୟ ବୃଦ୍ଧି କରାନ୍ତି, ଅପରପକ୍ଷରେ ସେପରି ପାଠକଙ୍କଠାରେ ରସଚେତନା ଜାଗ୍ରତ କରାନ୍ତି । ଦୂର ଓ ନିକଟ ଅତୀତର ଇତିହାସ ଅବଲମ୍ବନରେ ବହୁ ସଂଖ୍ୟକ ଆଖ୍ୟାୟିକା ଲିଖନରେ ଲକ୍ଷ୍ମୀଧରଙ୍କ ଉଦାରତା ଅନ୍ୟତ୍ର କ୍ୱଚିତ ଦେଖାଯାଏ । ବହୁ କିମ୍ବଦନ୍ତୀମୂଳକ ଇତିହାସ ଓ ବୀରଗାଥା ତାଙ୍କ ଗ୍ରନ୍ଥରେ ସଂକଳିତ ହୋଇଛି । କୋଣାର୍କ ଅଞ୍ଚଳର ବ୍ୟକ୍ତି ହୋଇଥିବାରୁ ସ୍ୱାଭାବିକ ଭାବେ ଏ ଅଞ୍ଚଳର ଆଖ୍ୟାନ ଗୁଡ଼ିକ ସକାଳର ଚନ୍ଦ୍ରଭାଗାରେ ପରିଦୃଷ୍ଟ ହେଲେ ସୁଦ୍ଧା ଓଡ଼ିଶାର ସାମଗ୍ରିକ ଇତିହାସ ସଂକ୍ଷିପ୍ତ ଅଥଚ ଗଭୀର ରୂପରେ ଏଥିରେ ସ୍ଥାନ ପାଇଛି । ଯେତେବେଳେ ସୁଯୋଗ ପାଇଛନ୍ତି କବି ସ୍ୱୀୟ ଅନୁଭୂତି ଓ ଶୁଣାକଥାକୁ ଉପଯୁକ୍ତ ସ୍ଥଳରେ ଯୋଡ଼ି ଦେଇଛନ୍ତି (ପୃ.୮୦-୮୩) । ବିଭିନ୍ନ ସୂତ୍ରରୁ ସଂଗୃହୀତ ଓ ବହୁ ବୈଚିତ୍ର୍ୟ ବିମଣ୍ଡିତ ଗଳ୍ପସମୂହ ଯେଭଳି କବିଙ୍କ ପ୍ରତିଭା, ଐତିହାସିକ ଅବବୋଧ ତଥା ସାମାଜିକ ଓ ଆଧ୍ୟାତ୍ମିକ ଦୃଷ୍ଟିକୋଣର ନିଦର୍ଶନ ସେଭଳି ତାଙ୍କ ଶିଳ୍ପ କୌଶଳ ଓ କଳାତ୍ମକତାର ପରିଚୟ ।

କଥା ଓ ଉପକଥାର ସଂଯୋଜନାରେ ମନୋଜ୍ଞ ଗ୍ରନ୍ଥ ରଚନା ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ବହୁ ପ୍ରତିଷ୍ଠିତ ପ୍ରାଚୀନ ରୀତି । ଅନେକ ସମୟରେ ଉପକଥା ମାଧ୍ୟମରେ ଯେପରି ମୂଳକଥାର ମୂଲ୍ୟ ବୃଦ୍ଧି ଘଟେ ସେଭଳି ବହୁ ଉପକଥା ଏକତ୍ର ଉପସ୍ଥାପନା କରିବା ପାଇଁ ଗୋଟିଏ ଆବରଣ ଗଳ୍ପ ପରିକଳ୍ପିତ

ହୋଇଥାଏ । କିନ୍ତୁ ପୂର୍ବବର୍ତ୍ତୀ ଗ୍ରନ୍ଥ ସମୂହର କଥା ଗ୍ରନ୍ଥନ କୌଶଳ ଓ ଲକ୍ଷ୍ମୀଧର ଦାସଙ୍କ ଶିଳ୍ପରୀତି ମଧ୍ୟରେ ଏକ ସ୍ପଷ୍ଟ ପାର୍ଥକ୍ୟ ରହିଛି । ତାଙ୍କ ଗ୍ରନ୍ଥରେ ପାଠକ ଉପକଥାର ଘଞ୍ଚ ଅରଣ୍ୟ ମଧ୍ୟରେ ପଥଭ୍ରଷ୍ଟ ହୁଅନ୍ତି ନାହିଁ, ମୂଳକଥା ବିସ୍ମୃତ ହେବାକୁ ବାଧ୍ୟ ହୁଅନ୍ତି ନାହିଁ । କୌଣସିଠାରେ ସ୍ରଷ୍ଟା ସହୃଦୟଙ୍କୁ ମୂଳକଥାଠାରୁ ଦୂରେଇ ନିଅନ୍ତି ନାହିଁ । ଉପକଥା ସଂଯୋଜନ ପରେ ମୂଳକଥାକୁ ଫେରି ଆସିବା ତାଙ୍କ ଶିଳ୍ପକୌଶଳର ବିଲକ୍ଷଣ ମୌଳିକତା । ଏ ଦୃଷ୍ଟିରୁ ସକାଳର ଚନ୍ଦ୍ରଭାଗା ଏକ ଉପଭୋଗ୍ୟ, ସଯତ୍ନପାଳିତ, ମନୋରମ ଉଦ୍ୟାନ ।

କେବଳ ବହୁ କାହାଣୀର ସୁସଜ୍ଜିତ ଗ୍ରଥନ ନୁହେଁ, ବରଂ ପ୍ରତ୍ୟେକ କାହାଣୀକୁ ସ୍ୱୟଂସଂପୂର୍ଣ୍ଣ ଓ ସାର୍ଥକ ରୂପ ହେବାରେ ଲକ୍ଷ୍ମୀଧରଙ୍କ ଦକ୍ଷତା ରହିଛି । ଗୋଟିଏ ଗୋଟିଏ କଥାକୁ ନିର୍ଦ୍ଦିଷ୍ଟ ରୂପ ଦେବା ଲାଗି ସେ ବିଭିନ୍ନ କୌଶଳ ଅବଲମ୍ବନ କରିଛନ୍ତି । ଲେଖକ ଜାଣନ୍ତି । ସର୍ବଜନବିଦିତ କାହାଣୀ ଓ ଐତିହାସିକ ତଥ୍ୟ ସମୂହ ସେ ଉପସ୍ଥାପନା କରିବାକୁ ଯାଉଛନ୍ତି । ଏଗୁଡ଼ିକୁ ଆକର୍ଷଣୀୟ କରିବା ଲାଗି ବର୍ଣ୍ଣନା ଅବସରରେ ନୂତନତା ସୃଷ୍ଟି ଲାଗି ଚେଷ୍ଟା କରିବାକୁ ହେବ । ଏଥିପାଇଁ ଯଥାର୍ଥ ପରିବେଶରେ ଗୁମ୍ଫନ ସମେତ ମନୋଜ୍ଞ ଉପସ୍ଥାନର ଏକ ଅବଶ୍ୟମ୍ଭାବୀ ଆବଶ୍ୟକତା । କାହାଣୀ କହିବା ଲାଗି ସକାଳର ଚନ୍ଦ୍ରଭାଗା ନୁହେଁ ଚନ୍ଦ୍ରଭାଗାର ସକାଳ ବର୍ଣ୍ଣନା ମଧ୍ୟରେ ହିଁ କାହାଣୀ ଓ ତଥ୍ୟ ସମୂହ ସଂଯୋଜିତ ହେବ । ଏ ଦୃଷ୍ଟିରୁ ଐତିହାସିକ ଓ ପୌରାଣିକ ତଥ୍ୟ ସମୂହକୁ କଳାତ୍ମକ କରିବା ପାଇଁ କବି ପ୍ରୟାସ କରିଛନ୍ତି । ସମୟାନୁସାରେ ତଥ୍ୟଗୁଡ଼ିକ କାହାଣୀ ରୂପେ ଉପସ୍ଥାପିତ ହୋଇଛି । ଉପଯୁକ୍ତ ସ୍ଥାନରେ ହିଁ ପାଠକ ଏଗୁଡ଼ିକୁ ଆବିଷ୍କାର କରନ୍ତି । ଲକ୍ଷ୍ୟପୂର୍ତ୍ତି ପାଇଁ କବିଙ୍କୁ ସ୍ୱତନ୍ତ୍ର ପରିବେଶ ସୃଷ୍ଟି କରିବାକୁ ପଡ଼ିନାହିଁ । ବରଂ ପରିବେଶ ତାଙ୍କୁ କଥା କହିବା ପାଇଁ ବାଧ୍ୟ କରିଛି । ଆବଶ୍ୟକତା ଦୃଷ୍ଟିରୁ କାହାଣୀଗୁଡ଼ିକ ସେ ପରିବେଷଣ କରିଛନ୍ତି । ସକାଳର ଚନ୍ଦ୍ରଭାଗାରେ ସଂଯୋଜିତ ପ୍ରତ୍ୟେକଟି କଥାର ଏକ ପାରିପାର୍ଶ୍ୱିକ ବିଶେଷତ୍ୱ ରହିଛି । ଏଗୁଡ଼ିକର ବର୍ଣ୍ଣନା ନୁହେଁ, ଯଥାର୍ଥ ବିନ୍ୟାସ ହିଁ ଗ୍ରନ୍ଥଟିକୁ ସଂହତ, କଳାତ୍ମକ ଓ କାବ୍ୟିକ ଆଙ୍ଗିକରେ ମଣ୍ଡିଦେଇଛି । କହିବା ବେଳେ ଅଯଥା ଭୂମିକା ସୃଷ୍ଟି କରାଯାଇ ନାହିଁ । ଏଗୁଡ଼ିକର ଆରମ୍ଭ ଯେଉଁଭଳି ସିଧାସଳଖ, ପରିସମାପ୍ତି ସେଉଁଭଳି ସ୍ୱତଃସ୍ଫୂର୍ତ୍ତ । କଥାର ଆରମ୍ଭ ଓ ପରିସମାପ୍ତିରେ ଅଯଥା ଆଡ଼ମ୍ବରରୁ ଦୁରେଇ ରହି ସରଳ ସାବଲୀଳ ସଂରଚନାରେ ମନୋଯୋଗୀ ହୋଇପାରିବା କବିଙ୍କ ଦୀର୍ଘ ସାହିତ୍ୟ ଅନୁଶୀଳନର ପରିଣାମ ।

ବିଷୟବିନ୍ୟାସ ଓ ଗଠନ କଳା ଦୃଷ୍ଟିରୁ କଥା ଓ ତଥ୍ୟ ସମୂହର ରୂପାୟନ ଯେଭଳି ନାଟକୀୟ ସେଭଳି ସରସ ଓ କଳାତ୍ମକ । କଳାତ୍ମକ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଏଗୁଡ଼ିକର ପୁଣି ସ୍ୱତନ୍ତ୍ର ।

ବିଷୟ ସଂଯୋଜନା ଦିଗରୁ ଆଲୋଚ୍ୟ ସ୍ରଷ୍ଟା ଜଣେ ବଳିଷ୍ଠ ପ୍ରତିଭା । ତଥ୍ୟ ଓ କାହାଣୀ ଉପସ୍ଥାପନା କରୁ କରୁ ସ୍ୱୀୟ ଚିନ୍ତାଧାରା ଓ ଦୃଷ୍ଟିଭଙ୍ଗୀ ପରିଷ୍କାର ଭାବେ ଫୁଟାଇ ପାରିବାର ଚମକପ୍ରଦ ଦକ୍ଷତା ତାଙ୍କର ରହିଛି । ପରିଣାମରେ ଏକ ଅପୂର୍ବ କଥା କୋଣାର୍କ ସୃଷ୍ଟି ହୋଇଛି । ଏଥିରେ କବିଙ୍କ ସମାଜ ଦୃଷ୍ଟି ଓ ସଂସ୍କୃତି ସଚେତନତା ପ୍ରତିଫଳିତ ହୋଇ ଓଡ଼ିଆ ଜାତିର ଏକ ଜୀବନ୍ତ ଆଲେଖ୍ୟ ସୃଷ୍ଟି ହୋଇଛି, ଜାତିର ଜୀବନଧାରା ପ୍ରାଣବନ୍ତ ରୂପ ପାଇଚି । ସେ ଅନୁଭବ କରିଛନ୍ତି । ବହୁ ସୂତ୍ରରୁ ତଥ୍ୟ ଓ କାହାଣୀ ସଂଯୋଜନ ଦ୍ୱାରା ମୂଳ ପ୍ରସଙ୍ଗର ଅଙ୍ଗହାନୀ ଘଟିବ ନାହିଁ ବରଂ ଏହା ଅଧିକ ଯୁଗୋପଯୋଗୀ ଓ ବୈଚିତ୍ର୍ୟ ସଂପନ୍ନ ହୋଇପାରିବ । ସେ କାଳ ସମାଜ ସହ ଏକାଳ ଘଟଣାର ସଂଯୋଜନ ତାଙ୍କ କବିତ୍ୱର ଏକ ମୁଖ୍ୟ ଆଭିମୁଖ୍ୟ (ପୃ. ୨୯-୩୧, ୬୧, ୭୭-୮୫) । କାହାଣୀ ଲତାପରି ଡ଼ଙ୍କେଇ ଲଟେଇ ଲଟେଇ ମାଡ଼ି ଯାଇଚି ହେଲେ ମୂଳଟି କେଉଁଠି ମଧ୍ୟ ଦୃଷ୍ଟିକେନ୍ଦ୍ରର ଅନ୍ତରାଳକୁ ଚାଲିଯାଇ ନାହିଁ କି କୌଣସି ଗୋଟିଏ ହେଲେ ପ୍ରସଙ୍ଗ ଉପସ୍ଥାପନ ଅବାନ୍ତର ବୋଧ ହେଉନାହିଁ । କବି ପ୍ରତ୍ୟେକ ପ୍ରସଙ୍ଗ ଏଭଳି ପରିପୂରକ ଭାବେ ଖଞ୍ଜି ଦେଇଛନ୍ତି ଯେ, ଗ୍ରନ୍ଥଟି କେତେବେଳେ ମଧ୍ୟ ମୂଳଲକ୍ଷ୍ୟରୁ ବିଚ୍ୟୁତ ହୋଇନାହିଁ । ଭୋକ୍ତାଙ୍କ ରସତୃଷ୍ଣା ମେଣ୍ଟାଇବା ଲାଗି ସମର୍ଥ ଏ କବିଙ୍କ କୃତିର ରୂପ ଯେମିତି ବିଚିତ୍ର ସେମିତି ରୋମାଞ୍ଚକର । ବହୁ ଐତିହାସିକ, ପୌରାଣିକ ଓ ସାହିତ୍ୟିକ ଘଟଣା ତଥା ତଥ୍ୟ ଉପସ୍ଥାପନ ମାଧ୍ୟମରେ ଜୀବନଧର୍ମୀ ଶିକ୍ଷା ପ୍ରଦାନ, ଭୋକ୍ତାଙ୍କ ମନରେ ବିସ୍ମୟ ଓ ବିଶ୍ୱାସ ଉତ୍ପାଦନ ଏବଂ ସର୍ବୋପରି ବିସ୍ମୃତି ପ୍ରବଣ ଓଡ଼ିଆ ଜାତିକୁ ସାଂପ୍ରତିକ ଦୁର୍ଦ୍ଦଶା ସମ୍ବନ୍ଧରେ ସଚେତନ କରାଇ ପାରିବାର ସାମର୍ଥ୍ୟ ଆଲୋଚ୍ୟ କବିଙ୍କ ବୈଶିଷ୍ଟ୍ୟ । ଇତିହାସରେ ସ୍ନାତକୋତ୍ତର ପୁଣି ସାହିତ୍ୟ ଅଧ୍ୟାପକ ରୂପେ ସମଗ୍ର ଜୀବନ କାଳ ନିର୍ବାହ କରିଥିବା କବିଙ୍କ ବିସ୍ତୃତ ଅନୁଭବ ଗଭୀର ସାହିତ୍ୟିକ ଓ ଐତିହାସିକ ଅନୁଶୀଳନ ତଥା ସୂକ୍ଷ୍ମ ପର୍ଯ୍ୟବେକ୍ଷଣର ଅପୂର୍ବ ତ୍ରିବେଣୀ ସାଙ୍ଗକୁ ନିସର୍ଗ ପ୍ରତି ତାଙ୍କ ଅନ୍ତରାତ୍ମାର ମୂର୍ଦ୍ଧଣ୍ୟ ଉଚ୍ଚାରଣ ସକାଳର ଚନ୍ଦ୍ରଭାଗାକୁ ଏପରି କୋଟୀକୁ ଉନ୍ନୀତ କରିଛି, ଯାହାକୁ ଓଡ଼ିଆ ସାହିତ୍ୟର ଇତିହାସ ଅବହେଳିତ କରିପାରିବ ନାହିଁ, ସ୍ୱୀୟ ଖର୍ବତ୍ୱ ଦୂର କରିବା ପାଇଁ ଅବଶ୍ୟ କୋଳାଗ୍ରତ କରିବ ।

ଏଭଳି ଏକ ମହନୀୟ କୃତିକୁ ସୂକ୍ଷ୍ମ ମୁଦ୍ରଣ ଓ ଭବ୍ୟ ପ୍ରଚ୍ଛଦପଟ ସହ ପାଠକଙ୍କ ନିକଟରେ ଉପସ୍ଥାପନ କରିପାରି ଥିବାରୁ ବାବୁ ସୁମନ ରଞ୍ଜନ ମଧ୍ୟ ଅଶେଷ ଧନ୍ୟବାଦାର୍ହ ।

ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ,
ପାରଳାଖେମୁଣ୍ଡି



# ମୁଁ ସାର୍‌ଙ୍କୁ ଯେମିତି ଜାଣେ

*ଡଃ ମିନତୀ ଓତା*

୧୯୯୪ ମସିହା ମେ ମାସ ୨୦ ତାରିଖ । ସେହିଦିନ ଏହି ସଂଗ୍ରାମୀ ବ୍ୟକ୍ତିତ୍ୱ ଡଃ ଲକ୍ଷ୍ମୀଧର ଦାସଙ୍କ ସହିତ ମୋର ପ୍ରଥମ ଦେଖା । କଲେଜ ଛୁଟି ହୋଇଯାଇଥାଏ । ଅନେକ ଦିନରୁ ଆଶାଥିଲା Ph.D. ଡ଼ିଗ୍ରୀଟିଏ ହାସଲ କରିବା ପାଇଁ । ସଂସାର ଜଞ୍ଜାଳରୁ ମୁକୁଳି ପାରୁନଥିଲି । ତଥାପି ସମୟେ ସମୟେ ମନ ଅଥୟ ହୁଏ । ଦୂରକୁ ନଯାଇ ଏଇପାଖ ସାମନ୍ତ ଚନ୍ଦ୍ର ଶେଖର କଲେଜରୁ ଜଣେ ଗାଇଡ଼ ଯଦି ପାଇଯାଆନ୍ତି; ବହୁତ ଭଲ ହୁଅନ୍ତା । ଏମିତି ଭାବୁ ଭାବୁ ଥରେ ବାଟରେ ଦେଖାହେଲେ S.C.S College ର ପୂର୍ବତନ ଅଧ୍ୟାପକ ଡଃ ସୁଶାନ୍ତ କୁମାର ବାସା । ମୋ ମନ କଥା କହୁ କହୁ ସେ ଖୁସୀ ହେଇ କହିଲେ ଆମ କଲେଜକୁ ଏବେ ଜଣେ ନୂଆ ସାର୍ ଆସିଛନ୍ତି; ଜଣେ ସ୍ଥିତିପ୍ରଜ୍ଞ ମଣିଷ" ତାଙ୍କୁ ଦେଖିଲେ ତୁମର ତାଙ୍କ ପାଦତଳେ ମୁଣ୍ଡନୋଇଁବାକୁ ଇଛା ହେବ । ତୁମପାଇଁ ସେ ଉପଯୁକ୍ତ ଗାଇଡ୍ ହେବେ । ପ୍ରକୃତରେ ପ୍ରଥମ ଦେଖାରେ ସାର୍ ମୋ ଗାଇଡ୍ ହେବାର ଚିନ୍ତାଧାରାଠାରୁ ବହୁତ ଉର୍ଦ୍ଧ୍ୱକୁ ଚାଲିଗଲେ । ତାଙ୍କୁ ଦେଖି ମତେ ଲାଗିଲା ସତେ ଯେମିତି ମୁଁ ଅଳ୍ପ କେତେ ବର୍ଷ ହେବ ହରାଇଥିବା ମୋ ନନା (ବାପା)ଙ୍କୁ ପାଇଗଲି । ସାର ସେଦିନ ମୋ ସନ୍ଦର୍ଭର Topic ଟି ନିଜେ ସ୍ଥିର କରିଥିଲେ । ତାହାଥିଲା ଗୋଟିଏ ନୂଆ Topic ତାଙ୍କ ମତ ହେଲା ପୁରୁଣା କାମରୁ ନୂତନତା ବାହାର କରିବା ଅପେକ୍ଷା ନୂଆ Topic ରେ କାମ କଲେ ସହଜ ହେବା ସହ ଜଣେ ଔପନ୍ୟାସିକଙ୍କୁ ଆମେ ସମାଲୋଚନା ସ୍ତରକୁ ଆଣିପାରିବା । ତାଙ୍କ ମତାମତ ମତେ ଭଲ ଲାଗିଥିଲା । ତାପରେ କାମ ଆଗେଇ ଚାଲିଲା ।

ସାର୍‌ଙ୍କ ଘରକୁ ଯିବା ଆସିବା ମୁଁ ଓ ମୋ ମିଷ୍ଟର ତାଙ୍କ ଘରର ସଦସ୍ୟ ହେଇଗଲୁ । ଖାଲି ସେତିକି ନୁହେଁ ଆମେ ଦୁହେଁ ତାଙ୍କ ବଡ଼ଝିଅ ଜ୍ୱାଇଁର ସମ୍ମାନ ମଧ୍ୟ ପାଇଗଲୁ । କେତେବେଳେ ଯେ ଏ ସବୁ ସଂପର୍କ ସୁଦୃଢ଼ ହୋଇଗଲା ତା ମୁଁ ଜାଣିପାରିଲିନି । କଥା ପଡୁ ପଡୁ ସାର୍‌ଙ୍କ ବାପାଙ୍କର ମଧ୍ୟ ମୋ ଶ୍ୱଶୁର ଘର ସହିତ ଘନିଷ୍ଠ ସଂପର୍କ ଥିଲା । ପ୍ରକୃତରେ ମଣିଷ ନିଜ, ଇଛାରେ ଯାହା ଚାହେଁ ତା ପରିପାରେନି । ସେ ସବୁ ବିଧି ନିର୍ଦ୍ଦିଷ୍ଟ ।

ମୁଁ ସାର୍‌ଙ୍କୁ ଯେତିକି ଜାଣିଛି । ସାର୍ ଖାଲି ମୋ ସନ୍ଦର୍ଭର Guide ନୁହଁନ୍ତି; ତାଙ୍କ ସାରା ପରିବାରର ଯେ Guide କହିଲେ ଅତ୍ୟୁକ୍ତି ହେବନି । ଭାଇ, ବନ୍ଧୁ, ପୁତୁରା, ଝିଆରୀ, ପୁଅ, ଝିଅ, ପ୍ରତ୍ୟେକଙ୍କ ପ୍ରତି କର୍ତ୍ତବ୍ୟରେ ତାଙ୍କର ଥାଏ ନିଃସ୍ୱାର୍ଥପରତା । ଭଲ ମଣିଷମାନେ ଯେ ବର୍ତ୍ତମାନ ଏ କଳୁଷିତ ସମାଜରେ ଅଛନ୍ତି ସାର୍‌ଙ୍କୁ ଦେଖିଲେ ସ୍ପଷ୍ଟ ବାରିହୋଇପଡ଼େ । ଜୀବନସାରା ସଂଗ୍ରାମ କରିଚାଲିଥିବା ଜଣେ ମଣିଷର ଏତେ ଧୈର୍ଯ୍ୟ ଥାଏ; ଏହା କେବଳ ଭଗବାନଙ୍କ ଆଶୀର୍ବାଦ ବିନା ସମ୍ଭବ ହୁଏନି ।

କଥାରେ ଅଛି - "ପିତା ମାତା ସୁକୃତରୁ ପୁତ୍ର ହୁଏ ସୁଖୀ" ଏ କଥାର ଯଥାର୍ଥତା ମଧ୍ୟ ପ୍ରମାଣିତ । ସାର୍‌ଙ୍କ ବହୁ କୁଟୁମ୍ବୀ ପରିବାର ସହିତ ତାଙ୍କ ପୁଅଝିଅମାନେ ମଧ୍ୟ ଖୁବ୍ ଶାନ୍ତିରେ ଅଛନ୍ତି । ସାର୍ ତାଙ୍କ ପିଲାମାନଙ୍କର ସବୁଠୁ ବଡ଼ ବନ୍ଧୁ । ଏତେ ବଡ଼ ବଡ଼ ପିଲା ହେଲେଣି, ଘର ସଂସାର କରି ବିଦେଶରେ ରହୁଛନ୍ତି, କେବେ କେବେ ଦେଖାହେଲେ ପୂର୍ବଭଳି ନମ୍ର ବ୍ୟବହାର ମନ କିଣିନିଏ । ଏ ସବୁ ଯେ କେବଳ ସାର୍‌ଙ୍କ ଅବଦାନ ତା ନୁହେଁ; ସହଧର୍ମିଣୀର ଭୂମିକାରେ ମାଉସୀ ସଂପୂର୍ଣ୍ଣ ନିଆରା ମଣିଷ ଏତେ ବର୍ଷ ବୟସରେ ତାଙ୍କ ମୁହଁର ସରସତା, ସ୍ନେହାଁଭାବ, ଆନ୍ତରୀକତା ପୂର୍ଣ୍ଣ କଥା କେଇପଦ ମନ ମୋହନିଏ । ସ୍ୱାର୍ଥପର ସଂସାରର ଏ ସବୁ ମିଳିବା ଯେ କେତେକଷ୍ଟ ତା ସମସ୍ତେ ଅନୁଭବୀ ।

ମୋ ଅବହେଳା ଓ ପାରିବାରିକ ପରିସ୍ଥିତି ଯୋଗୁଁ ମୁଁ ଅନେକ ସମୟରେ ସାରଙ୍କୁ ଦେଖା କରିପାରେନି । କେବେ କେବେ ବାଟରେ ଦେଖାହେଲେ ସାର ମନେ ପକାଇ ଦେଇ କୁହନ୍ତ "ସବୁକାମ ସହିତ ପାଠପଢ଼ା ମଧ୍ୟ ଚାଲିବା ଉଚିତ୍ । ଅଧାରେ ରହିଗଲେ ଅଧା ହୋଇ ରହିଯିବ ।" ଗାଳି ମଧ୍ୟ ଶୁଣେ ଭାରି ଅଳସୋଇ ବୋଲି । ସବୁବେଳେ ସାର୍ କୁହନ୍ତି- "ଛାତ୍ରୀ ବା ଛାତ୍ର ଯଦି ସାର୍‌ଙ୍କୁ ଶିକ୍ଷା ନ ଦେଇ ପାରିଲା ଶିକ୍ଷକର ଜୀବନ ସାର୍ଥକ ହୁଏନି ।" ମୁଁ କିନ୍ତୁ ତା କରିପାରିଲିନି । ମୋ କାମ ସରିଗଲା ମୁଁ ନୀରବ ରହିଗଲି ।

ଏବେ ବି ସାର୍ ସେମିତି ଆଗେଇ ଚାଲିଛନ୍ତି । କାହିଁ ପିଲା ଦିନରୁ ଆଜିପର୍ଯ୍ୟନ୍ତ ଅବିରତ ଭାବରେ ଚାଲିଛି ତାଙ୍କର ସାଧନା ଓ କର୍ମମୟ ଜୀବନ । କେବେ ଥକି ପଡ଼ିନାହାନ୍ତି । ଶରୀରର ଦକ୍ଷତା କମିଗଲେ ମଧ୍ୟ ମନର ଦକ୍ଷତା କାହିଁ କେତେ ଦୂର ଯିବାକୁ ଚାହେଁ । ଅବସର ନେବା ପରେ ସାହିତ୍ୟ ସୃଷ୍ଟି ଦିଗରେ ସେ ନିଜକୁ ସଂପୂର୍ଣ୍ଣ ବିନିଯୋଗ କରିଛନ୍ତି । ଏକାଧାରାରେ ସେ ଜଣେ ପ୍ରାବନ୍ଧିକ,

ସମାଲୋଚକ, ଗାଳ୍ପିକ, ଅନୁବାଦକ ଓ କବି । ସର୍ବୋପରି ସେ ଜଣେ ଭଲ ମଣିଷ । ଏଇ ବାଟରେ ଆଗେଇ ନେବାପାଇଁ ପ୍ରେରଣାଦାୟୀ ମାଉସୀଙ୍କର ଅବଦାନ ସମପରିମାଣରେ ପ୍ରଶଂସନୀୟ ।

ଅବସର ନେବାପରେ ଏଇ ଶ୍ରୀକ୍ଷେତ୍ରରେ ସୁନ୍ଦର ଘରଟିଏ ତୋଳି ରହିଛନ୍ତି । ଦେଖାହୁଏ ବେଳେ ବେଳେ । ଅଭିମାନରେ କହୁନ୍ତି "ଆସୁନୁ ଘରକୁ, ତୋ ସହିତ କଥା ହେଇପାରୁନି । କ'ଣ ଏତେ କାର୍ଯ୍ୟବ୍ୟସ୍ତ ?" ଉତ୍ତର ଦେଇପାରେନି । କହିପାରେନି ମୁଁ ଭାରି ଅଳସୋଇ କେବେ କେବେ ହଠାତ୍ ପହଞ୍ଚିଯାଏ । ବହୁତ ଗପେ (ନିଜ ବାପା, ମା'ଙ୍କ ଆଗରେ ଗପିଲା ଭଳି ଅନେକ ସୁଖ ଏବଂ ଦୁଃଖ । ସବୁ ଶୁଣି ପଦେ ଉତ୍ତର ଦିଅନ୍ତି- "ଧୈର୍ଯ୍ୟଧର ସବୁ ଠିକ୍ ହୋଇଯିବ" । ଏ ପଦକ କଥା ମୋ ମନକୁ ଟାଣ କରିଦିଏ । ସାରଙ୍କ ଘରକୁ ଗଲେ ମୋର ମୁଖ୍ୟ ଆକର୍ଷଣ ସାର୍‌ଙ୍କ ହାତ ଗଢ଼ା ଅତି ଆପଣାର ଫୁଲ ବଗିଚା ଦେଖିବା । ଫୁଲ ବଗିଚା ଭଳି ଖୁବ୍ ଶାନ୍ତ ଲାଗେ ତାଙ୍କ ଘର ଓ ପରିବେଶ ।

ଏମିତି କହୁ କହୁ ଅନେକ କଥା ଲମ୍ବିଚାଲିଥିବ; ସରିବନି ଏହି ଭଳି ବ୍ୟକ୍ତିତ୍ୱକୁ ମୁଁ ବା କ'ଣ ମାପିପାରିବି ? ଭଗବାନଙ୍କ ନିକଟରେ ତାଙ୍କର ୭୨ତମ ଜନ୍ମବାର୍ଷିକୀରେ ଏତିକି ହିଁ ପ୍ରାର୍ଥନା କରିବି କରୁଣାମୟ ତାଙ୍କୁ କରୁଣା ଦୃଷ୍ଟିରେ ଚାହିଁଥାଆନ୍ତୁ । ଯେତେ ଦିନ ପର୍ଯ୍ୟନ୍ତ ତାଙ୍କ ସଂସାରରେ ରଖିବାକୁ ମନସ୍ଥ କରିଛନ୍ତି ସେତେଦିନ ପର୍ଯ୍ୟନ୍ତ ତାଙ୍କୁ ନିରୋଗ ରଖିବାକୁ ଶୁଭଦୃଷ୍ଟିରେ ଚାହିଁଥାଆନ୍ତୁ । ଶେଷରେ ଆଜିର ଏହି ଖୁସିର ଦିନରେ ମୁଁ ମୋ ପାଇଁ ସାର୍‌ଙ୍କ ଠାରୁ ମାଗିନେବାକୁ ଚାହୁଁଛି ଆଶୀର୍ବାଦର କରୁଣାଟିକେ । ତାଙ୍କ ଆଶୀର୍ବାଦରୁ ମୋ ବାକି ଜୀବନ ସୁଖମୟ ହେଉ ।

ରିଡ଼ର ସୁରଜମଲ୍ଲ ସାହା
ମହାବିଦ୍ୟାଳୟ, ପୁରୀ



# କେଉଁଠି ପାଇବି ତାକୁ

ଡକ୍ଟର ନଟବର ଶତପଥୀ

ସୁନାର ଚାମୁଚ ପାଟିରେ ଧରି ଜନ୍ମ ହେବା କଥା ଶୁଣାଯାଏ । ଲୋକେ କଥାଟିକୁ ବିଶ୍ୱାସ କରନ୍ତି; ମୁଖେ ମୁଖେ ବି କଥାଟି ରଟନ୍ତି । କିନ୍ତୁ ଦୁଃଖ ଚାମୁଚ ପାଟିରେ ଧରି ଜନ୍ମ ହେବା କଥା କେହି କୁହନ୍ତି ନାହିଁ କାହିଁକି ? ଏପରି ଲୋକ ସଂଖ୍ୟାରେ ଅଧିକ । ସୁନା ଚାମୁଚ ଓ ଦୁଃଖ ତ ଉଭୟଟି ଯଦି ବିଶ୍ୱାସ କରାଯାଏ ଭଗବାନଙ୍କ ହାତର କଥା; ସେ ହିଁ ଏପରି ବିଚାର କରିଥାଇପାରନ୍ତି । ସେ କାହିଁକି ଏପରି କରନ୍ତି ସେ ପ୍ରଶ୍ନ ପଚାରିବାର ଅଧିକାର ତାଙ୍କ ସୃଜିତ ମଣିଷଟିର ଥାଏ କି ନା କହିବା ସମ୍ଭବ ନୁହେଁ । ତେବେ ଆମ ସମାଜର ଭଗବତ-ସଂସ୍କୃତିର ବ୍ୟାଖ୍ୟାକାରମାନେ ଅଲଗା ଭାବେ କଥାଟିକୁ ଦେଖନ୍ତି । କବି କୁହନ୍ତି, " ବିପଦ ପ୍ରଭୁଙ୍କ କଷଟି ପାଷାଣ, ପରଖନ୍ତି ତହିଁ ନରହୃଦ ଟାଣ " । ଭଗବାନଙ୍କ ପକ୍ଷ ନେଇ କବି ଯେ କହିଲେ ଏକଥା, ତାହା ଖାଲି କଳ୍ପନାର ନୁହେଁ, ପରୀକ୍ଷା ପରେ ପରୀକ୍ଷାରେ ପାସ କରି କହିଛନ୍ତି, ଏମିତି ଲାଗୁଛି । ଅନୁଭୂତି ନଥିଲେ କହି ହୁଏ ନାହିଁ । ପୁରୁଣା ରୋଗୀ ଜଣେ ଭଲ ଡକ୍ତର । ଏହାର ଅର୍ଥ ନୁହେଁ ସେ ଜଣେ ଡକ୍ତର କିନ୍ତୁ ସେ ହାସଲ କରିଥିବା ଅନୁଭୂତି, ଚିକିତ୍ସାର ଭଲମନ୍ଦ, ଡକ୍ତରଙ୍କ ଗୁଣ ଅବିଗୁଣ ବିଷୟରେ ତାଙ୍କ ଧାରଣା ନିଶ୍ଚୟ ଗୁରୁତ୍ୱପୂର୍ଣ୍ଣ । ବେଳେ ବେଳେ ତାଙ୍କର ପରାମର୍ଶ ନୂଆ ଡକ୍ତର ଠାରୁ ଅଧିକ ସୁଫଳ ଦିଏ ।

ଦୁଃଖ ଯାର ସହଚର, ସଂଗ୍ରାମ ତାର ଜୀବନ ପଥ । ଏଇ ସଂଗ୍ରାମର କଷଟିରେ ତାର ବ୍ୟକ୍ତିତ୍ୱର ପରୀକ୍ଷା । ଯିଏ ସଂଗ୍ରାମରେ ବିଶ୍ୱାସ କରନ୍ତି ସେ ଦୁଃଖକୁ ଖାତିର କରନ୍ତି ନାହିଁ । କିମ୍ବା ଭଗବାନଙ୍କୁ ଦୋଷ ଦିଅନ୍ତି ନାହିଁ । ବିଶ୍ୱାସ ରଖନ୍ତି କର୍ମରେ । ସେ ଯଦି ଆସ୍ତିକ ତେବେ ତ କଥା ଛିଡ଼ିଲା । ନାସ୍ତିକଙ୍କୁ ଏ ପ୍ରସଙ୍ଗକୁ ନ ଆଣିଲେ ଭଲ । କାରଣ କୌଣସି କାମ ପଛରେ ସେ ଦେଖନ୍ତି ନାହିଁ ଅଦୃଶ୍ୟ ଶକ୍ତି ବା ନିୟତିର ହାତ । ନାସ୍ତିକଙ୍କୁ କର୍ମବାଦୀ ବୋଲି କୁହାଯାଇପାରେ । ଅଧିକନ୍ତୁ ସେ ଜୀବନ ପ୍ରିୟ । ଆସ୍ତିକମାନେ ଯେ କର୍ମବାଦୀ ନୁହଁନ୍ତି, ଏକଥା କୁହାଯାଉ ନାହିଁ, କିନ୍ତୁ ନାସ୍ତିକଙ୍କ କର୍ମପ୍ରେରଣା ଓ ଆସ୍ତିକଙ୍କ କର୍ମ ଉନ୍ମାଦନାର ଉତ୍ସ ଭିନ୍ନ ଭିନ୍ନ । ଈଶ୍ୱରଙ୍କୁ ପ୍ରାଣୀ ଭିତରେ ପ୍ରତ୍ୟକ୍ଷ କରି ଆସ୍ତିକ ଯେଉଁ ମହାନ ଈଶ୍ୱରୀୟ ଲୀଳାରେ ଆତ୍ମବିସ୍ମୃତ ହୁଅନ୍ତି ନାସ୍ତିକଙ୍କ ପକ୍ଷରେ ତାହା ଘଟେ ଭିନ୍ନ ରୂପରେ । ନାସ୍ତିକ ଜୀବନର ମହାପ୍ରବାହ

ସ୍ରୋତରେ ନିରବଚ୍ଛିନ୍ନ ମାନବୀୟ ପ୍ରବୃତ୍ତିକୁ ପ୍ରକୃତିର ଅଂଶ ବୋଲି ମନେ କରି ତାର ସାଦୃଶ୍ୟ ବୈସାଦୃଶ୍ୟର କାରଣ ଖୋଜି ବୁଲନ୍ତି ବିଜ୍ଞାନ ନେତ୍ର ନେଇ । ସେହି ହେତୁ ସୁଖ ବା ଦୁଃଖ ଭୋଗ ସାମାଜିକ ବ୍ୟାପାର ଜଡ଼ିତ ବୋଲି ମନେ କରନ୍ତି । ସାମାଜହିଁ ନିୟାମକ । ଏ ଦୁଇଟିର ଅସ୍ତିତ୍ୱ କେତେବେଳେ ନକାରାତ୍ମକ ବା କେତେବେଳେ ଆପେକ୍ଷିକ । କିନ୍ତୁ ଈଶ୍ୱର ନିର୍ଭର ବିଶ୍ୱାସର ମୂଳ ପ୍ରତ୍ୟହନିଷ୍ଠୁର ଭାବେ ଅଦୃଶ୍ୟ ଉପରେ ଆସ୍ଥା ସ୍ଥାପନ ।

ଆମର ବନ୍ଧୁ ବୋଧହୁଏ ଚଳିତ ଅର୍ଥଠାରୁ ବହୁଗୁଣ ଦ୍ୟୁତିରେ ଅର୍ଥବନ୍ତ) ଡକ୍ଟର ଲକ୍ଷ୍ମୀଧର ଦାସ ବିସ୍ମୟକର ଏକ ଜୀବନ ସାଧନରଯୋଗୀ । ଯୋଗୀ ଏହିପରି ଏକ ଭାବମଣ୍ଡିତ ପଦ ଯେଉଁଥିରେ ସବୁର ପ୍ରତ୍ୟୟ ସାକାରାତ୍ମକ, ନକାରାତ୍ମକତା ବିରଳ । ସୁଖ ବା ଦୁଃଖ ଆପଣାପରି ଅନ୍ୟର ହୁଏ ଓ ତାହାକୁ ଆପଣାର ଉପମା କରି ଯେ ସବୁଠି ସମାନ ଭାବରେ ଓ ବ୍ୟବହାରରେ କର୍ମ କରେ । ନା ଥାଏ ପାତ୍ର ଅପାତ୍ର ଭେଦ, ନା ସୁଖ ଦୁଃଖରେ ଯୁଗଯୁଗାତ୍ ତଲ୍ଲୀନ ବା ବିଲୀନତା । ସାରା ସମ୍ମୁଖ ମାର୍ଗ କର୍ମମାର୍ଗ ଓ ସେ କର୍ମ ପଥରେ ପାଦ ଦେଲାମାନେ ପଣକରି ଜିଣିବାକୁ ହେବ । ସଂସାର ସେଇମାନଙ୍କ ପାଇଁ ଯେଉଁମାନେ ଦୁଃଖ ଋମୁଚ ଧରି ଜନ୍ମ ଲଗ୍ନରୁ ଭୁଇଁରେ ପାଦ ଦିଅନ୍ତି ଓ ପାଦ ଉଠାଇ ଟେକି ରଖିବାକୁ ଅମଙ୍ଗ ହୁଅନ୍ତି । ରାବଣ ସଭାରେ ଅଙ୍ଗଦର ବୀରତ୍ୱ ପରୀକ୍ଷା ନେବା ପାଇଁ ଦରକାର ପଡ଼ିବାରୁ ଅଙ୍ଗଦ କହିଲେ, ଲଙ୍କପତି, ଆଦେଶ କରନ୍ତୁ ଆପଣଙ୍କ ବୀରମାନଙ୍କୁ ମୋ ପଦ ଏଇ ଭୁଇଁରୁ ସେମାନେ ଉଠାଇ ଦିଅନ୍ତୁ । ପାଦ ରହିବ ଭୁଇଁରେ ମହାମେରୁ ତୁଲ୍ୟ, ତାକୁ ହଟାଇବା ତ ଦୂରର କଥା ସାମାନ୍ୟ ହଲାହଲି କରିବା ସମ୍ଭବ ନୁହେଁ । ବ୍ୟକ୍ତି ଭିତରେ କେଉଁଠୁ ଆସେ ଏତେ ଶକ୍ତି ! ପାଦତଳର ମାଟିରେ କେତେ ଗଭୀରକୁ ବା କେତେ ଦିଗରେ ବିସ୍ତାରିତ ହୋଇଯାଏ ତାର ମୂଳ-ଚେର-ଶକ୍ତି ଆହାରଣକାରୀ ଶୋଷକ ଉପାଙ୍ଗ ? ଏହା କିପରି ହୁଏ । କେଉଁ ମହିମା ନା ମାୟା ବିଦ୍ୟାରେ ହୁଏ ? ପାଦ ନା ଗଛ ନା ପାହାଡ଼ ?

ଏ ତିନୋଟି ସ୍ୱତନ୍ତ୍ର ପୁଣି ଗୋଟିଏ ଭାବରେ କବଳିତ । ମଣିଷ-ଗଛ-ପାହାଡ଼ । ପାହାଡ଼-ଗଛ-ମଣିଷ । ସାରୂପ୍ୟତା ସେଇଠି -ଗୋଟାଏ ଦୃତ୍ପଣ, ମାଟିରେ ଠିଆହେବି ତ ଗଛପରି ବା ପାହାଡ଼ ପରି । ଅନୁକୂଳ ପ୍ରତିକୂଳ ହୋଇ ଯାହା ବି ଆସୁ ମୁଁ ଠିଆହେବି ଊର୍ଦ୍ଧ୍ୱମୁଖୀ । ଆକାଶ ହିଁ ମୋର ଚରମ ଲକ୍ଷ୍ୟ ବିନ୍ଦୁ- ନା ଅଛି ଦକ୍ଷିଣରେ ନା ବାମରେ, ନା ସମ୍ମୁଖରେ କି ପଶ୍ଚାତରେ । ଅଛି କେବଳ ପାଦତଳ

ମାଟିରେ, ଅନନ୍ତ ଶକ୍ତିର ସମ୍ଭବା ସେଇ ରସବାହିନୀର ଅପରିସୀମ ଗଭୀରତାରେ । ପାଦଗଛ- ପାହାଡ଼ କିଏ କାହାର ସାଦୃଶ୍ୟ ? କିଏ କାହାର ବିକଳ୍ପ, ସେ ବିକଳ୍ପ କେଉଁଥି ପାଇଁ ?

ଆମ ବନ୍ଧୁ, ସଖା- ସହୋଦର କଳ୍ପ ସେ ମଣିଷଟିକୁ ବୁଝିଲେ, ତାର ଇତିହାସ ଖୋଜିଲେ ଏହିପରି ଆସେ ଅନୁଭବ । ପାଦ ଯାର ଗଛପରି, ଧରାଉପରେ ଉଭାହେବା ପରେ ସମଗ୍ର ଅବୟବର ବିସ୍ତାର ଓ ପ୍ରକାଶମାନ ରୂପ ଅଚଳ ମହାମେରୁ । ଅନ୍ୟ ଉପମା ଦୁଷ୍କର ଏଥିପାଇଁ । ତାତ୍ପର୍ଯ୍ୟ ଏହା ଯୁଦ୍ଧମାନ ଜୀବନ, ଆଜନ୍ମ ଏହି ବ୍ରତ ଯାହାର ଜୀବନ, ସେଇଠି ଉଚ୍ଚାଭିଳାଷ ସବୁମନ୍ତେ ଭାସ୍ୱର । ପୁଣି ପ୍ରତ୍ୟେକ ସ୍ତରରେ ଅନମନୀୟ ।

ଲକ୍ଷ୍ମୀଧର ନାମରେ ଏଇଠି ସମ୍ଭାବନାମୟ ଗୋଟିଏ ଅର୍ଥ ଦ୍ୟୁତି ଭାସି ଉଠେ - "ଉଦ୍ୟୋଗିନଂ ପୁରୁଷସିଂହମୁପୈତି ଲକ୍ଷ୍ମୀଃ" । ଉଦ୍ୟୋଗ ହିଁ ଲକ୍ଷ୍ମୀ ଭାବର ମୂଳ ଓ ତାହାର କର୍ତ୍ତା ପୁରୁଷ ସିଂହ । ଶାସ୍ତ୍ରର ବାଣୀ ବାସ୍ତବ ଜରବନର ଅନୁଶୀଳନରୁ ଆପ୍ତ ହୋଇଯାଏ ଏବଂ ସବୁକାଳ ପାଇଁ ମାର୍ଗପ୍ରଦର୍ଶନ କରେ । ସେ ମାର୍ଗ କେହି ଘୋଷିଘୋଷି ମନେ ରଙ୍ଗେ ବା ନ ରଖେ ଭିନ୍ନ କଥା, ମାତ୍ର ପୁରୁଷସିଂହ ନିଜ ଅନ୍ତରରୁ କର୍ମର ପନ୍ଥା ଖୋଜି ବାହାର କରେ ।

ଏପରି ଜଣେ ମଣିଷ ମୋର ସହୋଦର ତୁଲ୍ୟ, ମୋ ପରିବାରର ଶୁଭେଚ୍ଛୁ ନୁହଁନ୍ତି, ଏକଦା ଥିଲେ ରକ୍ଷାକର୍ତ୍ତା । ଜୀବନ ଆକାଶରେ ବେଦନାରସୂର୍ଯ୍ୟ ତଳେ ଗୋଟାଏ ଉନ୍ମୁକ୍ତ ଛତା । ମୋ ପିଲାଙ୍କ ପାଇଁ ସ୍ନେହ ଶ୍ରଦ୍ଧାର ମେରୁର ଗୋଲାପ, ମରୁର ସବୁଜ ନାଗଫେଣି । ବଡ଼ ଦୁସ୍ତତା, ଆନ ଆନ ଭାବମୟ ମନ ନେଇ ୧୯୭୫ ଜୁଲାଇ ୨୫ତାରିଖର ମଝିରାତିରେ ଅପରିଚିତ ଏକ ପରିବେଶ ଭିତରେ ମୁଁ ପାଦ ଦେଇଥିଲି -ସେଇଟି ବଲାଙ୍ଗିର ନାମକ ଏକ ଶୁଣାସ୍ଥାନରେ । ଖଣ୍ଡ ଖଣ୍ଡ କଳାଧଳା ବାଦଲ ତଳେ ମନ୍ଦମନ୍ଦ ବହୁଥିଲା ପବନ । ଗଭୀର ନିର୍ଜନ ପରିଚିତ ସ୍ଥାନରେ ପାଦ ଦେଲା ବେଳେ କେତେ ଆଶଙ୍କା, ଅନିଶ୍ଚିତ ପରବର୍ତ୍ତୀ ଭବିତବ୍ୟ । ମେଘ ଖଣ୍ଡ ଭିତରୁ ହଠାତ ହସି ଉଠିଲା ଜହ୍ନ । ଦରହଜା ପଥରେ ବିଜୁଳିର କ୍ଷୀଣ ରେଖାଟିଏ ପରି । ଉଷ୍ଣ ଦଗ୍ଧ ତୃଣବୁଦା ଭିତରୁ ଶୁଭ୍ର ମଲିଫୁଲଟିଏ କିବା ବାସ୍ନାର ଗାଲିଚ୍ଛକୁ ମତେ ଟାଣିନେଲା ରାଜେନ୍ଦ୍ର କଲେଜ ପଥରେ ।

ମୁଁ ସେ ଦିନର ସେଇ ମୁହୂର୍ତ୍ତ ଭୁଲି ପାରିବିନି ଜୀବନରେ । ନିଶାର୍ଦ୍ଧର କୁହାମେଘ ଅନ୍ତରାଳରେ ଚନ୍ଦ୍ରର ହସ । ସହରର ବଡ଼ଦାଣ୍ଡର ଛାତି ଉପରେ କର୍ପୂର

ଶୀତଳ ପବନ ସେ ଅବଧି ମୋର କ୍ଷତର ଜ୍ୱାଳାକୁ ଶାନ୍ତ କରିଦେଲା, ଗୋଟାଏ ପ୍ରତିଶ୍ରୁତିର ରୁମାଲରେ ପୋଛି ଦେଲା ନିଦ ଢୁଳୁ ଢୁଳୁ ଆଖି ଓ ମୁହଁକୁ । ବଡ଼ ଅପ୍ରୀତିକର ପରିସ୍ଥିତି ଭିତରେ ରାଉରକେଲାରୁ ମୋ ବଦଳି ହୋଇଥିଲା ରାଜେନ୍ଦ୍ର କଲେଜକୁ ବିଦାୟ ନେବାକୁ ଥିଲା ନିର୍ଦ୍ଦେଶ । ଖରା ଛୁଟିରେ ବି । କାରଣ କଲେଜ ସମେତ ରାଉଲକେଲା ସହରରସାହିତ୍ୟ ମହଲ । ସରକାରି ଦପ୍ତର, ପୋଲିସ, ସବୁଠି ପରିଚୟ ଥିଲା ମୁଁ କମ୍ୟୁନିଷ୍ଟ ଏବଂ ନକସଲ ସମର୍ଥକ । ସେମାନଙ୍କ ଧାରଣା ନିଆଁରେ ଘିଅ ଢ଼ାଳିଥିଲା ଗୋଟିଏ ପଥ ପ୍ରାନ୍ତର ନାଟକ - 'ପ୍ରତିମୂର୍ତ୍ତି', ଏଇଟି ଚୀନ ବିପ୍ଳବ ସମୟର ଗୋଟିଏ ଘଟଣାର ନାଟକ ରୂପ; ମୁଁ ଲେଖକ ଓ ଅଭିନେତା ମଧ୍ୟ । ରାଉଲକେଲାର ଆମ ବାଗନାରେ ମଞ୍ଚସ୍ଥ ହେଲା ମେ ୨୨ ତାରିଖ ସଂଧ୍ୟାରେ । ସେଇଟି ବୋଧହୁଏ ଓଡ଼ିଶାର ପ୍ରଥମ ପଥପ୍ରାନ୍ତର ନାଟକ । ଏହା ସଂକେତ ଧର୍ମୀ ବିପ୍ଳବ ଭାବର ନାଟକ । ଏଥିରେ ଖୁବ୍ ଅସନ୍ତୋଷ ପ୍ରକାଶ କଲେ କଂଗ୍ରେସବାଲା ଓ ବିଶେଷକର ସେକାଳର ଛାତ୍ର କଂଗ୍ରେସର ପିଲାଏ । ରାଉଲକେଲା ସରକାରି କଲେଜରେ ମାର୍କସବାଦୀ ଦଳର ଏସ.ଏଫ୍.ଆଇ ଛାତ୍ର ସଂଗଠନ ଖୁବ ଟାଣୁଆ ଥିଲେ । ମୋହ ସହ ସାଙ୍ଗଠନିକ ସଂପର୍କ ମଧ୍ୟ ଥିଲା ଅନ୍ତରଙ୍ଗ । ଜରୁରୀ ପରିସ୍ଥିତି କଂଗ୍ରେସ ପିଲାଙ୍କୁ ସୁଯୋଗ ଦେଲା । ରାଉଲକେଲା ଥିଲା ମୋ ଅଧ୍ୟାପକ ଜୀବନର ଆଦ୍ୟ ପୀଠ; ସେହି ସୂତ୍ରରେ ରାଜନୀତି, ସାହିତ୍ୟ, ସଂସ୍କୃତି ସହ ମୋର ସଂପର୍କ ପ୍ରାୟତ ପ୍ରତ୍ୟକ୍ଷ । ମୁଁ ଛାଣ୍ଟକାଣ୍ଟର ମଣିଶ ନଥିଲି । ଅଧ୍ୟାପକମାନେ କହୁଥିଲେ ସୁନାଛଡ଼ି; ଏହାକୁ ତରଳାଇଲେ ଖାଦ ମିଳିବନି । ଯାହାହେଉ ମୋର ଅକୁତୋଭୟ ନୀତି, ସ୍ୱଚ୍ଛ ଏକ ଆଦର୍ଶ ଓ ରାଜନୀତିକ ଲକ୍ଷ୍ୟ ମତେ ଟାଣିନେଇଥିଲା ସିପିଏମ୍‌ଏଲ ସଂଗଠନ ଆଡ଼କୁ । ସେ ବେଳେ ପଶ୍ଚିମବଂଗ ପ୍ରଭାବରେ ଓଡ଼ିଶାରେ କେଉଁଠି କେଉଁଠି ଗୋପନ ନକ୍‌ସଲ ଗୋଷ୍ଠି ମିଳିତ ହୁଅନ୍ତି ପତ୍ର ପ୍ରତିକା ବାଣ୍ଟବୁଣ୍ଟ ହୁଏ । ସଂଗ୍ରାମ ଭିତର କଥା ଆଲୋଚନା କରାଯାଏ । ସବୁ ସହ ମୋର ସଂପର୍କ ଥିଲା ନିବିଡ଼ । ଖାଲି ଆଖିରେ ଧୂଳି ଦେବା ପରି କାମ କରିବା ପରି ପରିବେଶ ସୃଷ୍ଟି ହୋଇ ନଥିଲେ ମଧ୍ୟ ପୁଲିସ ଠାରୁ ଅଭିଯୋଗ ବାରମ୍ବାର ଆସୁଥିଲା କଲେଜର ପ୍ରିନ୍‌ସିପାଲଙ୍କ ପାଖକୁ । ମୋର ଉତ୍ତର ମାତ୍ର ଗୋଟିଏ ମୁଁ ସାହିତ୍ୟର ଅଧ୍ୟାପକ, ସାହିତ୍ୟ କରୁଛି ରାଜନୀତିର ପ୍ରସଙ୍ଗ ଏଥିରେ ଆସେ -ରାଜନୀତିକ କ୍ଷମତାର ବା ଧ୍ୱଂସ ଲୀଳାର କଥା ଗୌଣ । ସେ ବେଳେ ମଧ୍ୟ ଅନ୍ୟଥା ନାମରେ ପତ୍ରିକାଟିଏ ସହ ମୋର ସଂପର୍କ ଥିଲା । ସହ ସଂପାଦକ ଭାବେ । ଏସବୁ ଉପର ଢ଼ୌକନକୁ ଆଳ କରି ମୁଁ ମୋର

ରାଜନୀତିକ ସଂଗଠନ କରି ପାଉଥିଲି ଅପରିସୀମ ଆନନ୍ଦ ।

ଏବେ ସେହି ଆନନ୍ଦ ମତେ ମିଳିବ ନାହିଁ - ମୋର ଜୀବନ ହୋଇପଡ଼ିବ ଲକ୍ଷ୍ୟଚ୍ୟୁତି । ବିଷାଦର ଜରାରେ ମୁଁ ହେବି ସ୍ୱରହୀନ ଏକ ପକ୍ଷୀ । ଆକାଶଥିବ, ଥିବ ଗଛ, କିନ୍ତୁ ଡେଣାରେ ନ ଥିବ ଉଡ଼ିଯିବା ପାଇଁ । ଠିକ୍ ବର୍ଷକ ଆଗରୁ ହୋଇଥିଲା ବିବାହ । ପ୍ରଥମ ପିଲା ଆସିବାକୁ ଅପେକ୍ଷା କରିଥିଲା । ବିବାହ ପରେ ପରେ ଜୟପ୍ରକାଶଙ୍କ ସଂପୂର୍ଣ୍ଣ କ୍ରାନ୍ତିର ଆନ୍ଦୋଳନରେ ମୁଁ ମଧ୍ୟ ମିଶିଥିଲି । ମୋ ସ୍ୱପ୍ନ ସବୁ ଧଳା ଧଳା ମେଘ ଖଣ୍ଡ ପରି ମୋର ଯୌବନର ଆକାଶରେ ଭାସିବୁଲୁଥିଲେ । ମାର୍କସ, ଲେଲିନ, ଚାରୁମଜୁମଦାର, କାହ୍ନୁସାନ୍ୟାଲ, ଜଙ୍ଗଲ ସାନ୍ତାଳଙ୍କ ସମାନ୍ତରାଳରେ ଚାଲିଥିବା ମୋ ମନର ରାଜନୀତିକ ସ୍ୱପ୍ନ- ପୁଣି "ଆମି କୋଥାଏ ପାବୋ ତାରେ ମନେର ମାନୁଷ ରେ"- ର ବଡ଼ ହତାଶ ରୋମାଣ୍ଟିକ ଦେଆଲ - ପୁଣି ବେଳେ ବେଳେ କାଫକା, କାମ୍ୟୁ, ନିଟିସେ ସାର୍ତ୍ତ - ପୁଣି ମୋର ବଡ଼ ପ୍ରିୟ ବାଦଲ ସରକାର, ଟଲଷ୍ଟଏ, ଓନିଏଲ - ଉତ୍ପଳ ଦତ୍ତ - ଏ ସବୁ ଗୋଟାଏ ସିମ୍ଫୋନି । ସ୍ୱପ୍ନ, ଆବେଗ, ସଂଗ୍ରାମ, ବାସ୍ତବତା, ଆଦର୍ଶ, ମଣିଷ ପ୍ରତି ଅକାତର ସମ୍ବୋଦନା, ମନର କେଉଁ ଏକ ସ୍ତରରେ କାହାପାଇଁ ଲୁଚିଥିବା ପ୍ରେମର ଅଫୁଟା ଗୋଲାପ କଢ଼ି - ସାହିତ୍ୟ; ମଣିଷର ଦୁଃଖ, ଭାଙ୍ଗିଯାଉଥିବା ଆଶାର ଖଣ୍ଡ ଖଣ୍ଡ ମାର୍ବଲ - ଗତି କୁଆଡ଼େ, କଣ ଲକ୍ଷ୍ୟ, କରିବ କ'ଣ - ସାହିତ୍ୟ ନା ସଂଗ୍ରାମ ? ଦୁଃଖ ଡ଼ାକେ ବଣ ଭୂମିର ପାହାଡ଼ କାନ୍ଥରୁ, ମହୁଲ ଫୁଲରେ ମହୁଲ ଗନ୍ଧରୁ, ଶାଳବଣର ପେଣ୍ଠା ପେଣ୍ଠା ଫୁଲରୁ । କେଉଁଠି ଫୁଟେ ବନ୍ଧୁକ, ଚାଲେ ସାଇଁ ସାଇଁ ତୀର - ଡ଼ାକେ ସ୍ୱପ୍ନାହତ ଲୁହର ଜୀବନ - ଏବେ ବି ଏ ବୟସରେ ମୁଁ ଦେଖେ ସ୍ୱପ୍ନ ସେ ଦିନର ଯୋଉ ଶିକ୍ଷିତ ବାବୁଗିରିର ସାହିତ୍ୟ ବୃତ୍ତିରେ ଚାଲିଛି ଜୀବନ - ଲୋଡ଼ା ନଥିଲା - ନା ଥିଲେ କେହି ବନ୍ଧୁ, ନା ପ୍ରୀତିର ପ୍ରଥମ କେହି; ଯାହା ସବୁ ଥିଲା ବୃତ୍ତିର ସଂପର୍କରେ, ବା ରାଜନୀତିର ଆଦର୍ଶରେ, ବା ଗୋପନ ବୈଠକର ଏକ ପ୍ରାଣ ହେବାର ବାହ୍ୟଡ଼ମ୍ବରୁରେ ବନ୍ଧା । ନଥିଲେ ମଣିଷ ମନରେ ଯାହାକୁ ଶକ୍ତିହେବ, ରାତିଅଧରେ ଓ ଡାକ ଦୋହରାଇବ - ସବୁ ଦେଇ ଦେବା ପରି ଗୋଟାଏ ନିସ୍ୱମନ ଖୋଲା ହୃଦୟ, ବ୍ରେକହୀନ ଗତି - ଆବେଗର ଚଇତାଳି ପବନରେ ସାଇଁ ସାଇଁ ଆଉହା - ତାର ନାମ ମୋ ନିଜ ନାମ ।

ରାଜେନ୍ଦ୍ର କଲେଜ - ଭଲ ଲାଗିଲା ଛକ, ଚା ପାଣି, ଭଙ୍ଗାବିଡ଼ା ବିଡ଼ା ପାନ । ପ୍ରିନିସପାଲ ସ୍ୱର୍ଗତ ମୃତ୍ୟୁଞ୍ଜୟ ପଣ୍ଡା । ତାଙ୍କ ସରକାରି ବାସଘରକୁ ପ୍ରାୟ

ଲଗାଇ କରିଥିଲେ କଲେଜ ପାଇଁ ଗେଷ୍ଟହାଉସ । ମୁଁ ତାର ପ୍ରଥମ ଗେଷ୍ଟ । ପରେ ପରେ ବିଭାଗର କେତେଜଣ ବନ୍ଧୁ - କଲେଜ ଅନ୍ୟ ଅଧ୍ୟାପକ -ମୋର ବୃତ୍ତାନ୍ତ ଜାଣିଥିବା ଜଣେ ଅଧ୍ୟାପକ ପ୍ରିନ୍‌ସିପାଲଙ୍କ କାନରେ ପକାଇ ଦେଲେ - ରାଉରକେଲାର ଘଟଣା - ସେଇଠି ସରକାରି ବସାଘର ନେଇ ହୋଇଥିବା ବିବାଦ - ପଣ୍ଡାଏ କହି ବୁଲିଲେ କେ କେ ? ଉତ୍ତର ଦେଲେ କଟକି, କମ୍ୟୁନିଷ୍ଟ, କରଣ(ବ୍ରାହ୍ମଣ ଜାତି, ହେଲେ ଆଚରଣ କରଣରେ) ବେଖାତିର କରିବା ମୋର ଗୋଟାଏ ସଡକ ଭିତରେ ଉଡ଼ିଗଲା ଅଭିଯୋଗ ବା ମୋ ପାଇଁ ସାଟିଫିକେଟରେ ପେନସିଲ୍ ଗାର ।

ମୁଁ ଏକୁଟିଆ । ରହିଲି ସେ ଯାଏ ଜମା କାମ ଶେଷ ହୋଇ ହାତକୁ ଆସିନଥିବା ଖୋଲା ମେଲା ଲେକରେ କଲୋନିର ଗୋଟାଏ ଘରେ । ପାଣି ନାହିଁ, ଆଲୁଅ ନାହିଁ । ଖାଲି ଘାଉଁ ଘାଉଁ ଦକ୍ଷିଣା ପବନ । ଡଃ ଦାସ(ଲକ୍ଷ୍ମୀଧର) ରହୁଥାନ୍ତି ବାହାରେ ଘରଭଡ଼ା ନେଇ । ଦିନେ ସଂଧ୍ୟାରେ ଗଲି ତାଙ୍କ ବସାକୁ ଗଲିତ ଗଲି - ଶାଝିଅ, ଶାପୁଅ । ସାନଟି ସେଇ ମାସେ ଦୁଇମାସେ ହୋଇଥିବ । ଗୋଲଗୋଲ ବଡ଼ବଡ଼ ଆଖି, କଅଁଳାନୁଆଁର ସେଇ ପ୍ରଥମ ଅପଲକ ଚାହାଁଣି; ଆଉ ଆଉ ନୂଆ ପଛକୁ ପଛ - ଅପରିଚିତ ଏକ ନଦୀର ଢ଼ଳ ଢ଼ଳ ନୀଳ ଲହରୀ ପରି ଛୁଟି ଆସି ଫେରିଯାଉଛନ୍ତି, ପୁଣି ଆସୁଛି, ଯାଉଛି, ପାଣି, ଚ଼ ଜଳଖିଆ ପାନର ସନ୍ତର୍ପଣ ଅଭ୍ୟର୍ଥନା ନା ସତ୍‌କାର ଭିତରେ । ବନ୍ଧୁ ଖୋଲି ଦେଇଛନ୍ତି ସ୍ରୋତର ମୂଳ ଉତ୍ସ - ସୂଚନା-ପ୍ରଶ୍ନ-ଉତ୍ତର - କିଏ, କଣ, କେଉଁଠି, କେତେ -ବେଳେ - କଥାବାର୍ତ୍ତାର ଭାଗବତ ପଢ଼ାର ଶୈଳୀ - ଏତେଥାନ୍ତି ମୁଁ ଟିକେ କରେଇ କଣେଇ ଦେଖୁଥାଏ - ସେ ଜଣଙ୍କର ପତ୍ନୀ, କେତୋଟିର ମାଆ - କାହାର ଝିଅ, କାହାର ବୋହୂ - ମୋ ପାଇଁ ? ବନ୍ଧୁ ପତ୍ନୀ ନା ଆଉ କିଛି ରହିଛି ଗୋପନରେ - ଗୋଟାଏ ଅନୁଭୂତି ଅଥଚ ସ୍ୱଷ୍ଟ ସଙ୍କେତବିହୀନ - ଅଲିଖିତ ସମ୍ପର୍କ .... ରକ୍ତର ନା ସ୍ୱର୍ଗର । ମାଟିର ନା ପାପଳର । ଗଛର ନା ମଳର, ଫୁଲର ନା ଫଳର । ଲାଜ କଟି ନଥିବା ସ୍ୱାଭାବିକ ପାଟଳ ବର୍ଣ୍ଣରୁ ଝରି ଆସୁଥିଲା ଶ୍ରଦ୍ଧା; ଅକୃତ୍ରିମ, ଖୋଲା, ଫୁରୁଥିବା ପେଣ୍ଠୁର ରସି ଖୋଲିଗଲା ପରି - ସେ ଦିନ ଅନ୍ତରରେ ଡାକିଲି - ନାନୀ-ମୋ ବଡ଼ ଭଉଣୀ - ଠିକ୍ ଯେମିତି - କେବଳ ଗଉଣରେ ଫରକ ଯାହା । ଅନ୍ତର୍ମୁଖୀ ମୋର ଭାବନା ଭିତରେ ଧ୍ୱନିଟିକୁ ଚାପି ଦେଲା ଯାହା । ଏହାପରେ ଆଉ କିଛି ଫରକ ନ ଥିଲା । ପକ୍ଷୀ ଚାହିଁଲା ଗଛ, ଆକାଶ । ଫୁଲରେ ଚଞ୍ଚୁମାରିବାର ସାହାସ । କେମିତି ଗୋଟାଏ ଫାଶ ତିଆରି କରିଦେଲେ ଦାସ ପରିବାର -- ପ୍ରାୟନିତି ସନ୍ଧ୍ୟାରେ, ଲାଗିଲା ମିଳନର

ଉତ୍ସବ । ପିଲାଙ୍କ ସହ ଧୂଳି ଖେଳର ରୋମାଞ୍ଚ ପରି ଏକାକୀ ଜୀବନର ଫୁଲଙ୍କ ଖୋଜିଲା ସାନ୍ନିଧ୍ୟ । କିଛି ଦିନ ପରେ ସେ ଆସିଲେ ଲେକ୍‌ଚର କଲୋନିକୁ । କଲେଜବାଟରେ ପ୍ରଥମେ ପଡ଼େ ତାଙ୍କର ବସା, ମୋ ବସାଟି ଶେଷରେ । ମୋ ପରିବାର ଗଲା ମୋ ପାଖକୁ । ଝିଅ ମୋର । ବଡ଼ ବୁଲିବାର କଳା ଶିଖିଥିଲା । ଦୁଧ ବୋତଲଟିଏ ଧରି ସେ ବୁଲିଲା ଘର ଘର । କାହାଘରେ ପଶି ରୋଷଇ ଘରୁ ହାତରେ ଆଣି ଖାଇଲାଣି ତ କାହା ବାଡ଼ିରେ ପଶି ଫୁଲ ଛିଣ୍ଡାଇଲା । ଦିନେ ପଡ଼ୋଶି ଅଧ୍ୟାପକ ବକୁଳ ଚନ୍ଦ୍ର ନାୟକଙ୍କ ରୋଷେଇ ଘରେ ପଶି ରନ୍ଧାହୋଇଥିବା ମାଂସ ଖାଉଛି ନିର୍ଭୟରେ ବସି । ଖଡ଼୍‌ଖଡ଼୍ ଶବ୍ଦ ଶୁଣି ଶ୍ରୀମତୀ ନାୟକ ଦେଖିଲେ ଦୃଶ୍ୟ । ଦୁଇ ପ୍ରାଣୀଙ୍କ ପାଇଁ ପ୍ରସ୍ତୁତି ମାଂସ ତରକାରି ପ୍ରାୟ ନାହିଁ । ଖଣ୍ଡ ଖଣ୍ଡ ହୋଇ ପଡ଼ିଛି ଚଟାଣରେ ଅଇଁଠାହୋଇ । ସେ ଝିଅ ଦିନେ ଟାଣି ନେଲା ତା ମାଆକୁ ଶ୍ରୀଦାସଙ୍କ ଘରକୁ । ସେଇ ପ୍ରଥମ ଦେଖାରେ ଶ୍ରୀମତୀ ଦାସ ଉଚ୍ଛୁଳି ଉଠିଲେ, "ଏ ମୋର ବୋହୂ" । ସେହିଦିନୁ ସଂପର୍କ ହେଲା । ସମୁଦି ସମୁଦୁଣି - ଏବେଯାଏ ଅତୁଟ ଅଛି - ମୋ ଝିଅ ବାହାହେଲା ଅନ୍ୟତ୍ର ପ୍ରଥମେ - ପରେ ତାଙ୍କ ପୁଅ । ହେଲେ ସମ୍ବନ୍ଧ କଟିଲା ନାହିଁ ।

ଲକ୍ଷ୍ମୀଧର ବାବୁ ସ୍ନେହର ଅନ୍ୟନାମ, ଶ୍ରୀମତୀ ଦାସ(ସ୍ନେହଲତା) ଦାସବାବୁ ଡାକନ୍ତି ଟୁନି । ଉଭୟେ ଅକୃତ୍ରିମ -ସ୍ନେହ ଶ୍ରଦ୍ଧାର ଦୁଇଟି ଗିରିକନ୍ଦରରୁ ଝରି ଆସୁଥିବା କଳକଳ ଝରଣା । ପିଲାଏ ମଧ୍ୟ ଊଣା ନୁହଁନ୍ତି । ବନ୍ଧୁ, ପରିଚିତ ଜନପ କେହି ଆସିଲେ ଉଦ୍‌ଗିରଣ ହୁଏ ଆତିଥ୍ୟର ଭଲକାନୋ । ସେତେବେଳେଦରମା ଅବା କେତେ । ତାଙ୍କ ପରିବାରରେ ନିଜ ପିଲାଙ୍କୁ ଛାଡ଼ି ପୁତୁରା, ଭଣଜା, ଝିଆରି, ଭାଇବୋହୂ, ତାର ଛୋଟ ପିଲା - ସବୁବେଳେ ପରିପୂର୍ଣ୍ଣ ବନ୍ଧୁଜ୍ଞାତି - ଆମ ସମୁଦୁଣିକୁ ଅସରନଥାଏ, ଚୂଲି ଜଳୁଥାଏ । ସଦାବର୍ତ୍ତର ଅହର୍ନିଶି ଖଞ୍ଜା ପରି ଆତିଥ୍ୟ; ସୁକୃତି ଭବ୍ୟତାର ଅନିନ୍ଦ୍ୟ ଆନୁଗତ୍ୟ-ଚର୍ଚ୍ଚାର ଅକୂପାର କୂଳରେ ଅହର୍ନିଶ ଅଖଣ୍ଡ ପ୍ରଦୀପ । ଅଭାବତ ଚିରନ୍ତନ । କିନ୍ତୁ ଦିନେବି ତାହା ଦୁଇପ୍ରାଣୀଙ୍କି କରିନାହିଁ ସଂକୁଚିତ, ବିଷାଦ; ଥଙ୍ଗେଇ ଯିବାର ପ୍ରଶ୍ନ ଉଠିନି । ବନ୍ଧୁ ଚର୍ଚ୍ଚା ହେବ - ଯେମିତି ହେବା କଥା- ଶାଗ ପଖାଳରେ ନୁହେଁ, ଛତିଅଶନ ଭଜାରେ ଠା ହେବ । ଅପୂର୍ବ ସ୍ୱାଦ - ନିଜେ ଦାସବାବୁ ସିଦ୍ଧହସ୍ତ ରକମ ବ୍ୟଞ୍ଜନ ତିଆରିରେ । ଆଇସି ଆସିଲା ତ ନିଜେ ବସିଯିବେ ଚୂଲିପାଖରେ । ବରାଦ ହେଉଥିବ ରଜାମାର୍ଗରେ - ଦାମ ଜତାଢ଼ି ! କୁଣିଆ ମଜତ୍ର ନେଉତ ସଂସାର; ତାଙ୍କୁ ସାଧିବାର ସବୁ ପ୍ରଚେଷ୍ଟା ଲାଗିଥିବ ।

ମନକୁ ମନ ଲଗାଣ ଆସିବା ପରି ଅଭାବ ଅନଟନର ସେଇ ଘର ପୂରି ଉଠୁଥିବ ଶୂନ୍ୟତାକୁ ଉପହାସ କରି ।

କି କଳା, କି ଜାଦୁ ଥାଏ ଓର ଉଣ୍ଡି ଉଣ୍ଡି ବହୁବାର ଦେଖିଛି 'ୱାଟର ଅଫ୍ ଇଣ୍ଡିଆ' ନାମକ ଡ଼ାଳରୁ ଝରୁତି ଇଚ୍ଛାକଲାମାତ୍ରେ ସନ୍ତୋଷ ବିଧାନି ଅମୃତ । ମନରେ ଆସେ 'ଏ କି ଜାଦୁକର' । ପକେଟ କଣା ଥିଲେ ଲୋକ ସାଙ୍କୁଡ଼ି ଯାଏ; ଇଏ ଫୁଲି ଉଠୁଛନ୍ତି କେମିତି ? ଶାସ୍ତ୍ର ମନକୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେଇଛି ଜୀବନରେ । ମନ ଅଛି ତ ତମେ ଇନ୍ଦ୍ର ପଦରେ ନ ବସି ଇନ୍ଦ୍ରପରି ସମ୍ମାନ ପାଇପାର । ମୋର ସୌଭାଗ୍ୟ ମୋ ସଖା ମନରେ ଇନ୍ଦ୍ର । ସେପରି ଇନ୍ଦ୍ରକୁ ଦେଖିଛି ଅନ୍ୟ ରୂପରେ । ସେ ରାଜେନ୍ଦ୍ର କଲେଜରେ ଥିଲେ ଜାତୀୟ ସେବା ସଂସ୍ଥାରେ । ପିଲାମାନଙ୍କୁ ନେଇ ଛୁଟିରେ ଯାନ୍ତି ଗାଁ ଗଣ୍ଡା, ଦରିଦ୍ର ପଛୁଆ ରାଜ୍ୟର ପଛୁଆ ଜିଲା ଗାଁ । ଦଶଦିନ ପାଇଁ କ୍ୟାମ୍ପ ପଡ଼େ । ପିଲାଏ ଗାଁର ସଫେଇ ରାସ୍ତାଘାଟ ମରାମତିଠୁ ଆରମ୍ଭ କରି ସ୍ୱାସ୍ଥ୍ୟ ବିଷୟକ କାମ କରନ୍ତି । ମୁଁ ଦେଖିଛି କୌଣସି କ୍ୟାମ୍ପରେ ୪୦ରୁ କମ ପିଲା ନଥାନ୍ତି । ସେ ପିଲାଙ୍କୁ ସମ୍ଭାଳିବା, ଖରାତରାରେ କାମ କରାଇବା, ଗାଁର ଲୋକଙ୍କ ସହ ମିଶି ହାନିଲାଭ ବୁଝିବା - ସୋଜା କଥା ମୋଟେ ନୁହେଁ । ସରକାର ଜଣକ ପିଛା ଯେତିକି ଟଙ୍କା ଦିଅନ୍ତି ସେତିକିରେ ଓଳିଏ ଭଲରେ ଖାଇହୁଏ । ପିଲାଙ୍କ ପାଇଁ ଦରକାର କମରେ ଦୁଇଓଳି ପେଟପୂରା ଓଳିଏ ଜଳଖିଆ । ଥରେ ଥରେ ବନ୍ଧୁଭାବେ ଯାଇ ପିଲାଙ୍କ ସହ ମିଶି ଦେଖିଛି କାହାର ଆପତ୍ତି ନାହିଁ । ସମସ୍ତେ ଖୁସ । ଶାଗ ମାଛ ଯାହାମିଳୁ ପରମ ତୃପ୍ତି । ଓଳିଏ ଆଇଁଷ ନିଶ୍ଚୟ । ଥରେ ତାଙ୍କୁ ପଚାରିବି ପଚାରିବି ହେଉ ହେଉ ଆଖିରେ ପଡ଼ିଲା ନଜିର ଟିଏ । ଏତେ କମ୍ ଟଙ୍କାରେ କେମିତି ଚାଲୁଛି । କଥା କଣ କି ସେ କାଇଦା ଜାଣିଥିଲେ କେଉଁଥିରେ କେତେ ଖର୍ଚ୍ଚ କଲେ ସବୁ ବିଧାନ ସମତୁଲ ସନ୍ତୋଷ ଦେଇପାରେ । ଦରିଦ୍ର ଗାଁର ସେବା ପାଇଁ ଆସିଥିବା ସ୍ୱେଚ୍ଛାସେବୀମାନେ ତ ସେଇ ଭଳି ଗାଁର ପୁଅ । କଲେଜ ପାଠ ପଢ଼ିବାରେ ତ ଇନ୍ଦ୍ର ସୁଖ ଚାହିଁଲେ ମିଳିବ ନାହିଁ । ଏଇ ମେନାଭାବ ସେ ଜଣାଇଥିଲେ । ନିଜେ ଦରକାର ପଡ଼ିଲେ ଖାଦ୍ୟ ମିଳିବ ନାହିଁ । ଏଇ ମନୋଭାବ ସେ ଜଣାଇଥିଲେ । ନିଜେ ଦରକାର ପଡ଼ିଲେ ଖାଦ୍ୟ ସୁଆଦ କରିଦେଉଥିଲେ । ସେ ଅମୃତହସ୍ତ । ଅଳ୍ପକେ ତୃପ୍ତି ।

ତାଙ୍କ ସାଙ୍ଗରେ ମିଶିଗଲି । ଗାଁ ଗାଁ ବୁଲିଲି । ସେ ରାଜେନ୍ଦ୍ର କଲେଜରୁ ବଦଳି ହୋଇଗଲେ ବରଗଡ଼ । ତାଙ୍କ ଜାଗାରେ ମୁଁ ଦାୟିତ୍ୱ ନେଲି ଜାତୀୟ ସେବା ସଂସ୍ଥାର । ପିଲାଙ୍କ ସହ ଅଧିକରୁ ଅଧିକ ମିଶି କାମ କରିବାର । ସମାଜ ଭିତରକୁ

ପଶି ଜୀବନ ଶିଖିବାର । ଜୀବନକୁ ଭଲ ପାଇବାର । ଆଜି ସେଇ ଭାବଟି ମୋ ଭିତରେ ତଥାପି ଉଗ୍ର ରୂପେ ରହିଛି । ସନ୍ଥ ପଲଟୁ ଦାସ ତୀର୍ଥକୁ ବାହାରିଲେ । ଏକୁଟିଆ ଯାଉଥାନ୍ତି । ତୀର୍ଥ ମୁଖ ମନରେ ଈଶ୍ୱରଙ୍କ ଚିନ୍ତା ଉକୁଟି ଉଠୁଥାଏ । ବାଟରେ ମିଳିଗଲେ ଆଉ ଜଣେ ସନ୍ଥ ସୋମ ଦାସ । ଦୁଇଜଣ ସନ୍ଥ ଆଲୋଚନା କରୁ କରୁ କେଉଁଠି କେଉଁ ଜନବସତି ଭିତରେ ଜୀବନକୁ ଲୋଡୁ ଲୋଡୁ ଭୁଲିଗଲେ ତୀର୍ଥର କଥା । ପଲଟୁ କହିଲେ ଗୋଟିଏ ତୀର୍ଥ ସିନା ଛାଡ଼ିଲି ଆଉ ଜଣେ ସନ୍ଥ ସାଙ୍ଗରେ ମିଶି ମୁଁ ପାଇଗଲି ଅନେକ ତୀର୍ଥର ଫଳ । ସୋମଦାସ ଥାଇ କହିଲେକୁ ଅକାରଣ ବାନ୍ଧବ । ମୋ ଜୀବନ ସେଇ ସନ୍ଥର ସ୍ପର୍ଶରେ ଆସି ଭିନ୍ନ ହୋଇଗଲା । ଆମି କୋଥାୟେ ପାବୋ ପରେ ବୋଲି ଯେଉଁ ରବୀନ୍ଦ୍ର ପଦ ମୋ ଭିତରେ ଗୁମୁରି ଉଠୁଥିଲା । ହତାଶ କ୍ଲାନ୍ତିରେ ପୋଡ଼ି ପୋଡ଼ି ମାରୁଥିଲା । ସେ ଦହନ ରହିଲା ନାହିଁ । ଜୀବନରେ ମୁଁ ବନ୍ଧୁଶୂନ୍ୟ ଥିଲି । ଏବେ ସନ୍ଥ ମିଳିଗଲେ ଜୀବନ ପାତ୍ରକୁ ପରିପୂର୍ଣ୍ଣ କରିଦେବା ପାଇଁ ।

ବହୁତ କଥା ଅଛି । ପ୍ରିନିସ୍‌ପାଲ ମୃତ୍ୟୁଞ୍ଜୟ ପଣ୍ଡାଙ୍କ କଥା କହିଛି । ମତେ ଭୁଲବୁଝି ମଝିରେ ଗୋଟିଏ ବର୍ଷ ଭିତରେ ମତେ ସମ୍ବଲପୁର ବଦଳି କରାଇ ଦେଲେ । ସେ ବେଳକୁ ମୋର ବଡ଼ ପୁଅ ଜନ୍ମ ଆସନ୍ନ । ମୋର ଜିଦ୍ ମୁଁ ବଲାଙ୍ଗିର ଛାଡ଼ିବିନି । ଛୁଟିରେ ରହି ବାରବାର ଭୁବନେଶ୍ୱର ଆସିବାକୁ ପଡ଼ିଲା । ଆର୍ଥିକ ଦୁର୍ଗତି ଭିତରେ ଦେହରେ ଜଡ଼ିଲା ଗୋଟିଏ ଆତଙ୍କ ପରି ରୋଗ । ପୁଅର ଏକୋଇଶିଅୁଁ ଅସୁସ୍ଥ ହୋଇ ଭୁବନେଶ୍ୱରରେ । ସେ ସବୁ କଲେ । ଆଉ ଆମ ସମୁଦୁଣି ଲକ୍ଷ୍ମୀ ହୋଇ ପରଖିଲେ । ଦୁଃଖ ନାହିଁ, କାତରତା ନାହିଁ । ପଛ ଘୁଞ୍ଚା ନାହିଁ । ତହିଁଆରଦିନ ମଳିନ ମୁହଁ ନେଇ ପହଞ୍ଚି ଯାହା ଶୁଣିଲି, ବୋଧହୁଏ ପିତାପଣର ଅଧିକାର ତାଙ୍କର ହିଁ ପ୍ରାପ୍ୟ ଆଉ ମା'ପଣ ତାଙ୍କ ସହଧର୍ମିଣୀଙ୍କର । ମୋର ଚିକିତ୍ସାର ସେବାର ଦାୟିତ୍ୱ ସେଇ ପରିବାରର । ଅର୍ଥ ତାଙ୍କର । ବଳ ତାଙ୍କର । ଦେହଟା କେବଳ ମୋର । ହୃଷିକେଶ ଅନ୍ତରରେ ଥାଇ ଚଳାଉଥାଏ ଦେହଟାକୁ ।

ଅସାର ଧୈର୍ଯ୍ୟ ଦେଖିଛି, ତାଙ୍କ ସାନ ପୁଅ, ଆଜି ଜଣେ ବୈଜ୍ଞାନିକ ମଣିଷକୁ ଏଡ୍‌ସ ଆତଙ୍କରୁ ବଞ୍ଚାଇବା ପାଇଁ ଗବେଷଣାରତ, ଆମର ଜୋଇଁ ସେଇ ୫/୬ ବର୍ଷରେ ହୃଦରୋଗରେ । ଭେଲୋରରେ ହେବ ଅସ୍ତ୍ରପଚାର । ପକେଟ ଶୂନ୍ୟ ଲୋକ କରେ କଣ ! କିନ୍ତୁ ସବୁ ଠିକ୍ ହେଲା । ଧଇଁ ପେଲୁଥିବା କୁସୁମକଳିର କଳାବର୍ତ୍ତ ପୁଣି ଅମୃତ ଦଳରେ ଝଲି ଉଠିଲା । କେତେ ରୋଗ ବଇରାଗ ଗୋଟିଏ

ପରିବାରରେ ନଥାଏ ।ପିଲାଏ ପାଠ ପଢ଼ିବେ ।ପୁତୁରା ଝିଆରି ଭଣଜା ମଣିଷ ହେବେ । ଏତେ ତାଡ଼ନାକୁ ବଳ କତେ ହେଲେ ମେଣ୍ଟିବ ରହିବା ! ଦିନେ ହେଲେ ଦୁଃଖ ତାଙ୍କୁ ଝାଉଁଲାଇ ନାହିଁ । ନାହିଁ ନାହିଁ ଭିତରେ ସବୁହେବ । ହେବ ଜନ୍ମ ଦିନ ସମସ୍ତଙ୍କର । ସବୁ ସଜ ଆସିବ । ପୁନେଇ ପର୍ବ ହବ । ଯାହା ହେବାର କଥା ସବୁ । ସୂତାଏ ମାରାପଡ଼ିବ ନାହିଁ । ଧୈର୍ଯ୍ୟ ଆଉ ସାହସ ବଡ଼ ମାତପର ବିଷୟ ।

ବଲାଙ୍ଗିରରେ ତାଙ୍କ ସହ ରହଣି ମାତ୍ର ସାତବର୍ଷ । ସେଇ ସାତବର୍ଷ ପରବର୍ତ୍ତୀ କେତେ ବର୍ଷ ପାଇଁ ଭିନ୍ନ ସ୍ଥାନର ନୂଆ ଅନୁଭୂତି ନେଇ ଆଜିଯାଏ ୪୦ ବର୍ଷକାଳ- ଅମ୍ଳାନ ପଦ୍ମବନର ଶୋଭା ଧରି ଯେମିତି ଶୋଭାଯାତ୍ରା ଚାଲିଛି । ତାଙ୍କ ଝିଅ ପୁଅ, ମାମି, ମିଲୁ(ତାକୁ ମୁଁ ଡ଼ାକେ ମେଲୋଡ଼ି), ଲୁଲୁ, ବୁଲୁ, ଟୁଲୁ, ଗୁଗୁଲି(ଆମ ଜୋଇଁ), ପୁତୁରା, ବୁନୁ, ବୋହୁ ସସ୍ମିତା(ସେ ଗୋଟାଏ ଇତିହାସ-ଉପନ୍ୟାସ ଭଳି ତାଙ୍କର ବିବାହ) ବେ, ଡଲି, ନାତି ସିପୁନ ଜୋଇଁ ବାଦଲ; ବଡ଼ଭାଇ ରାମଚନ୍ଦ୍ରେ, ସାନ ଭାଇ ଭରତ, ଶତୃଘ୍ନ(ଏମାନେ ଦିବଂଗତ) ସାନ ପୂର୍ଣ୍ଣ, ଭାଇବୋହୁ ସୁଷମା । ସାରା ପରିବାର ରିଫୁଜି କ୍ୟାମ୍ପର ଭହଳି ପରି ଗହଳ ପରିବାର-ଏ ସମସ୍ତେ ଯେମିତି ଗୋଟିଏ କେଇଁ ଅଭୟଦାତ୍ରୀ ଗା ଆର ପଣତ କାଳି ତଳେ । ଦୂବର ଗଣ୍ଠିପରି ଛନ୍ଦାଛନ୍ଦି ହୋଇ ରହିଛନ୍ତି । ସେଇ ଦୂବ ବିଡ଼ାର ମୂଳ ଗଣ୍ଠି ପରି ମୋର ମନେହୁଏ ରହିଛନ୍ତି ବନ୍ଧୁ / ସମୃଦ୍ଧି ଲକ୍ଷ୍ମୀଧର । ସ୍ନେହମୟୀ ସ୍ନେହଲତା-ମୋର ଅତି ଆଦରର ସମୁଦୁଣି । ମୋ ମନର୍ ଅରଣା ମଇଁଷି ପାଇଁ ନଇବାଲିରେ ପୋତା ଗଉଡ଼ର ଛତା ପରି । ଅରଣା ଦଣ୍ଡପାଟ ହୋଇ ଯୁଆଡ଼େ ମନ ବୁଲୁନା କାହିଁକି ଛତାଟିଏଅଛି ସଂଙ୍କେତପରି । ମୋର ବନ୍ଧୁ ଅଛି । ଅଛି ତାର ପରିବାର, ପିଲା କବିଲା ଏତେ ନିବିଡ଼ ସଂସାର ଓ ତାର ଟାଣିଲା ପରି ଡୋରି ମନେହୁଏ ବହୁକଥାରେ ଅପୂର୍ଣ୍ଣ ମୋର ଜୀବନର ପୂର୍ଣ୍ଣତା ସେଇଠି - ମୋ ସ୍ତ୍ରୀ କୁହେ ଏତେ ସ୍ନେହ- ସ୍ନେହର ଲତା - ସ୍ନେହର ପୂରବୀ - ସ୍ନେହର ଗୋଟାଏ ନିବିଡ଼ ଆକାଶ । ମଣିଷ ଆଉ କଣ କି ? କେମିତି ବା ବଣିବି ଓଟର ଶାସନରୁ ଓଟାରିହୋଇ ଗୋଟାଏ ମାତୃଛନ୍ଦ କୁଣ୍ଡଳିନୀ ଆକାରରେ ମୋର ଓ ମୋ ଛୁଆ ପିଲାଙ୍କ ପାଇଁ ଛତାଟିଏ ହୋଇ ଯାଇଛି ।

ସି-୧୧୬୭, ସେକ୍ଟର-୭
ସିଡ଼ିଏ, କଟକ -୧୪



# ହୀରକ ଦ୍ୟୁତିରେ ଉର୍ଦ୍ଧ୍ୱଉଡ୍ଡାଣର କଥା

ମନୋରଞ୍ଜନ ଦାସ

୧୯୮୦ ମସିହା ସେପ୍ଟେମ୍ବର ମାସ ୧୫ ତାରିଖ । ସେଦିନ ମୁଁ ଭଲାଙ୍ଗିର ସ୍ଥିତ ରାଜେନ୍ଦ୍ର ମହାବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗ ଦେଲି । ଓଡ଼ିଆ ବିଭାଗ ସମେତ ବିଭିନ୍ନ ବିଭାଗର ଅଧ୍ୟାପକ-ଅଧ୍ୟାପିକାମାନଙ୍କ ସହିତ ମୋର ପରିଚୟାତ୍ମକ କଥୋପକଥନ ହେଲା । ତନ୍ମଧ୍ୟରେ ଥିଲେ ଓଡ଼ିଆ ବିଭାଗର ଅଧ୍ୟପକ ଶ୍ରୀଯୁକ୍ତ ଲକ୍ଷ୍ମୀଧର ଦାସ । ତାଙ୍କ ବ୍ୟକ୍ତିତ୍ୱର ଆକର୍ଷଣ ଥିଲା ନିଆରା । ତାଙ୍କର ହସ ହସ ମୁହଁ ସ୍ନେହବୋଳା କଥା ଓ ଅମାୟିକ ଭାବ ଆତ୍ମୀୟତାର ପରଶ ବୋଳି ଦେଇଥିଲା । ଏହି ଆତ୍ମୀୟତାର ପୁଲକ ହିଁ ମୋତେ ତାଙ୍କର ନିକଟତର ହେବାରେ ପ୍ରେରଣା ଯୋଗାଇଥିଲା । ଅନେକ ସମୟରେ ତାଙ୍କୁ ତାଙ୍କ ବାସଭବନରେ ସାକ୍ଷାତ କରି ମୁଁ ଆଳାପ ଆଲୋଚନା କରୁଥିଲି । ମୁକ୍ତଆଳାପ ଓ ଅକପଟ ପରାମର୍ଶ ଭିତରେ ତାଙ୍କର ମାନବିକ ସୌହାର୍ଦ୍ଦ୍ୟ ଓ ଉର୍ଦ୍ଧ୍ୱଉଡ୍ଡାଣ ପାଇଁ ପ୍ରେରଣା ଥିଲା ଅନୁପମ । ଅବଲୀଳାକ୍ରମେ ଅନାବୃତ ହେଉଥିଲା ଲକ୍ଷ୍ମୀଧର ବାବୁଙ୍କ ଜୀବନ ଓ ଜୀବନ ବୋଧର ଝରୁ ଚିତ୍ରଶାଳା । ସେଇ ଚିତ୍ରଶାଳାରେ ସତେ ଯେମିତି ଦୃଶ୍ୟମାନ ହୋଇ ଯାଉଥିଲା ଚିତ୍ରଭାନୁ ତାପିତ ବୈଶାଖରୁ ଚିତ୍ରିତ ଚଇତ ଏବଂ ଧରାକର୍ଷଣରୁ ଉର୍ଦ୍ଧ୍ୱଉଡ୍ଡାଣର ଅନନ୍ୟ ଚିତ୍ରପଟ ।

ପୁରୀ ଜିଲ୍ଲା ଗୋପ ଥାନା ଅନ୍ତର୍ଗତ ଓଟର ଶାସନ ଗ୍ରାମରେ ୧୯୩୯ ମସିହା ଜୁନ୍ ମାସ ୧୨ ତାରିଖରେ ଲକ୍ଷ୍ମୀଧର ବାବୁଙ୍କର ଜନ୍ମ । ଗ୍ରାମ୍ୟ ପରିବେଶରେ କଟିଛି ତାଙ୍କର ବାଲ୍ୟଜୀବନ । ନିମ୍ନ ମାଧ୍ୟମିକ ଶିକ୍ଷା ଶେଷ କରିବା ପରେ ପାରିବାରିକ ପରିସ୍ଥିତି ଓ ଆର୍ଥିକ ଅନଟନ ହେତୁ ଅଗତ୍ୟା ସୁଦୂର କୋରାପୁଟରେ ଏକ ସେବାଶ୍ରମରେ ସେବକ (ଶିକ୍ଷକ) ଭାବେ ସେ ବୃତ୍ତିଗତ ଜୀବନ ଆରମ୍ଭ କଲେ । ସାମୟିକ ଭାବେ ପାଠ ପଢ଼ାରେ ଡ଼ୋରି ବନ୍ଧା ହୋଇଥିଲେ ମଧ୍ୟ ଉର୍ଦ୍ଧ୍ୱ ଉଡ୍ଡାଣର ଅକପଟ ମୋହ ଓ ସଙ୍କଳ୍ପ ତାଙ୍କୁ ଆଗକୁ ମାଡ଼ି ଚାଲିବାର ପ୍ରେରଣା ଯୋଗାଇଥିଲା ।

ଶିକ୍ଷକତା ପାଇଁ ଆବଶ୍ୟକ ଏଲିମେଣ୍ଟାରି ଟ୍ରେନିଂ ନେବାପରେ ଘରୋଇ ଭାବେ ମାଟ୍ରିକ ପରୀକ୍ଷା ଦେଇ ସେ କୃତକାର୍ଯ୍ୟ ହୋଇଥିଲେ । ମାଟ୍ରିକ ପରେ ସି.ଟି. ପରୀକ୍ଷା ଦେଇ ସେ ଉତ୍ତୀର୍ଣ୍ଣ ହୋଇଥିଲେ । ପରବର୍ତ୍ତୀ ସମୟରେ ଭୁବନେଶ୍ୱରରେ ଅବସ୍ଥାନ କାଳରେ ବି.ଜି.ବି ସାନ୍ଧ୍ୟ ମହାବିଦ୍ୟାଳୟରେ ଅଧ୍ୟୟନ

କରି ସେ ବି.ଏ ପାଶ୍ କରିଥିଲେ । ପୁନଶ୍ଚ ବୃତ୍ତିଗତ ଆବଶ୍ୟକତା ପୂରଣ ନିମନ୍ତେ ସେ ବି.ଇଡ଼ି ପରୀକ୍ଷା ଦେଇ କୃତକାର୍ଯ୍ୟ ହୋଇଥିଲେ । ଫଳରେ ବିଦ୍ୟାଳୟ ଶିକ୍ଷକ ପାଇଁ ଉଦ୍ଦିଷ୍ଟ ସମସ୍ତ ଶିକ୍ଷାଗତ ଯୋଗ୍ୟତା ଭିତ୍ତିକ ପଦରେ ଅଧିଷ୍ଠିତ ହେବାର ବିରଳ ନିଜର ସେ ସୃଷ୍ଟି କରିପାରିଥିଲେ । ଉର୍ଦ୍ଧ୍ୱ ଉଡ଼ାଣର ସଂକଳ୍ପ ହିଁ ତାଙ୍କୁ ଏମ.ଇ. ଇଟି ଶିକ୍ଷକରୁ ପହଞ୍ଚାଇ ଦେଇପାରିଥିଲା ଟ୍ରେଣ୍ଡ୍ ଗ୍ରାଜୁଏଟ ଶିକ୍ଷକ ପଦରେ । ଏହି ସମୟ ମଧ୍ୟରେ ସେ ଅହମୀୟ ଭାଷାରେ ଶିକ୍ଷାଲାଭ କରି ଡ଼ିପ୍ଲୋମା ହାସଲ କରିଥିଲେ । ଏହି ସମସ୍ତ ସଫଳତା ପଛରେ ପ୍ରେରଣାଦାତ୍ରୀ ଥିଲେ ସ୍ନେହମୟୀ ସହଧର୍ମିଣୀ ସ୍ନେହଲତା ।

ସାଧନାର ପ୍ରାରମ୍ଭିକ ସଫଳତା ଲକ୍ଷ୍ମୀଧର ବାବୁଙ୍କୁ ଦେଇଥିଲ ଭରସା, ସାହସ ଓ ଅଦମ୍ୟ ଉତ୍ସାହ । ଆରମ୍ଭ ହେଲା । ଉର୍ଦ୍ଧ୍ୱ ଉଡ଼ାଣର ଦ୍ୱିତୀୟ ପର୍ବ । ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡ଼ିଗ୍ରୀ ହାସଲ ପାଇଁ ସଙ୍କଳ୍ପର ନବୀକରଣ କରି ସେ ହେଲେ ସାଧନାରେ ବ୍ରତୀ ଘରୋଇ ଭାବେ ପରୀକ୍ଷା ଦେଇ ସେ ଆହରଣ କଲେ ତିନି ତିନୋଟି ବିଷୟରେ ମାଷ୍ଟର ଡ଼ିଗ୍ରୀ- ଓଡ଼ିଆ , ଇତିହାସ ଓ ରାଜନୀତି ବିଜ୍ଞାନ । ଓଡ଼ିଶା ଲୋକସେବା ଆୟୋଗ ଦ୍ୱାରା ମନୋନୀତ ହୋଇ ସେ ସରକାରୀ କଲେଜରେ ଓଡ଼ିଆ ଆଧ୍ୟପକ ଭାବରେ ଯୋଗଦେଲେ । ଅଧ୍ୟାପନା କାଳରେ ସେ "ବଙ୍କିମ ଚନ୍ଦ୍ର ଓ ଫକୀରମୋହନଙ୍କ କଥା ସାହିତ୍ୟରେ ଚରିତ୍ର ! ଏକ ତୁଳନାତ୍ମକ ଅଧ୍ୟୟନ" ଶୀର୍ଷକ ସନ୍ଦର୍ଭ ଲେଖି ପିଏଚ୍. ଡ଼ି. ଡ଼ିଗ୍ରୀ ହାସଲ କଲେ । ଶିକ୍ଷାଦାନ ସହିତ ଏକ୍ସାଟ୍ରା କରିକୁଲାର କାର୍ଯ୍ୟକ୍ରମ ବିଶେଷ କରି ଜାତୀୟ ସେବା ସଂସ୍ଥାର କାର୍ଯ୍ୟକ୍ରମକୁ ସୁରୁଗୁରୂପେ ସଂପାଦନ କରି ସେ ନିଜର ଦକ୍ଷତା, କର୍ତ୍ତବ୍ୟ ବୋଧ ଓ ସେବାମନୋଭାବର ପରିଚୟ ଦେଇଛନ୍ତି । ଦୀର୍ଘ ୪୦ ବର୍ଷରୁ ଉର୍ଦ୍ଧ୍ୱ ସମୟ ବିଭିନ୍ନ ପଦବଦବୀରେ ଅବସ୍ଥାପିତ ହୋଇ ପରିଶେଷରେ ବରିଷ୍ଠ ପ୍ରାଧାପକ ଭାବେ କାର୍ଯ୍ୟ କରି ୧୯୯୮ ମସିହା ଜୁଲାଇ ୩୧ରେ ସେବା ନିବୃତ୍ତ ହୋଇଛନ୍ତି । ତାଙ୍କର ବୃତ୍ତିଭୂମି ଶାବର ଶ୍ରୀକ୍ଷେତ୍ରରୁ ଆରମ୍ଭ ହୋଇ ଶ୍ରୀକ୍ଷେତ୍ରରେ ସମାହିତ ହୋଇଛି ।

ଡ.ଦାସଙ୍କ ପ୍ରବୃତ୍ତିର କ୍ଷେତ୍ର ମଧ୍ୟ ସର୍ଜନ ଶୀଳତାର ବର୍ଣ୍ଣାଳି ସୃଷ୍ଟି କରିଛି । କିଶୋର ବୟସରୁ କବି ପ୍ରତିଭାର ଯେଉଁ ସ୍ଫୁରଣ ଘଟିଥିଲା; ତାର ଫଳଶ୍ରୁତି "ଚିତ୍ରିତ ଚଇତି" ଓ "ସକାଳର ଚନ୍ଦ୍ରଭାଗା"ରେ ପ୍ରତିଫଳିତ । ଏତଦ୍ ଭିନ୍ନ ପ୍ରବନ୍ଧ ଓ ସମାଲୋଚନା, ଗଳ୍ପ ଏବଂ ଅନୂଦିତ ରଚନାଗୁଡ଼ିକ ତାଙ୍କ କୃତିତ୍ୱର

ପରିଚାୟକ । ଅସମୀୟା ଭାଷାରେ ଲିଖିତ କେତେକ ପ୍ରବନ୍ଧ ଗୌହାଟୀରୁ ପ୍ରକାଶିତ 'ନତୂନ ପ୍ରବାହ" ପତ୍ରିକାର ବିଭିନ୍ନ ସଂଖ୍ୟାରେ ସ୍ଥାନିତ ହୋଇ ପାଠକୀୟ ଆଦୃତି ଲାଭ କରିଛି । ପୁନଶ୍ଚ ଓଡ଼ିଆ ପାଠକଙ୍କୁ ଅସମୀୟା ସାହିତ୍ୟର ସାହିତ୍ୟ ପରିକ୍ରମା" । ଏହି ପୁସ୍ତକର ପ୍ରକାଶକର ପ୍ରକାଶଲଗ୍ନର ହର୍ଷ-ବିଷାଦର ଚମକ ମୋ ପାଇଁ ଥିଲା ଏକ ଅମୃତ ଅନୁଭବ । ଏହାଛଡ଼ା "ଉପନ୍ୟାସ ତତ୍ତ୍ୱ ଓ ଓଡ଼ିଆ ଉପନ୍ୟାସର କ୍ରମାଭିବ୍ୟକ୍ତି ।" "ଛନ୍ଦ ଓ ଅଳଙ୍କାର" ଏବଂ "ଭଞ୍ଜ ସାହିତ୍ୟର ବର୍ଣ୍ଣ ଓ ବର୍ଣ୍ଣାଳି" ତାଙ୍କର ଉଲ୍ଲେଖ ଯୋଗ୍ୟ ଆଲୋଚନା ଗ୍ରନ୍ଥ । 'ୟୁରୋପର ଇତିହାସ' ଓ ଅସମୀୟ କ୍ଷୁଦ୍ରାଗଳ୍ପ ଗୁଡ଼ିକ ଅନୁବାଦ କ୍ଷେତ୍ରରେ ତାଙ୍କର ମୌଳିକତାକୁ ପ୍ରତିପାଦନ କରେ ।

ବାସ୍ତବ ଜୀବନର ସଂଘାତ ଭିତରେ ଭାଗ୍ୟର ଦୁହାଇ ଦେଇ ସଙ୍କୁଚିତ ହୋଇଯିବାର ବ୍ୟକ୍ତି ସେ ନ ଥିଲେ । ବରଂ ଅନ୍ତର୍ଧ୍ୱନିର ନିର୍ଲିପ୍ତ ପ୍ରତଘ୍ନଦନାରେ ଜଣେ ସଂଗ୍ରାମଶୀଳ ବ୍ୟକ୍ତିତ୍ୱର ପରିଚୟ ଦେଇ ସେ ଉର୍ଦ୍ଧ୍ୱ ଉଡ଼ାଣର ଯେଉଁ ସଫଳତା ପ୍ରଦର୍ଶନ କରିଛନ୍ତି । ତାହାକୁ ଆଜି ହୀରକ ଦ୍ୟୁତିରେ ଉଦ୍‌ଭାସିତ ହେବା କାଳରେ ମୁଗ୍ଧ ଦୃଷ୍ଟିରେ ଆକଳନ କରିବାକୁ ହେବ ।

ଅଗ୍ରଜ ପ୍ରତିମ ଡ. ଲକ୍ଷ୍ମୀଧର ଦାସଙ୍କୁ ପଞ୍ଚସ୍ତରୀ ବର୍ଷ ଅତିକ୍ରମ କରିବାର ଶୁଭଲଗ୍ନରେ ମୋର ଭକ୍ତିପୂତ ପ୍ରଣାମ ଓ ଅକୃତ୍ରିମ ଅଭିନନ୍ଦନ ଜଣାଉଛି । କବି ରାଧାମୋହନ ଗଡ଼ନାୟକ ତାଙ୍କର ଅଣସ୍ତରୀତମ ଜୟନ୍ତୀ ସମାରୋହକୁ ଉଦ୍‌ବୋଧିତ କରି ଗାଇଥିଲେ- "ଜରାଗ୍ରସ୍ତ ହେବ ନାହିଁ ଏ ମୋର ଜୀବନ ବରଂଚ ଯଯାତି ପ୍ରାୟେ ହେବ ଯୌବନିତ ।" ଅନୁରୂପ ଭାବରେ ଲକ୍ଷ୍ମୀଧର ବାବୁଙ୍କ ସର୍ଜନଶୀଳ ଜୀବନ ଜରାଗ୍ରସ୍ତ ନ ହୋଇ ଯୌବନିତ ହେଉଥାଉ । ତାଙ୍କ ଠାରୁ ଆମ ସମସ୍ତଙ୍କ ପାଇଁ ସେମିତି ଝରୁଥାଉ ହସର ଫଗୁଣ; ଆମ୍ଭମାନଙ୍କ ମନୋମୁକୁରରେ ପ୍ରତିବିମ୍ବିତ ହେଉଥାଉ ଚିତ୍ରିତ୍ ଚଇତ । ତାଙ୍କର ଅବଶିଷ୍ଟ ସୁଖମୟ ଓ ଚଲାପଥ କୁସୁମିତ ହେଉ । ଶ୍ରୀଜଗନ୍ନାଥଙ୍କ ପାଦପଦ୍ମରେ ଏତିକି ପ୍ରାର୍ଥନା କରେ ।

କଟକ
ତା୧୦.୦୫.୨୦୧୪

ପ୍ଲଟ ନଂ-୩ସି/୧୨୬୫,
ସେକ୍ଟର-୧୦, ଅଭିନବ
କଟକ - ୭୫୩୦୧୪
ମୋ - ୯୯୩୭୫୬୮୨୭୫

# ବିଜୟୀ ବୀର

**ବାଳକୃଷ୍ଣ ଶତପଥୀ**

ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ପଞ୍ଚକର୍ମେନ୍ଦ୍ରିୟ ସହିତ ମନ,ବୁଦ୍ଧି ଓ ଅହଂକାରକୁ ମଣିଷର ସହଜାତ ପ୍ରବୃତ୍ତି ଭାବରେ ଗ୍ରହଣ କରାଯାଇଥାଏ । ମଣିଷର ପ୍ରକୃତି (Nature) ପ୍ରୋକ୍ତ ମନ, ବୁଦ୍ଧି ଅହଂକାର ସମନ୍ୱୟରେ ନିର୍ଣ୍ଣୀତ ହୋଇଥାଏ । ଅତଏବ, ମଣିଷର ପ୍ରକୃତି ମଧ୍ୟ ସହଜାତ । ଉକ୍ତ ସହଜାତ ପ୍ରକୃତି କିଛି ମାତ୍ରାରେ ବ୍ୟକ୍ତିର ବଂଶଗତ ଗୁଣ ଏବଂ କିଛି ମାତ୍ରାରେ ବିଧିର ବିଧାନ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । କୌଣସି ଜଣେ ବ୍ୟକ୍ତି ଅତ୍ୟନ୍ତ କ୍ରୋଧୀ ହେଲାବେଳକୁ ଅନ୍ୟଜଣେ ଶାନ୍ତ ପ୍ରକୃତିର ହୋଇଥାନ୍ତି । ପୁନଶ୍ଚ,କେହି ସଂକୀର୍ଣ୍ଣ, ସ୍ୱାର୍ଥପର ହେଲାବେଳକୁ କେହି ମଧ୍ୟ ଉଦାର ଓ ପରୋପକାରୀ ହୋଇଥାନ୍ତି । ବ୍ୟକ୍ତି ତାର ପ୍ରକୃତି ଦ୍ୱାରା ପ୍ରଭାବିତ ହୋଇ କାର୍ଯ୍ୟ ସାଧନ କଲେ ମଧ୍ୟ ଗୋଟିଏ କଥା ମନେ ରଖିବାକୁ ହେବ ଯେ ତା'ର ପ୍ରକୃତି ପାଇଁ ସେ ନିଜେ କିନ୍ତୁ ଦାୟୀ ନୁହେଁ ।

କୁହାଯାଏ, ମଣିଷ ପରିସ୍ଥିତିର ଦାସ । ଏ ପରିସ୍ଥିତି କ'ଣ ? କୌଣସି ଗୋଟିଏ ଘଟଣା ବା ବିଷୟ; ସ୍ଥାନ, କାଳ ଓ ପାତ୍ର ଦ୍ୱାରା ନିୟନ୍ତ୍ରିତ ହୋଇ ଯେତେବେଳେ ସଂଘଟିତ ହୁଏ- ତାହାହିଁ ପରିସ୍ଥିତି (Situation) । ଏଥିରେ ସ୍ଥାନ ଅପେକ୍ଷା କାଳ ଓ ପାତ୍ର ଅଧିକ ଗୁରୁତ୍ୱପୂର୍ଣ୍ଣ । କାରଣ, 'କାଳ' ବା 'ସମୟ' ମଣିଷ ଜୀବନର ନିୟାମକ । କେବଳ ମଣିଷ କାହିଁକି 'କାଳ' ସମଗ୍ର ଜୀବସତ୍ତା ଓ ସୃଷ୍ଟିର ନିୟାମକ । ସେଥିପାଇଁ କୁହାଯାଏ " କାଳୋ ଭକ୍ଷତି ଜଗତ୍, କାଳୋହି ଦୁରତିକ୍ରମଃ ।" ଯେ କୌଣସି ପରିସ୍ଥିତି ମଣିଷକୁ ନେଇ, ମଣିଷ ଦ୍ୱାରା ଏବଂ ମଣିଷ ପାଇଁ ହିଁ ସୃଷ୍ଟି ହୋଇଥିବା ଯୋଗୁଁ ଏଥିରେ ପାତ୍ରର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ ।

ମଣିଷ ପରିସ୍ଥିତିର ଦାସ ହୋଇପାରେ; ତଥାପି ମଣିଷ ମଧ୍ୟ ପରିସ୍ଥିତି ସୃଷ୍ଟି କରିଥାଏ । ବିଚ୍ ରାସ୍ତାରେ ଗୋଟାଏ ମାତାଲ, ବଜାର ଉପରେ ଗୋଟାଏ ପାଗଳ କିମ୍ୱା ସାହି ବସ୍ତିରେ ଗୋଟାଏ ଗୁଣ୍ଡା ପରିସ୍ଥିତି ସୃଷ୍ଟି କରିପାରେ । ଠିକ୍ ସେହିପରି, ଜଣେ ସାଧୁ, ସନ୍ଥ ଅଥବା ଉଚ୍ଚକୋଟୀର ନେତୃସୁଲଭ ବ୍ୟକ୍ତି ଏକ ପୃଥକ୍ ପରିସ୍ଥିତି ମଧ୍ୟ ସୃଷ୍ଟି କରିଥାନ୍ତି । ଯେଉଁ ବ୍ୟକ୍ତି ପରିସ୍ଥିତିର ବଶତା ସ୍ୱୀକାର

କରିନିଅନ୍ତି ସେ ଜଣେ ସାଧାରଣ ମଣିଷ କିନ୍ତୁ, ଯେଉଁ ବ୍ୟକ୍ତି ନିଜ ପ୍ରକୃତିର ଦୃଢ଼ତା ସହାୟତାରେ ପରିସ୍ଥିତିକୁ ଆୟତ୍ତାଧୀନ କରିପାରନ୍ତି କିମ୍ବା ସମୟର ଆବଶ୍ୟକତାକୁ ଉପଲବ୍ଧି କରି ଯେଉଁ ବ୍ୟକ୍ତି ନୂତନ ପରିସ୍ଥିତି ସୃଷ୍ଟି କରିଥାନ୍ତି ସିଏ ଜଣେ ସାଧାରଣ ମଣିଷ ନୁହଁନ୍ତି, ସେ ଅସାଧାରଣ । ମଣିଷମାନଙ୍କ ଗହଣରେ ସେ ମହାମାନବ । ମାନବ ଜାତିର ସେଭଳି ବ୍ୟକ୍ତି ଦିଗ୍‌ଦର୍ଶନ, ଆଦର୍ଶ ।

ସାଧାରଣ ବ୍ୟକ୍ତି ଏବଂ ଅସାଧାରଣ ବ୍ୟକ୍ତି ବ୍ୟତୀତ ଅନ୍ୟ ଏକ ପ୍ରକାର ବ୍ୟକ୍ତି ଅଛନ୍ତି । ଯେଉଁମାନେ ପ୍ରତିକୂଳ ପରିସ୍ଥିତି ସହିତ ସଂଘର୍ଷ କରି ନିଜର ପ୍ରଚଣ୍ଡ ଇଚ୍ଛାଶକ୍ତି ଏବଂ କଠୋର ଅଧ୍ୟବସାୟ ବଳରେ ପ୍ରତିକୂଳ ପରିସ୍ଥିତିର ଊର୍ଦ୍ଧ୍ୱକୁ ଉଠି ନିଜର ଲକ୍ଷ୍ୟ ସାଧନ କରିପାରନ୍ତି । ଏହି ଶ୍ରେଣୀର ବ୍ୟକ୍ତିଙ୍କୁ କର୍ମବାଦୀ କୁହାଯାଇପାରେ । ଏମାନଙ୍କ ପାଇଁ କର୍ମହିଁ ଉପାସନା, ଏମାନେ କର୍ମଯୋଗୀ । କର୍ମଫଳ ଉପରେ ଏ ଧରଣର ବ୍ୟକ୍ତିମାନଙ୍କର ଅଗାଧ ବିଶ୍ୱାସ । ଯେ କୌଣସି କର୍ମ ପାଇଁ ଆବଶ୍ୟକତା ଅନୁସାରେ ନିଜକୁ ପ୍ରସ୍ତୁତ କରିନେଇପାରନ୍ତି । ଏଭଳି ବ୍ୟକ୍ତି ଅତ୍ୟନ୍ତ ଦୃଢ଼ମନା । 'ପଛଘୁଞ୍ଚା ନାହିଁ ବୀରର ଜାତକେ'- ଏମାନଙ୍କ ଜୀବନୀର ମୂଳମନ୍ତ୍ର । ସୌଭାଗ୍ୟର ଅନ୍ୟନାମହିଁ ଅଧ୍ୟବସାୟ । କଠୋର ପରିଶ୍ରମ ଓ ନିରଳସ ସାଧନା ସହାୟତାରେ ଏମାନେ ସିଦ୍ଧିଲାଭ କରିଥାନ୍ତି, ସୌଭାଗ୍ୟ ଅର୍ଜନ କରିଥାନ୍ତି ।

ତେବେ ସବୁ ଅଧ୍ୟବସାୟୀ, କର୍ମଯୋଗୀ ବ୍ୟକ୍ତି କ'ଣ ସୌଭାଗ୍ୟ ଓ ସଫଳତାର ସମାନ ଅଧିକାରୀ ହୋଇପାରନ୍ତି ? ଗୋଟାଏ ଅଦୃଶ୍ୟ ଶକ୍ତି (ଅଦୃଷ୍ଟ) କ'ଣ କର୍ମଫଳକୁ  ନିୟନ୍ତ୍ରିତ କରିନଥାଏ ? ଯାହାକୁ ବିଧି, ଭବିତବ୍ୟ ବା ଭାଗ୍ୟ କୁହାଯାଇପାରେ । କର୍ମଫଳ ବିଶ୍ୱାସୀ ବ୍ୟକ୍ତି ମଣିଷ ଜୀବନୀର କର୍ମସମୂହକୁ 'ପ୍ରାରବ୍ଧ' ଓ 'ଅପ୍ରାରବ୍ଧ' ଭେଦରେ ଦୁଇଭାଗରେ ବିଭକ୍ତ କରିଥାନ୍ତି । ଏ ଜନ୍ମରେ ବ୍ୟକ୍ତି ଯେଉଁ କର୍ମ କରି ଫଳ ଭୋଗ କରେ ତାହା 'ଅପ୍ରାରବ୍ଧ' କର୍ମଫଳ । ଏବଂ ଏ ଜନ୍ମରେ ସେପରି କୌଣସି କର୍ମ ବା ଅପକର୍ମ ନକରି ମଧ୍ୟ ବ୍ୟକ୍ତି ଯେତେବେଳେ କୌଣସି ସୁଫଳ ବା କୁଫଳ ଭୋଗ କରିଥାନ୍ତି; ତାହାକୁ 'ପ୍ରାରବ୍ଧ' କର୍ମଫଳ ବା ପୂର୍ବଜନ୍ମର କର୍ମଫଳ । କିନ୍ତୁ, ହେତୁବାଦୀ କ'ଣ ଏ ପୂର୍ବଜନ୍ମ ଓ ପରଜନ୍ମ ବିଶ୍ୱାସ କରନ୍ତି ? ନାଁ, ସେମାନଙ୍କ ମତରେ ଜୀବ ଦେହରୁ ଯେତେବେଳେ ପ୍ରାଣ ଚାଲିଯାଏ

ସେତେବେଳେ ସେ ଜଡ଼ପିଣ୍ଡରେ ପରିଣତ ହୋଇଯାଏ। ପଞ୍ଚଭୂତରେ ଶରୀରର ସମସ୍ତ ଲୀନ ହୋଇଯାଏ। ଏ କ୍ଷେତ୍ରରେ ପୂର୍ବଜନ୍ମ ବା ପରଜନ୍ମ କଥା ଆସିଲା କେଉଁଠାରୁ? କିନ୍ତୁ, ବୈଜ୍ଞାନିକଙ୍କର ମତ ହେଲା- କୌଣସି ଜୀବ, ଏପରିକି କୌଣସି ବସ୍ତୁ କେବେ ବି ଶେଷ ହୋଇଯାଏ ନାହିଁ, ତାହାର ରୂପାନ୍ତରୀକରଣ କେବଳ ହୋଇଥାଏ। ଏହା ଯଦି ବୈଜ୍ଞାନିକ ତଥ୍ୟ ଭାବରେ ଗୃହୀତ ତେବେ ମଣିଷ ଜୀବନର ଶେଷ କାହିଁ? ମଣିଷ ମୃତ୍ୟୁପରେ ଭିନ୍ନ ଭିନ୍ନ ରୂପରେ ବାରମ୍ବାର ଜନ୍ମଲାଭ କରୁଥିବା କଥାକୁ ଅସ୍ୱୀକାର କରାଯାଇନପାରେ। ଜୀବନଚକ୍ରର ଏ ଗୂଢ଼ତତ୍ତ୍ୱ କଥା ବାଦ୍‌ଦେଇ ଜୀବନ କ୍ଷେତ୍ରରେ ପ୍ରତ୍ୟକ୍ଷ ଭାବରେ ଆମେ ଲକ୍ଷ୍ୟ କରିଥାଉ-

"ଉଦ୍ୟୋଗିନଂ ପୁରଷସିଂହ ମୁପୈତ ଲକ୍ଷ୍ମୀ"। ଉଦ୍‌ଯୋଗୀ ପୁରୁଷହିଁ ଲକ୍ଷ୍ମୀଧର ହୋଇଥାନ୍ତି।

ସଂପ୍ରତି ଏ ଦୀର୍ଘ ଅବତରଣିକାକୁ ବାଦ୍‌ଦେଇ ଉପସ୍ଥିତ ପ୍ରସଙ୍ଗ ବିଷୟରେ ବରଂ କିଛି ମତାମତ ପ୍ରଦାନ କରିବା ସମୟୋପଯୋଗୀ ମନେହୁଏ। ଲକ୍ଷ୍ମୀଧର ବାବୁଙ୍କ ସହିତ ମୋର ପରିଚିତ ଦୀର୍ଘ ତିରିଶ ବର୍ଷରୁ ଊର୍ଦ୍ଧ୍ୱ ହେବ। କିନ୍ତୁ, ପ୍ରତ୍ୟକ୍ଷ ଭାବରେ ଆମର ଘନିଷ୍ଠ ସଂପର୍କ ଥିଲା ପ୍ରାୟ ସାତ/ଆଠ ବର୍ଷର। ସେତେବେଳେ ସେ ରାଜେନ୍ଦ୍ର କଲେଜ,ବଲାଙ୍ଗିରରେ ଅଧ୍ୟାପନା କରୁଥାନ୍ତି ଏବଂ ମୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥାଏ। ପି. ଏଚ୍. ଡ଼ି କରିବା ପାଇଁ ସେ ଆଗ୍ରହ ପୋଷଣ କରନ୍ତି। ଏବଂ ସେ ସଂକ୍ରାନ୍ତରେ ସେ ମୋ ସହିତ ଆଲୋଚନା କରିବା ପରେ "ଫକୀରମୋହନ ଓ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସରେ ଚରିତ୍ର-ଏକ ତୁଳନାତ୍ମକ ଅଧ୍ୟୟନ" ବିଷୟରେ ସଂନ୍ଦର୍ଭ ପ୍ରସ୍ତୁତ କରିବା ସ୍ଥିର ହୁଏ ଏବଂ ତଦନୁସାରେ କାଳବିଳମ୍ବ ନକରି ଲକ୍ଷ୍ମୀଧର ବାବୁ ଆବଶ୍ୟକ ଗ୍ରନ୍ଥ ସବୁ ସଂଗ୍ରହ କରି ଅଧ୍ୟୟନ ଆରମ୍ଭ କରନ୍ତି। ଏହି ସନ୍ଦର୍ଭ ପ୍ରସ୍ତୁତରେ ମୁଁ ଥିଲି ତାଙ୍କର ପଥପ୍ରଦର୍ଶକ (Guide)। ସେ ମୋତେ ଗୁରୁର ସମ୍ମାନ ଦିଅନ୍ତି; ମୁଁ କିନ୍ତୁ ସେଥିପାଇଁ ନିଜକୁ ଅଭାଜନ ମନେ କରିଥାଏ। ତାର କାରଣ ଦୁଇଟି:- ପ୍ରଥମତଃ ବୟସରେ ସେ ମୋଠାରୁ ଦୁଇ/ତିନି ବର୍ଷ ବଡ଼; ପୁଣି ମୋର ଅନୁଭୂତି ତୁଳନାରେ ତାଙ୍କର ଅନୁଭୂତି ଯଥେଷ୍ଟ ବେଶି।

ଦ୍ୱିତୀୟତଃ, ଜଣେ Guide କିଛିଟା ମାର୍ଗନିର୍ଦ୍ଦେଶ ମାତ୍ର କରନ୍ତି । ଏଥିପାଇଁ ତାଙ୍କ 'ଗୁରୁ' ଭାବରେ ଗ୍ରହଣ କରିବା ଜଣେ ବୟସ୍କ, ଅନୁଭୂତି ସଂପନ୍ନ ଅଧ୍ୟାପକ ଛାତ୍ରଙ୍କ ପାଇଁ ନିଶ୍ଚିତ ଭାବରେ ଏକ ଉଦାରତା । କିନ୍ତୁ, ଜଣେ Guide କେବଳ କିଛି ପରାମର୍ଶ ଦେଇ ନିଜକୁ 'ଗୁରୁ' ଭାବରେ ବିବେଚନା କରିବା ତା ପାଇଁ ଧୃଷ୍ଟତା ନୁହେଁ କି ? ଏ ଦୃଷ୍ଟିରୁ ଲକ୍ଷ୍ମୀଧର ବାବୁଙ୍କୁ ମୁଁ ମୋର ଜଣେ ସହୃଦୟ ବନ୍ଧୁ, ସହପାଠୀ ଓ ସହକର୍ମୀ ଭାବରେ ଗ୍ରହଣ କରି ଖୁସି ହୁଏ ।

ଲକ୍ଷ୍ମୀଧର ବାବୁଙ୍କ ବ୍ୟକ୍ତିତ୍ୱର ଯେଉଁ ପ୍ରମୁଖ ବିଭାବଟି ପ୍ରଥମେ ମୋତେ ଆକର୍ଷଣ କରିଥିଲା ତାହା ହେଉଛି ତାଙ୍କର କଠୋର ଅଧ୍ୟବସାୟ । ମୋ ସହିତ ପରିଚିତ ହେଲାବେଳକୁ ସେ ତିନିଗୋଟି ବିଷୟରେ M.A. କରିସାରିଛନ୍ତି ଏବଂ ଅହମିୟା ଭାଷାରେ Diploma କରିଥାନ୍ତି । ଅନ୍ୟ କିଛି ବିଷୟରେ ହୁଏତ ବିଶେଷ ଦକ୍ଷତା ଥିବ- ମୁଁ ତାହା ଜାଣି ପାରିନାହିଁ । କଠୋର ଅଧ୍ୟବସାୟ ବଳରେ ସେ ଫକୀରମୋହନ ଓ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ ସବୁର ବ୍ୟାପକ ତଥା ଅନ୍ତର୍ମୁଖୀ ତୁଳନାତ୍ମକ ଅଧ୍ୟୟନ ସହିତ ଉପନ୍ୟାସ ତତ୍ତ୍ୱ ସଂପର୍କିତ ଗ୍ରନ୍ଥସମୂହର ଅନୁଶୀଳନ କରି ଯେଉଁ ସନ୍ଦର୍ଭ ନିର୍ଦ୍ଦିଷ୍ଟ ସମୟରେ ଉପସ୍ଥାପନ କରିଥିଲେ ଏବଂ ପରୀକ୍ଷକମାନଙ୍କ ଦ୍ୱାରା ତାହା ଉଚ୍ଚ ପ୍ରଶଂସିତ ହୋଇଥିଲା ଏବଂ ସେ Ph.D degree ପ୍ରାପ୍ତ ହୋଇଥିଲେ ।

ଲକ୍ଷ୍ମୀଧର ବାବୁଙ୍କ ବ୍ୟକ୍ତିତ୍ୱର ଅନ୍ୟ ଯେଉଁ ବିଭବ ଗୁଡ଼ିକ ମୋତେ ପ୍ରଭାବିତ କରିଥାନ୍ତି ତାହାହେଲା- ତାଙ୍କର ଧୈର୍ଯ୍ୟ ଓ ଏକନିଷ୍ଠତା; ଦୃଢ଼ତା ସହିତ ସହନଶୀଳତା ଏବଂ କୌଣସି ପରିସ୍ଥିତିରେ ପଶ୍ଚାତ୍‌ପଦ ନହେବାର ଦୃଢ଼ ସଂକଳ୍ପ । ତାଙ୍କ ମୁହଁରେ କେତେକ ସମୟରେ ମୁଁ କ୍ଳାନ୍ତି ଲକ୍ଷ୍ୟ କରିଛି; ଅବସାଦର ଛାୟା ମଧ୍ୟ ଦେଖିଛି । କିନ୍ତୁ, ଭାଙ୍ଗି ପଡ଼ିବାର ଦୁର୍ବଳତା କେବେ ବି ଲକ୍ଷ୍ୟ କରିନାହିଁ । ତାଙ୍କ ଜୀବନରେ ଏପରି କିଛି ମୁହୂର୍ତ୍ତ ଆସିଛି, ଏପରି କିଛି ଦୁଃସ୍ଥିତି ମଧ୍ୟ ଆସିଛି- ଯାହା ଜଣେ ପ୍ରତିଷ୍ଠାପନ୍ନ ଓ ସିଦ୍ଧ ପୁରୁଷଙ୍କୁ ମଧ୍ୟ ଦୋହଲାଇ ଦେବ । ସେ କିନ୍ତୁ, ସେଭଳି ପରିସ୍ଥିତିରେ ଅବିଚଳିତ, ମୁକାବିଲା କରିବା ମନୋଭାବ ନେଇ ସଂଘର୍ଷରତ । ଏଭଳି ବ୍ୟକ୍ତିଙ୍କ ପାଇଁ ଭଗବାନଙ୍କ ବିଚାର ସ୍ୱତନ୍ତ୍ର । ବିଭୁ ଆଶିଷର ଧାରା ଅକାତରରେ

ଝରିଆସେ । ସମସ୍ତ ଦୁର୍ବିପାକ ଦୂରେଇଯାଏ ଧୀରେ ଧୀରେ । ରାତ୍ରିର ଘନଅନ୍ଧକାର ଅପସରି ଯାଏ, ପୂର୍ବାକାଶ ଉଜଳି ଉଠେ ।

ଲକ୍ଷ୍ମୀଧର ବାବୁଙ୍କ ଜୀବନ ହେଉଛି ସାଧନା ଓ ସିଦ୍ଧିର, ତ୍ୟାଗ ଓ ତିତିକ୍ଷାର, ସ୍ୱାଭିମାନ ଓ ସଂଘର୍ଷର ଏବଂ ସ୍ୱପ୍ନ ଓ ସଫଳତାର ଏକ ମହତ୍ତ୍ୱପୂର୍ଣ୍ଣ ଜୀବନ । ଅନ୍ୟର କୁତ୍ସାରଟନା କରିବା କିମ୍ବା କାହାର ଅମଙ୍ଗଳ କାମନା କରିବା ତାଙ୍କର ପ୍ରକୃତି ବିରୁଦ୍ଧ । ପାରିବାରିକ ଜୀବନ କ୍ଷେତ୍ରରେ ତାଙ୍କର ତ୍ୟାଗ ଓ ଆଦର୍ଶ ନିକଟରେ ମୁଣ୍ଡ ନଇଁଯାଏ । "ନିଜ ସ୍ୱାର୍ଥ ପାଇଁ ଜାତ ନୁହେଁ ହିନ୍ଦୁ; ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ" ଯେଉଁ ପ୍ରବାଦ ପୁରୁଷ ଉତ୍କଳମଣି ଗୋପବନ୍ଧୁଙ୍କର ଆଦର୍ଶ ଥିଲା- ସାମାଜିକ କ୍ଷେତ୍ରରେ ଲକ୍ଷ୍ମୀଧର ବାବୁ ସେହି ଆଦର୍ଶର ଅନୁଗାମୀ ।

ଆଜିର ଏଇ ଶୁଭ ଅବସରରେ ଭଗବାନଙ୍କଠାରେ ମୋର ବିନମ୍ର ପ୍ରାର୍ଥନା - ଲକ୍ଷ୍ମୀଧରବାବୁ ଶତାୟୁ ହୁଅନ୍ତୁ । ନିରାମୟ ଜୀବନରେ ତାଙ୍କର ସାଧନାକୁ ଅବ୍ୟାହତ ରଖନ୍ତୁ । ଜୀବନ କ୍ଷେତ୍ରରେ ମୋ ଦୃଷ୍ଟିରେ ସେ ହେଉଛନ୍ତି-

"ବିଜୟୀବୀର-ଲକ୍ଷ୍ମୀଧର"



# ସାରସ୍ୱତ ସାଧକ ଡଃ ଲକ୍ଷ୍ମୀଧର ଦାସ

ଡକ୍ଟର ଭାସ୍କର ମିଶ୍ର

ଓଡ଼ିଶାର ଜଣେ ସଂଗ୍ରାମୀ ବ୍ୟକ୍ତିତ୍ୱ ଭାବେ ସାରସ୍ୱତ ସାଧକ ଡକ୍ଟର ଲକ୍ଷ୍ମୀଧର ଦାସ ସମଗ୍ର ଶ୍ରୀକ୍ଷେତ୍ରର ସାହିତ୍ୟ ସମାଜରେ ଅତ୍ୟନ୍ତ ସୁପରିଚିତ ଅଟନ୍ତି । କଠୋର ସାଧନା ଓ ଅଧ୍ୟବ୍ୟସାୟ ଯୋଗୁଁ ସେ ଏକାଦିକ୍ରମେ ତିନି ଗୋଟି ସ୍ନାତକୋତ୍ତର ଡ଼ିଗ୍ରୀ ହାସଲ କରିବା ସଙ୍ଗେ ସଙ୍ଗେ ପୂର୍ବାଞ୍ଚଳୀୟ ଭାଷା ସାହିତ୍ୟରେ ଉଚ୍ଚତ୍ତର ଗବେଷଣା କରି ପି.ଏଚ୍.ଡ଼ି ଡ଼ିଗ୍ରୀ ହାସଲ କରିଛନ୍ତି । ଏପରିକି ତାଙ୍କର ଅଦମ୍ୟ ଆଗ୍ରହ ଯୋଗୁଁ ସେ ଅହମିୟା ଭାଷାରେ ଡ଼ିପ୍ଲୋମା ହାସଲ କରି ଏହି ଭାଷାରେ କେତେକ ଉଚ୍ଚକୋଟିର ପ୍ରବନ୍ଧ ଆସାମରେ "ନତୁନ ପ୍ରବାହ" ସାହିତ୍ୟ ପତ୍ରିକାରେ ପ୍ରକାଶ କରାଇଛନ୍ତି । ଦୀର୍ଘ ଶତାବ୍ଦୀ ସମୟ ଧରି ସାହିତ୍ୟ ସାଧନାରେ ନିଜକୁ ନିୟୋଜିତ କରିବା ସହିତ ୪୦ରୁ ଊର୍ଦ୍ଧ୍ୱ ସମୟ ଶିକ୍ଷା ସେବାରେ ବିନିଯୋଗ କରି ସମାଜର ଅନେକ ଛାତ୍ର/ଛାତ୍ରୀଙ୍କର ଦିଗ୍‌ଦର୍ଶକ ହୋଇପାରିଛନ୍ତି । ପୁରୀ ଜିଲ୍ଲାର ଗର୍ବ ଗୌରବ ଡକ୍ଟର ଦାସ ଅଧ୍ୟାପନା ବୃତ୍ତିକୁ ଆଦରି ନେଇ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ କେତେକ ସୃଜନାତ୍ମକ ରଚନା ସୃଷ୍ଟି କରି ଆମ ମାନଙ୍କ ମଧ୍ୟରେ ନମସ୍ୟ ହୋଇପାରିଛନ୍ତି । ବିଶେଷ କରି ପ୍ରତ୍ୟେକ ପୁସ୍ତକକୁ ଟିକିନିଖି ଭାବେ ପଢ଼ି, ବୁଝି ସେହି ବିଷୟବସ୍ତୁର ସାରାଂଶକୁ ସାହିତ୍ୟ ସଭାମାନଙ୍କରେ ପ୍ରାଞ୍ଜଳ ଭାବେ ଉପସ୍ଥାପନା କରିବାର ଶୈଳୀ ଅତ୍ୟନ୍ତ ଚମତ୍‌କୃତ ଅଟେ । ତାଙ୍କର ଅନ୍ୟ ଗୋଟିଏ ପ୍ରତିଭା ହେଲା, ସେ ଜଣେ ଉତ୍ତମ ପୁସ୍ତକ ସମୀକ୍ଷକ । ଯେଉଁ କେତୋଟି ସାରସ୍ୱତ ସଭାରେ ସେ ପୁସ୍ତକ ସମୀକ୍ଷା କରିଛନ୍ତି, ତାହା ଅତୁଳନୀୟ ଅଟେ । ଡଃ ଦାସଙ୍କ ରଚିତ ଗଦ୍ୟ ସଂକଳନ ବିଶେଷ କରି ରମ୍ୟ ରଚନା, ସମାଲୋଚନା, ଶିଶୁ କବିତା, ଅନୁବାଦ ଗଳ୍ପ, ସଂସ୍କୃତି, ଶିକ୍ଷା, ଭ୍ରମଣ କାହାଣୀ, ଗଳ୍ପ ଇତ୍ୟାଦି ଉପରେ ପର୍ଯ୍ୟବସିତ ଅଟେ ।

ଏହି ଶୁଭ ଅବ୍‌ସରରେ ପୁରୀ ସହରରେ ଅବସ୍ଥାପିତ ଶିକ୍ଷାବିତ୍ ଡକ୍ଟର ଦାସଙ୍କର ନୀରୋଗ ଜୀବନଯାପନ କାମନା କରିବା ସହିତ ସାଧନା କ୍ଷେତ୍ରରେ ପୂର୍ଣ୍ଣ ସମୟ ବିନିଯୋଗ କରି ସମାଜକୁ ଦିଗ୍‌ଦର୍ଶନ ହେଉଥାନ୍ତୁ, ଏତିକି ହିଁ ମୋର ପରଂବ୍ରହ୍ମରୂପୀ ଶ୍ରୀ ବିଗ୍ରହଙ୍କ ନିକଟରେ ପ୍ରାର୍ଥନା ।

ମୁଖ୍ୟ ସମ୍ପାଦକ, ନୀଳାଦ୍ରି

ପୁର

# ହୀରକ ଜୟନ୍ତୀ ଅବସରରେ...

**ଡକ୍ଟର ଉମେଶ ଚନ୍ଦ୍ର ଚିହ୍ନରା**

ସତୀର୍ଥ ସମଗୋତ୍ରୀୟ (ପେଷାରେ) ଜ୍ୟେଷ୍ଠ ଭ୍ରାତୃପ୍ରତୀମ ପ୍ରାଧ୍ୟାପକ ଶ୍ରୀଯୁକ୍ତ ଲକ୍ଷ୍ମୀଧର ଦାସଙ୍କୁ ସାମନ୍ତ ଚନ୍ଦ୍ର ଶେଖର ମହାବିଦ୍ୟାଳୟରେ ଅଧ୍ୟାପନା ଅବସରରେ ପରିଚୟ ଲାଭ କରିଥିଲି । ଜଣେ ଅଧ୍ୟାପକ ବନ୍ଧୁ ଭାବରେ ଯେତିକି ନୁହେଁ ବରଂ ଚାକିରୀ ଜୀବନ କାଳ ମଧ୍ୟରେ ପଡ଼ୋଶୀ ଭାବରେ କିଛି ସମୟ ମିଶିବାର ସୁଯୋଗ ମଧ୍ୟ ଲାଭ କରିଥିଲି । ସେହି ଅବସରରେ ଶ୍ରୀଯୁକ୍ତ ଦାସଙ୍କର ବ୍ୟକ୍ତିତ୍ୱ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଥିଲି । ବୟସାଧିକ୍ୟ ଯୋଗୁଁ ବଡ଼ଭାଇ ସମ୍ବୋଧନ କରୁଥିଲେ ମଧ୍ୟ ମନ ମଧ୍ୟରେ ସେ ପିତୃପ୍ରତୀମ ବ୍ୟକ୍ତିତ୍ୱର ଅଧିକାର ଯାହିର କରୁଥିଲେ । ଜଣେ ଧୀର ସ୍ଥିର, ଶାନ୍ତ ନିରହଙ୍କାରୀ ଆତ୍ମ ପ୍ରଚାର ବିରୋଧୀ ଭାବରେ ତାଙ୍କର ବ୍ୟକ୍ତିତ୍ୱକୁ ମୁଁ ଲକ୍ଷ୍ୟ କରିଛି । ସଦାସର୍ବଦା ହସ ହସ ମୁହଁରେ କଥାବାର୍ତ୍ତାରେ ସେ ସମସ୍ତଙ୍କୁ ଆପଣାର କରିପାରିଛନ୍ତି । ଜଣେ ଛାତ୍ର ବତ୍ସଳ, ଦକ୍ଷ ଅଧ୍ୟାପନା ତା'ଙ୍କୁ ଛାତ୍ର ସମାଜରେ ପ୍ରିୟ କରାଇ ପାରିଥିଲା । ପ୍ରଶାସନ ଓ ସଂଗଠନ କ୍ଷେତ୍ରରେ ତାଙ୍କର ଦୂରଦୃଷ୍ଟି ଓ ଦକ୍ଷତାକୁ ନିଜର କର୍ମମୟ ଜୀବନରେ ପ୍ରମାଣିତ କରି ବହୁ ଅନୁଷ୍ଠାନ ତରଫରୁ ସେ ସମ୍ମାନ ଓ ପ୍ରଶଂସାପତ୍ର ଲାଭ କରିଛନ୍ତି । ଜଣେ ସୁବକ୍ତା, ସୁସାହିତ୍ୟିକ ସୁଲେଖକ ଏବଂ ଗବେଷକ ଭାବରେ ପରିଚିତ । ଜୀବନର ଅପରାହ୍ନରେ ସେ ଚଳଚଂଚଳ ଓ ତା'ଙ୍କ ଲେଖନୀ ଚାଳନାରେ ବିରାମ ଘଟିନାହିଁ । ଜଣେ ସାମାଜିକ ଆଦର୍ଶ ବ୍ୟକ୍ତି ଭାବରେ ଜୀବନରେ ସମସ୍ତ ଦିଗ ପରିପୂର୍ଣ୍ଣତା ଲାଭ କରିଅଛି । ଗଭୀର ଆତ୍ମ ପ୍ରତ୍ୟୟ, ନିଷ୍ଠା, ଧୈର୍ଯ୍ୟ ଓ ଏକାଗ୍ରତା ସହିତ ଅସୂୟା-ଦ୍ୱେଷ ହୀନ ମାନସିକତା ତାଙ୍କୁ ପୂଜାସ୍ପଦର ସମ୍ମାନ ନେଇ ପାରିଛି । ଆଜି ତାଙ୍କ ଜୀବନର ତୃତୀୟ ସୋପାନର ହୀରକ ଜୟନ୍ତୀ ଅବସରରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଦ ପଦ୍ମରେ ତାଙ୍କର ସୁଦୀର୍ଘ ନିରାମୟ ଜୀବନ ପାଇଁ ପ୍ରାର୍ଥନା କରୁଅଛି ।

ଭକ୍ତିପୂତ ପ୍ରଣାମ ସହ

ପି.ଏମ୍.ବି -୬୪ (ସନ୍ଧ୍ୟାବଳୟ)

ହାଉସିଂବୋର୍ଡ଼ କଲୋନୀ, ବଳିଆପଣ୍ଡା, ପୁରୀ - ।



# ଶ୍ରଦ୍ଧା ସ୍ପନ୍ଦାର ଏକ ମୂର୍ତ୍ତିମନ୍ତ ସାରସ୍ୱତ ସାଧକ ଲକ୍ଷ୍ମୀଧର ଏକ ମୁଗ୍ଧ ଉଚ୍ଚାରଣ

ପ୍ରଫେସର ବୈଷ୍ଣବ ଚରଣ ସାମଲ

ସବୁ ମଣିଷ ସମାନ ନୁହଁନ୍ତି । ସମାନ ପରି ଜଣା ଯାଉଥିଲେ ହେଁ, ଦେଖାଯାଉଥିଲେ ହେଁ; ଆଚାର ବିଚାର ବ୍ୟବହାର ବିଦ୍ୟା ଭିନ୍ନତାହିଁ ଅନେକଙ୍କ ମଧ୍ୟରେ ଜଣଙ୍କୁ ସ୍ୱତନ୍ତ୍ର ରୂପେ ଚିହ୍ନେଇ ଦିଏ । ଏଇ ସ୍ୱତନ୍ତ୍ରତାର ଅହଂକାରର ନୁହେଁ; ଅହଂକାର ବିନିର୍ମୁକ୍ତ ଚିତ୍ତର, ପରିପୂର୍ଣ୍ଣ ଶ୍ରଦ୍ଧାର, ଶ୍ରଦ୍ଧାଶୀଳ ଜ୍ଞାନର ଓ ଉଦାତ୍ତ ସ୍ୱାଭିମାନର । ଏହିପରି ଜଣେ ମଣିଷ, ଠିକ୍ ମଣିଷ ମାତ୍ର ନୁହେଁ; ମଣିଷ ପରି ମଣିଷ ଡକ୍ଟର ଲକ୍ଷ୍ମୀଧର ଦାସ( ୧୯୩୯) । ପୁରୀ ଜିଲ୍ଲା ଗୋପ ଥାନା, ଅନ୍ତର୍ଗତ ଓଟର ଶାସନରେ ଜନ୍ମ ଗ୍ରହଣ କରି ପିଲା ଦିନରୁ ସଂଘର୍ଷ ଭିତରେ ଜୀବନ ବିତେଇ ନିମ୍ନ ମାଧ୍ୟମିକ ଶିକ୍ଷା ସମାପ୍ତି ପରେ ମାତ୍ର ଅଠର ବର୍ଷ ବୟସରେ ସୁଦୂର କୋରାପୁଟ ଜିଲ୍ଲାର ଗ୍ରାମମଙ୍ଗଳ ବିଭାଗ ଏକ ସେବା ଶ୍ରମର ସେବକ ରୂପେ କାର୍ଯ୍ୟ କଲେ । ଘରୋଇ ଭାବରେ ମାଟ୍ରିକ୍ ପାଶ୍ କଲେ । ଇ.ଟି., ସିଟି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଶିକ୍ଷକତା କଲେ । ବି.ଏ ପାଶ୍ କଲା ପରେ ବି.ଏଡ଼୍ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେଲେ । ପ୍ରଥମେ ସେ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କଲେ । ପରେ ସେ ହେଲେ ମାଧ୍ୟମିକ ବିଦ୍ୟାଳୟର ଶିକ୍ଷକ । ଘରୋଇ ଭାବରେ ସେ ଓଡ଼ିଆ, ଇତିହାସ ଓ ରାଜନୀତି ବିଜ୍ଞାନରେ ଏମ୍.ଏ ପାଶ୍ କଲେ । ମହା ବିଦ୍ୟାଳୟରେ ହେଲେ ଅଧ୍ୟାପକ । ଅବସର ଗ୍ରହଣ କଲେ ଜଣେ ବରିଷ୍ଠ ପ୍ରାଧ୍ୟାପକ ଭାବରେ । ଅହମିୟା ଭାଷାରେ ସେ ମଧ୍ୟ ଡିପ୍ଲୋମା କଲେ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ । ବଙ୍କିମ ଚନ୍ଦ୍ର ଓ ଫକୀରମୋହନ ସେନାପତିଙ୍କ ଉପନ୍ୟାସରେ ଚରିତ୍ର ଶୀର୍ଷକ ସଂଦର୍ଭ ଉପସ୍ଥାପନ କରି ପିଏଚ୍.ଡ଼ି ଉପାଧି ଲାଭ କରିଥିଲେ ।

ଲକ୍ଷ୍ମୀଧର ଜ୍ଞାନ-ତପସ୍ୱୀ । ଅଥଚ ନୀରବ ତାଙ୍କର ସାଧନା । ଆତ୍ମ ପ୍ରଚାର ପ୍ରତି ସେ ସତତ ବିମୁଖ । ଯିଏ ଜ୍ଞାନୀ ସିଏ ଆପଣାର ଜ୍ଞାନର ଗାରିମା ଦେଖାଏ ନାହିଁ । ସେ ହୁଏ ନମ୍ର କାନ୍ତ ଓ କୋମଳ । ତାଙ୍କର ଆଦର୍ଶ ହୁଏ - 'ଶ୍ରଦ୍ଧାବାନ୍

ଲଭତେ ଜ୍ଞାନମ୍' । ଶ୍ରଦ୍ଧା ବତରୁଥିବା ମଣିଷଟିଏ କାହାରିକୁ ଘୃଣା କରେ ନାହିଁ, କାହାରିକୁ ମଧ୍ୟ ହେୟ ମନେ କରେନାହିଁ । ପିଲାଦିନରୁ ଲକ୍ଷ୍ମୀଧର ଭଲପାଇ ଆସିଛନ୍ତି ଗାଁର ସବୁଜ ସୁନ୍ଦରପରିବେଶକୁ ଓ ଶସ୍ୟ କ୍ଷେତ୍ରକୁ, ପ୍ରକୃତିକୁ ଭଲ ପାଇଛନ୍ତି ଓ ମନେ କରିଛନ୍ତି ଏସ୍.ଟି ଭାଷାରେ In our life alone does nature live. ବାଲ୍ୟ ଜୀବନରୁ ପରିଣତ ଜୀବନ ପର୍ଯ୍ୟନ୍ତ ଲକ୍ଷ୍ମୀଧରଙ୍କ ଅନ୍ତରରେ ପ୍ରକୃତି ପ୍ରତି ଗଭୀର ଶ୍ରଦ୍ଧାର ପ୍ରବାହ ଅବିଚ୍ଛିନ୍ନ ରହିଆସିଛି । ତେଣୁ ତାଙ୍କର ରୋମାଣ୍ଟିକ୍ ଅଭୀପ୍ସା କବି ୱାର୍ଡ଼ସୱାର୍ଥଙ୍କ ଭାଷାରେ ହୋଇଯାଇଛି -

Whether we be young or old
Our destinY, own being's heart & home
Is with infinitude, and only there
With hope it is, hope that can never die
Effort and expectation and desire
And somthing evermore about be .

ପ୍ରକୃତି ପ୍ରତି, ମାଟି ଓ ମଣିଷ ପ୍ରତି, ଐତିହ୍ୟ ଓ ଇତିହାସ ପ୍ରତି, କିମ୍ବଦନ୍ତୀ ଓ ଜନଶ୍ରୁତି ପ୍ରତି, ଜାତି ଓ ଜାତୀୟତା ପ୍ରତି ତାଙ୍କର ଯେଉଁ ଭଲପାଇବା ବାଲ୍ୟ-କୈଶୋର ଜୀବନରୁ ସୃଷ୍ଟି ହୋଇଥିଲା ତାହା ଜୀବନର ଅତିକ୍ରାନ୍ତ ବୟସରେ ମଧ୍ୟ ଜୀବନ୍ତ ହୋଇ ରହିଛି ଓ ସେହି ଆଶା ରହିଯାଇଛି ଅମୃତ ଭାବରେ । ତେଣୁ ସେହି ଭଲପାଇବା ତାଙ୍କୁ ପ୍ରକୃତି ସହିତ ମଣିଷକୁ ଏକାତ୍ମ କରି ଦେଖିବାର ଦେଇଛି ଗଭୀର ଅନ୍ତର୍ଦୃଷ୍ଟି । କବିର ବିବିଧ ମନସ୍ଥିତି(Moods) ହିଁ ପ୍ରକୃତି ଭିତରେ ପ୍ରତିଫଳିତ ହୁଏ । ତାରିଭିତରୁ କବିର ପ୍ରକାଶ ପାଏ ସ୍ୱତନ୍ତ୍ର ଅବବୋଧ । ପ୍ରାକୃତିକ ବସ୍ତୁ-ରୂପ ମଧ୍ୟ ଦେଇ କବିର ପ୍ରକାଶ ପାଏ ସ୍ୱତନ୍ତ୍ର ଅବବୋଧ । ପ୍ରାକୃତିକ ବସ୍ତୁ-ରୂପ ମଧ୍ୟ ଦେଇ କବିର ଦୃଷ୍ଟି ପ୍ରସାରିତ ହୋଇଯାଏ ଓ ତାର ଧ୍ୱନି, ଦୃଶ୍ୟ, ମୂଳ, ସ୍ୱାଦ ସବୁକିଛି କବିକୁ ବିମୋହିତ କରେ । ଲକ୍ଷ୍ମୀଧରଙ୍କର କାବ୍ୟିକ ମନ ଓ ହୃଦୟ ତନ୍ମୟ ହୋଇଛି ପ୍ରକୃତିର ରୂପ ରଙ୍ଗ ରସରେ ଓ ସେହି ତନ୍ମୟତା ତାଙ୍କୁ ବର୍ତ୍ତମାନରୁ ଟାଣି ନେଇଯାଇଛି ସୁଦୂର ଅତୀତକୁ, ଯେଉଁଠି ଗୋଟି ଗୋଟି ହୋଇ ପୁରାଣ, ଇତିହାସ, କିମ୍ବଦନ୍ତୀ ଜୀବନ୍ତ ହୋଇଉଠିଛି । କବିତା ହେଉଛି ପ୍ରକୃତରେ 'A man speaking to man'(ୱାର୍ଡ଼ସତ୍ୱକ)ତାଙ୍କ କବିତାରେ ଡ଼ବ୍ଲ୍ୟୁ.ବି ୟେଟସଙ୍କ ଭାଷାରେ 'Blood, imagination and intellect running together' ପ୍ରକୃତରେ ଲକ୍ଷ୍ମୀଧରଙ୍କ କବିତାରେ ଜୀବନ, କଳ୍ପନା ଓ ପ୍ରଜ୍ଞା ହାତଧରାଧରି

ହୋଇ ଗତି କରିଛନ୍ତି । ଏଥିରେ ଛଳ ବୌଦ୍ଧିକତା (Pseudo-Intellectualism) ନାହିଁ; ଅଛି ସ୍ୱଭାବ ସୁନ୍ଦର ଭାବରେ ନିଜକୁ ପ୍ରକାଶ କରିଦେବାର ଶ୍ରଦ୍ଧାମୟ ଓ ଜୀବନମୟ ଆବେଗ ।

ଲକ୍ଷ୍ମୀଧର କବିପ୍ରାଣ ଓ କବି । ତାଙ୍କର କବି-ପ୍ରାଣକୁ ପଲ୍ଲବିତ କରିଥିଲା ତାଙ୍କ ଗାଁ, ପରିବାର ଓ ପିତାମାତା ଆଦି ପ୍ରିୟଜନ ।ସମସ୍ତଙ୍କୁ ଭଲପାଇବା ଥିଲା ତାଙ୍କର ପ୍ରକୃତି । ଏହି ଭଲ ପାଇବାରୁ ଖୁବ୍ କମ୍ ବୟସରେ ରଚନା କରିଥିଲେ ଛନ୍ଦ-କବିତା । ତାଙ୍କ କବି-ଜୀବନର ପ୍ରଥମ ଅର୍ଘ୍ୟ ସଙ୍ଗେ ସଙ୍ଗେ ଶିକ୍ଷାରେ ସୋପାନ ପରେ ସୋପାନ ଆରୋହଣ କରି ଜ୍ଞାନର ସୀମାକୁ ବୃଦ୍ଧି କରିଛନ୍ତି । ଏ ସମୟରେ ମଧ୍ୟ ସେ କବିତା ଲେଖିଛନ୍ତି ଓ ପ୍ରକାଶ ପାଇଛି ଦୁଇଟି କବିତାପୁସ୍ତକ - 'ଚିତ୍ରିତ ଚଇତ' ଓ 'ସକାଳର ଚନ୍ଦ୍ରଭାଗା' ୧୯୬୫ ମସିହାରୁ ମଧ୍ୟ ସେ ରଚନା କରିଆସିଛନ୍ତି ଏଯାବତ ନାନା ପ୍ରବନ୍ଧ, ସମାଲୋଚନା, ଗଳ୍ପ, ଅନୁବାଦ ଓ ଜୀବନୀ ଇତ୍ୟାଦି । ଅହମିୟା ସାହିତ୍ୟ ପରିକ୍ରମା', 'ଉପନ୍ୟାସ ତତ୍ତ୍ୱ ଓ ଓଡ଼ିଆ ଉପନ୍ୟାସର କ୍ରମାଭିବ୍ୟକ୍ତି, 'ଛନ୍ଦ ଓ ଅଳଙ୍କାର', ଭଂଜ ସାହିତ୍ୟର ବର୍ଣ୍ଣ ଓ ବର୍ଣ୍ଣାଳି', 'କର୍ମବୀର ରାମଚନ୍ଦ୍ର' ଆଦି ନାନା ସମାଲୋଚନାତ୍ମକ ଓ ଜୀବନମୂଳକ ଗ୍ରନ୍ଥ ତାଙ୍କ ପ୍ରସାରିତ ଜ୍ଞାନର ଉଜ୍ଜ୍ୱଳ ନିଦର୍ଶନ । ସେ ମଧ୍ୟ ଅନୁବାଦ କରିଛନ୍ତି 'ଇଉରୋପର ଇତିହାସ' ଓ 'ଅସମନୀୟା କ୍ଷୁଦ୍ର ଗଳ୍ପ', ସେ ମଧ୍ୟ ରଚନା କରିଛନ୍ତି ସମାଜ, ସଂସ୍କୃତି, ଶିକ୍ଷା, ଧର୍ମ ଆଦି ବିଷୟକୁ ନେଇ କେତେ ପ୍ରବନ୍ଧ ଓ ରମ୍ୟ ରଚନା । 'ବଂକିମ୍ ଚନ୍ଦ୍ର ଓ ଫକୀରମୋନଙ୍କ କଥା ସାହିତ୍ୟରେ ଚରିତ୍ର' ଏକ ତୁଳାନାତ୍ମକ ମହାନିବନ୍ଧର ସେ ମଧ୍ୟ ପ୍ରଣେତା । ଶିଶୁ ସାହିତ୍ୟକୁ ମଧ୍ୟ ତାଙ୍କର ଦାନ କମ୍ ନୁହେଁ । ମୋଟ ଉପରେ ଓଡ଼ିଆ ସାହିତ୍ୟର ପ୍ରାୟ ସମସ୍ତ ବିଭାଗରେ ସେ ଲେଖନୀ ଚାଳନା କରିଛନ୍ତି ଓ ସର୍ବତ୍ର, ଫୁଟି ଉଠିଛି ତାଙ୍କ କାବିକ ହୃଦୟର ଶ୍ରଦ୍ଧା ଓ ସ୍ୱାଭିମାନବୋଧର ସ୍ପର୍ଦ୍ଧା । ଏହି ସ୍ପର୍ଦ୍ଧା ତାଙ୍କର ଅହଂକାର ନୁହେ; ଜାତୀୟ ସ୍ୱାଭିମାନର ଜ୍ଞାନଦୀପ୍ତ ସ୍ପର୍ଦ୍ଧା, ଯାହା ତାଙ୍କୁ ନିଆରା କରି ଚିହ୍ନାଇ ଦେଇଛି ଅନେକଙ୍କ ମଧ୍ୟରେ 'ଏକ' ରୂପେ ।

ପ୍ରାବନ୍ଧିକ ଲକ୍ଷ୍ମୀଧର ମୌଳିକ ଚିନ୍ତନର ବାର୍ତ୍ତାବହ । ତାଙ୍କର ପ୍ରବନ୍ଧ ଓ ରମ୍ୟରଚନା ଶିକ୍ଷା, ସଂସ୍କୃତି, ଧର୍ମ, ଜାତୀୟତା, ସ୍ୱଦେଶ ପ୍ରବନ୍ଧଗୁଡ଼ିକ ଦାନ୍ତଚିପା ପ୍ରବନ୍ଧ ନୁହେଁ; ହୃଦୟକୁ ଛୁଇଁଗଲା ଭଳି ଆବେଗରେ ସ୍ନାତ ଓ ମଧୁର । ସମାଲୋଚନା ଗୁଡ଼ିକ ମଧ୍ୟ ଆଦୌ ନୀରସ ନୁହେଁ; ସର୍ବତ୍ର ଅଛି ତାଙ୍କର ମୌଳିକ ଦୃଷ୍ଟିକୋଣ ଓ ବିଚାରଦକ୍ଷତାର ନିର୍ଯ୍ୟାସ । ବଂକିମଚନ୍ଦ୍ର ଓ ଫକୀରମୋହନଙ୍କ କଥା ସାହିତ୍ୟର

ଚରିତ୍ରମାନଙ୍କୁ ତୁଳନାତ୍ମକ ବିଚାର କଲାବେଳେ ଉଭୟ ଲେଖକଙ୍କ ଉପନ୍ୟାସର ଚରିତ୍ରମାନଙ୍କ ପ୍ରତି ସମାନ ଶ୍ରଦ୍ଧା ନିବେଦନ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଭିତରେ ଯେଉଁ ସାମ୍ୟ ଓ ବୈଷମ୍ୟ ଅଛି ତାହାକୁ ଦର୍ଶାଇ ଦେଇଛନ୍ତି । ଶିଷ୍ଟ ଚରିତ୍ର, ସଇତାନର ଚରିତ୍ର, ନାରୀ ଚରିତ୍ରର ବିବିଧ ଦିଗ, ଅତି ସାଧାରଣ ଚରିତ୍ରମାନଙ୍କୁ ମଧ୍ୟ ସେ ଆଣିଛନ୍ତି ତାଙ୍କର ବିଚାର ପରିସର ମଧ୍ୟକୁ । କିଏ କାହାଦ୍ୱାରା ପ୍ରଭାବିତ ବା ନୁହେଁ, କାହାର ବୈଶିଷ୍ଟ୍ୟ କ'ଣ ତାହାକୁ ଯୁକ୍ତିଯୁକ୍ତ ଭାବରେ ଉପସ୍ଥାପନ କରିଛନ୍ତି । ଭଂଜ ସାହିତ୍ୟର ବର୍ଣ୍ଣ ଓ ବର୍ଣ୍ଣାଳି, ବାସ୍ତବିକ କବି ସମ୍ରାଟ ଉପେନ୍ଦ୍ର ଭଂଜଙ୍କ କାବ୍ୟ-ଙ୍କାର ଏକ ନୂତନ ଦିଗନ୍ତ ଉନ୍ମୋଚନ କରିବା ରେ ସମର୍ଥ । ଏଥିରେ ଅଯଥା ସ୍ତୁତି କରିବା ନାହିଁ; ଅଛି ଭଂଜ-ସାହିତ୍ୟର ଅନ୍ତର୍ନିହିତ ଗୁଣ-ଅନୁସନ୍ଧାନର ଦକ୍ଷତା, ତ୍ରୁଟି ଦର୍ଶାଇ ଦେବାର ସାମର୍ଥ୍ୟ । ସେ ମଧ୍ୟ ଉପନ୍ୟାସ ଓ ସାହିତ୍ୟର ତତ୍ତ୍ୱ ଓ ଦର୍ଶନ ଉପରେ ଆଲୋକପାତ କରିଛନ୍ତି । ସମାଲୋଚନା କ୍ଷେତ୍ରରେ ସେ ଜଣେ ସାମାଜତତ୍ତ୍ୱବିତ୍, ମନସ୍ତତ୍ତ୍ୱବିତ୍ ସୌନ୍ଦର୍ଯ୍ୟତତ୍ତ୍ୱବିତ୍ ଭାବରେ ନିଜକୁ ପ୍ରତିପାଦନ କରିଛନ୍ତି । ପ୍ରବନ୍ଧ, ରମ୍ୟରଚନା ଓ ସମାଲୋଚନାରେ(Creativity)ସର୍ବତ୍ର ତାଙ୍କର ସୃଜନର ବେଣୁଧ୍ୱନି ପ୍ରକଟିତ । ମନେହୁଏ ତାଙ୍କର ସର୍ଜନଶୀଳତା ହିଁ ତାଙ୍କର ଏତାଦୃଶ ରଚନାମାନଙ୍କୁ ପ୍ରଦାନ କରିଛି ରମ୍ୟତାବୋଧ ।

ତାଙ୍କର, ବିବିଧ ପ୍ରବନ୍ଧ ମଧ୍ୟରେ 'ଓଡ଼ିଆ ସଂସ୍କୃତିର ଐତିହ୍ୟ ଓ ଅନ୍ତଃସ୍ୱର ପ୍ରବନ୍ଧରେ ସେ କହନ୍ତି-' ଓଡ଼ିଆ ଶିଳ୍ପୀପୂର୍ଣ୍ଣତାର ସଂଧାନୀ' ଜାତି ଓ ଦେଶ ପାଇଁ ବ୍ୟକ୍ତି- ସ୍ୱାର୍ଥର ଆହୁତି ପ୍ରଦାନ ଉପରେ ସେ ଗୁରୁତ୍ୱ ଦେଇଛନ୍ତି । ବୌଦ୍ଧ ଧର୍ମ ଓ ଉତ୍କଳୀୟ ସଂସ୍କୃତି ପ୍ରବନ୍ଧରେ ଓଡ଼ିଶାରେ ବୌଦ୍ଧ ଧର୍ମର ଉନ୍ମେଷ, ପ୍ରସାର ଓ ଓଡ଼ିଶାର ଧର୍ମ, ସଂସ୍କୃତି ଓ ସାହିତ୍ୟରେ ତାହାର ପ୍ରଭାବ, 'ରଥଯାତ୍ରା' ପ୍ରବନ୍ଧରେ ପୁରୀର ଜଗନ୍ନାଥଙ୍କର ରଥଯାତ୍ରାର ଉନ୍ମେଷ ଓ ଜାତୀୟଜୀବନରେ ତାହାର ପ୍ରଭାବ, 'ପ୍ରାଚୀନ ତନ୍ତ୍ର ପୀଠ କାମରୂପ' ପ୍ରବନ୍ଧରେ କାମରୂପରେ ତନ୍ତ୍ର ସାଧନାର ପରମ୍ପରା, 'ଲୋକ ସଂସ୍କୃତି ଓ ଲୋକ ନୃତ୍ୟ ପରମ୍ପରାରେ ଡାଲଖାଇ ପ୍ରବନ୍ଧରେ ଡାଲଖାଇ ନୃତ୍ୟର ବୈଶିଷ୍ଟ୍ୟ ଓ ପ୍ରଭାବ ଇତ୍ୟାଦିକୁ ବେଶ ସୁଚିନ୍ତିତ ଭାବରେ ସେ ପ୍ରକାଶ କରିଅଛନ୍ତି । ଗୋପବନ୍ଧୁଙ୍କ ଦୃଷ୍ଟିରେ ଜାତୀୟ ଶିକ୍ଷା ପ୍ରବନ୍ଧରେ ସେ କୌଟିଲ୍ୟଙ୍କ ଶିକ୍ଷା ନୀତି ସହିତ ଗୋପବନ୍ଧୁଙ୍କ ଶିକ୍ଷା ନୀତିକୁ ତୁଳନା କରିଛନ୍ତି ଓ ଜାତିର ଉନ୍ନତି ଓ ଉତ୍‌ଥାନ ପାଇଁ ପ୍ରାଚୀନ ବୈଦିକ ଶିକ୍ଷାନୀତି ଅନୁସାରେ ଏକ ନୂତନ ଜାତୀୟ

ଶିକ୍ଷା ନୀତି ଉପରେ ଗୋପବନ୍ଧୁ କିପରି ଗୁରୁତ୍ୱ ଦେଇଛନ୍ତି ତାହାକୁ ଦର୍ଶାଇ ଦେଇଛନ୍ତି । ଗୋପବନ୍ଧୁଙ୍କ ଦ୍ୱାରା ପ୍ରତିଷ୍ଠିତ । ଏକ୍ରାମ ଏକାଡେମୀ( ୧୯୦୪/ ୦୫ ) ଓ ସତ୍ୟବାଦୀ ବନ ବିଦ୍ୟାଳୟ( ୧୯୦୯ ) ସମ୍ପର୍କରେ ମଧ୍ୟ ଏହି ପ୍ରବନ୍ଧରେ ସୂଚନା ଦେଇଅଛନ୍ତି । ରାଜ୍ୟରତ୍ନ ବଳଦେବ ବହିଦାର, ଉତ୍କଳ ଗୌରବ ମଧୁସୂଦନ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଦେଶ ଓ ଜାତିର ବନ୍ଧୁ ଜଗବନ୍ଧୁ ସିଂହ ଆଦି ପ୍ରବନ୍ଧଗୁଡ଼ିକ ବ୍ୟକ୍ତି ଜୀବନ ଭିତ୍ତିକ ହୋଇଥିଲେ ମଧ୍ୟ ସେସବୁଥିଲେ ଲେଖକଙ୍କର ସ୍ୱତନ୍ତ୍ର ଦୃଷ୍ଟି ନିହିତ । ସେନାପତିଙ୍କ ଚରିତ୍ର ସୃଷ୍ଟିରେ ମାନବୀୟ ଆବେଦନ ଶୀର୍ଷକ ପ୍ରବନ୍ଧରେ ସେ ଦର୍ଶାଇ ଦେଇଛନ୍ତି ଯେ ଫକୀରମୋହନଙ୍କ ସାହିତ୍ୟରେ ବିଶେଷ ହୋଇଯାଇଛି ନିର୍ବିଶେଷ ଓ ବ୍ୟକ୍ତି ହୋଇଯାଇଛି ନୈର୍ବ୍ୟକ୍ତିକ । ମଧୁବାବୁଙ୍କୁ ସେ ଯେପରି ଏକଧାରରେ ଶିକ୍ଷାର୍ଥୀ, ଶିକ୍ଷକ ଓ ଶିକ୍ଷାବିତ୍ ଭାବରେ ବର୍ଣ୍ଣନା କରି ତାଙ୍କର ସତ୍ୟନିଷ୍ଠ, ନିର୍ଭିକତା ଓ ଜାତିପ୍ରେମକୁ ସଶ୍ରଦ୍ଧ ଦୃଷ୍ଟିରେ ବିଚାର କରିଛନ୍ତି ତାହା ତତ୍ପର୍ଯ୍ୟପୂର୍ଣ୍ଣ । ସାହିତ୍ୟ ସଂଜ୍ଞା ପର୍ଯ୍ୟାୟରେ 'ସାହିତ୍ୟର ଉଦ୍ଦେଶ୍ୟ', ସାହିତ୍ୟର ଉତ୍ସ, ପରିବେଶ ଓ ପ୍ରେରଣା ଆଦି ପ୍ରବନ୍ଧଗୁଡ଼ିକରେ ସାହିତ୍ୟର ମୌଳିକ ଦିଗ ପ୍ରତି ଗୁରୁତ୍ୱ ଦେଇଛନ୍ତି । ସେ କହନ୍ତି ସାହିତ୍ୟ ଏକ ଚିରନ୍ତନୀ ଜୀବନୀ ଶକ୍ତି । ଏହି ଶକ୍ତିକୁ ପୃଥିବୀର ଯେ କୌଣସି ଶକ୍ତିଠାରୁ ଅଧିକ ବଳବାନ ବୋଲି ସେ ମନେ କରିଛନ୍ତି । ତାଙ୍କର ପ୍ରାୟ ପ୍ରବନ୍ଧଗୁଡ଼ିକରେ ସ୍ୱଦେଶପ୍ରୀତି ବେଶ୍ ମାର୍ମିକ ମନେହୁଏ । ତାଙ୍କ ମନରେ ଛବିଳ ଉତ୍କଳ ବିପୁଳା ବହୁବର୍ଣ୍ଣା ସଂସ୍କୃତିର ଆଧାର । ସେ ମଧ୍ୟ ରଚନା କରିଛନ୍ତି ଭ୍ରମଣ କାହାଣୀ । ଦାର୍ଜିଲିଂରେ କେଇଘଣ୍ଟା' ଏହାର ଏକ ନିଦର୍ଶକ । 'ଆମ ଭୁଲାମନ', ମୁଁ ଟଙ୍କା, ପରି ପ୍ରବନ୍ଧଗୁଡ଼ିକ ଯେପରି ତାତ୍ତ୍ୱିକ ସେହିପରି ମଧ୍ୟ ରମ୍ୟତାବୋଧକ । ଲକ୍ଷ୍ମୀଧର ବାବୁ ବହୁପଦୀ ଗଦ୍ୟ ଶିଳ୍ପୀ ନ ହେଲେ ମଧ୍ୟ ଯେତିକି ସେ ଗଦ୍ୟ ରଚନା କରିଅଛନ୍ତି ତାହା ଦୀପ୍ତି ଓ ଦ୍ୟୁତିରେ ଭାସ୍ୱର ।

ଲକ୍ଷ୍ମୀଧର ବାବୁ ମୂଳତଃ ଜଣେ କବି । ତାଙ୍କ କବିତ୍ୱର ଉତ୍ସ ପରିବେଶ ଓ ପ୍ରେରଣା । ପ୍ରେରଣା (Inspiration) ହିଁ ତାଙ୍କ ଅନ୍ତରର କବିତ୍ୱକୁ ଏକ ପ୍ରକାର ଉଦବୋଧିତ କରିଛି, ଆତ୍ମପ୍ରକାଶ ପାଇଁ । ସେହି ପ୍ରେରଣାର ବରଦାନ 'ସକାଳର ଚନ୍ଦ୍ରଭାଗା' ଆଧୁନିକ କାବ୍ୟ ବା ଦୀର୍ଘ କବିତା । ୪୩ଟି କବିତାରେ ଏହା ସମୃଦ୍ଧ । ପ୍ରତ୍ୟେକ ଭିନ୍ନ ଭିନ୍ନ ହୋଇ ମଧ୍ୟ କେନ୍ଦ୍ରଟି ଏକ ହୋଇଥିବାରୁ ସବୁ ମିଶି ଗୋଟିଏ କବିତା ହୋଇଯାଇଛି । ଓଡ଼ିଆ ଦୀର୍ଘ କବିତାର ପରମ୍ପରାରେ ଏକ ବିୟୋଗ

ନୁହେଁ, ଏକ ସ୍ୱର୍ଦ୍ଧିତ ସଂଯୋଗ । ଅବଶ୍ୟ ଚନ୍ଦ୍ରଭାଗା ଓ କୋଣାର୍କକୁ ନେଇ ଆଧୁନିକ ଓଡ଼ିଆ ସାହିତ୍ୟରେ ରଚିତ ହୋଇ କେତେ କାବ୍ୟ, କବିତା, ଗଳ୍ପ, ନାଟକ ଇତ୍ୟାଦି । ତଥାପି ତାହା ଯେ ପୂର୍ଣ୍ଣତା ଲାଭ କରିଯାଇଛି; ନୁହେଁ । ସର୍ବତ୍ର କଂକାଳ ସମାନ । ମାତ୍ର ତାକୁ ରକ୍ତମାଂସ ଦେଇ ନୂଆଳକରି ଗଢ଼ିବା ହୋଇଯାଇଛି ଭିନ୍ନ ଭିନ୍ନ । ଚିରନ୍ତନୀ ଅନ୍ୱେଷା । ପ୍ରତ୍ୟେକ ସମୟରେ କବିମାନେ କୋଣାର୍କ ଓ ଚନ୍ଦ୍ରଭାଗାକୁ ନେଇ କେତେ ବାଗରେ ରଚନା କରିଆସିଛନ୍ତି କାବ୍ୟ କବିତା । ମାଟିର ମହାକବି ସାରଳା ଦାସ ତାଙ୍କ ମହାଭାରତରେ ସର୍ବ ପ୍ରଥମେ କୋଣାର୍କ, ଚନ୍ଦ୍ରଭାଗା ଓ ସେହି ସମୁଦ୍ର ବେଳାରେ ଗୌତମ ମହର୍ଷି, ଅଞ୍ଜନା ଓ ଜାମତିଳ ଶ୍ୟାମତିଳ ଦୁଇ ପୁତ୍ରଙ୍କର ବାଳି ସୁଗ୍ରୀବରେ ରୂପାନ୍ତର ପ୍ରସଙ୍ଗ, କୁଷ୍ଠରୋଗାକ୍ରାନ୍ତ ଶାମ୍ବର ସୂର୍ଯ୍ୟପୂଜା ଓ ରୋଗମୁକ୍ତି ପ୍ରସଙ୍ଗକୁ ବର୍ଣ୍ଣନା କରିଥିଲେ । ପରେ ଆଧୁନିକ ଯୁଗ ଆରମ୍ଭ କାଳରେ କବିବର ରାଧାନାଥ ରାୟ ରଚନା କଲେ 'ଚନ୍ଦ୍ରଭାଗା' କାବ୍ୟ । ଏଥିରେ ସୁମନ୍ୟୁ ଋଷି ଓ ତାଙ୍କ କନ୍ୟା ଚନ୍ଦ୍ରଭାଗା, କାମଦେବଙ୍କ ରୋଷର ଶିକାର ହୋଇ ସୂର୍ଯ୍ୟଦେବତାଙ୍କର ଚନ୍ଦ୍ରଭାଗା ପ୍ରତି ଆକର୍ଷଣ ଓ କୋଣାର୍କ ମନ୍ଦିରର ବିପର୍ଯ୍ୟୟ ପ୍ରସଙ୍ଗ ବର୍ଣ୍ଣିତ । ଏହାପରେ କବି ମାୟାଧର ମାନସିଂହ, ସଚ୍ଚି ରାଉତରାୟ, ରବିସିଂହ ପ୍ରମୁଖ କବିମାନେ କୋଣାର୍କକୁ ନେଇ ରଚନା କରିଛନ୍ତି ନିଜ ନିଜ ଦୃଷ୍ଟିକୋଣରୁ କବିତା । ମାତ୍ର ପଣ୍ଡିତ ନୀଳକଣ୍ଠ ଦାସଙ୍କ ପ୍ରଣୀତ 'କୋଣାର୍କ' କାବ୍ୟରେ ଯେପରି 'ରାମଚଣ୍ଡୀରେ ରାତି' ଓ 'ରାମଚଣ୍ଡୀରେ ସକାଳ'ର ବର୍ଣ୍ଣନା ରହିଛି ଓ ପ୍ରସଙ୍ଗକ୍ରମେ ଯେପରି ନାନା ଇତିହାସ ଓ କିମ୍ବଦନ୍ତୀର ରସାଳ ବର୍ଣ୍ଣନା ରହିଛି ତାହାହିଁ ବୋଧହୁଏ କବି ଲକ୍ଷ୍ମୀଧର ଦାସଙ୍କୁ ପ୍ରଚ୍ଛନ୍ନ ପ୍ରେରଣା ଦେଇଛି 'ସକାଳର ଚନ୍ଦ୍ରଭାଗା' ପରି କାବ୍ୟ ବା ଦୀର୍ଘ କବିତା ରଚନା ପାଇଁ । ହୁଏତ ସେ ପୂର୍ବସୂରୀମାନଙ୍କଠାରୁ ପ୍ରେରଣା ପାଇଛନ୍ତି ମାତ୍ର ସବୁପ୍ରେରଣା ତାଙ୍କ ଭିତରେ ତଲ୍ଲୀନ ହୋଇ ଏକ ସ୍ୱତନ୍ତ୍ର ଆବେଗ, ରୁଚି, ସୌନ୍ଦର୍ଯ୍ୟବୋଧ ଓ ଐତିହ୍ୟରେ ସ୍ନାତ ଓ ସୁନ୍ଦର ଭାବରେ କାବ୍ୟିକ ଯଥାର୍ଥରେ କହିଛନ୍ତି- 'ସକାଳର ଚନ୍ଦ୍ରଭାଗା ବିସ୍ମୃତିର ଅତଳ ଗହ୍ୱରରୁ କେବଳ ଇତିହାସ ବା କିମ୍ବଦନ୍ତୀ ଉତ୍ତୋଳନ କରି ନାହିଁ, ପ୍ରତ୍ୟେକ ଉପସ୍ଥିତ ନିସର୍ଗ ସୌନ୍ଦର୍ଯ୍ୟର ଅରୁଣ ରାଗକୁ ରୂପାନ୍ତରିତ କରିଛି ବୈତାଳିକୀରେ ।

ପ୍ରତିବର୍ଷ ଚନ୍ଦ୍ରଭାଗା ମେଳାରେ ଯୋଗ ଦେବା ପାଇଁ ପିଲାଦିନରୁ ପରିବାରଙ୍କ ସହିତ ସେ ଯାଉଥିଲେ, ଚନ୍ଦ୍ରଭାଗରେ ସ୍ନାନ କରୁଥିଲେ, ଉଦୟ ସୂର୍ଯ୍ୟଙ୍କୁ ଦର୍ଶନ କରୁଥିଲେ, କୋଣାର୍କ ମନ୍ଦିର ବୁଲି ଦେଖୁଥିଲେ, ନବଗ୍ରହଙ୍କୁ ପୂଜା

କରୁଥିଲେ । ଜୀର୍ଣ୍ଣଶୀର୍ଣ୍ଣ କୋଣାର୍କ ମନ୍ଦିରକୁ ଦେଖି ଆନନ୍ଦ, ବିଷାଦ ଓ ବିସ୍ମୟରେ ଅଭିଭୂତ ହୋଇଯାଉଥିଲେ । ତାଙ୍କର ଯୌବନା କୋଣାର୍କର ଅନନ୍ୟ ରୂପଶ୍ରୀ ପ୍ରୀତିର ପଣତରେ ବାନ୍ଧି ରଖିଥିଲା । ସେହି ସ୍ମୃତି ତାଙ୍କ ଭିତରେ ଜୀବନ୍ତ ହୋଇ ରହିଥିଲେ ହେଁ ତାହାକୁ କାବ୍ୟ ରୂପ ଦେବା ପାଇଁ ସୁଯୋଗ ହେଉନଥିଲା । ପରିଣତ ବୟସରେ ମଧ୍ୟ ସେ ବେଳେବେଳେ ଚନ୍ଦ୍ରଭାଗା ଓ କୋଣାର୍କ ଦେଖିବାକୁ ଯାଉଥିଲେ । ଅଧ୍ୟାପନା ବୃତ୍ତିରୁ ସେ ଅବସର ନେଲେ, ମାତୃ ବିୟୋଗ ମଧ୍ୟ ଘଟିଗଲା । ଗଭୀର ଅବସାଦ ଭିତରେ ତାଙ୍କ ହୃଦୟ ଓ ମନକୁ ଅଭିଭୂତ କରି ଜାଗ୍ରତ ହୋଇଉଠିଲା ଚନ୍ଦ୍ରଭାଗା ଓ କୋଣାର୍କର ସ୍ମୃତି । ସେ କହନ୍ତି – 'ମନପ୍ରାଣକୁ ଆଚ୍ଛନ୍ନ କରି ରଖିଥିବା ଦୈବୀ ଆଦେଶ ବା ଏକପ୍ରକାର ଉନ୍ମତ୍ତତାରୁ ମୁକ୍ତି ପାଏନା । ଏଇ ଆଦେଶ ଚନ୍ଦ୍ରଭାଗାରେ ସୂର୍ଯ୍ୟୋଦୟ ଚିତ୍ର ଅଙ୍କନ କରିବାକୁ ପ୍ରେରଣା ଦେଲା । କିଛି ଲେଖିବା ପରେ ପୁଣି ମନ ହେଲା ସୁଦୂର ସଂଚାରୀ । ଅତୀତର ଜୀର୍ଣ୍ଣ ଓ ଛିନ୍ନ ପୃଷ୍ଠା ପୁରାଣ, ଇତିହାସ ଏବଂ ଛାୟା –ଛନ୍ଦିତ ଲୋକ କାହାଣୀ, କିମ୍ବଦନ୍ତୀ ଓ ଜନଶ୍ରୁତିରୁ ସାଉଁଟି ବସିଲି । ସାଉଁଟା ଉପାଦାନ ସହିତ ଅଙ୍ଗନିଭା ଅନୁଭୂତିକୁ ମିଶାଇ, ଐତିହାସିକ କଳ୍ପନା ବୋଧରେ ଫେଣ୍ଟି ଲେଖି ବସିଲି 'ସକାଳର ଚନ୍ଦ୍ରଭାଗା' । ତେଣୁ କାବ୍ୟଟି ହୋଇଯାଇଛି ସ୍ମୃତି, ସାନ୍ତ୍ୱନା ଓ କାରୁଣ୍ୟର ମିଶ୍ରରାଗ ।

ଚନ୍ଦ୍ରଭାଗା ତୀରରେ ଅରୁଣଙ୍କ ଉଦୟ ଉତ୍ସବ ଦେଖି ସେ ମନେ କଲେ – 'ନିଃଶବ୍ଦ ପୃଥିବୀପରେ/ଶବ୍ଦାୟିତ ଚନ୍ଦ୍ରଭାଗା ତଟ / ଅପୂର୍ବ ଆବେଶେ ପୂର୍ଣ୍ଣ / ଅନ୍ତର ମୋ ଧ୍ୱନିମୟ / ଉଦ୍‌ବେଳ ଉଚ୍ଛନ୍ନ । ଗୋଟିଏ ଦିବ୍ୟ ସୌନ୍ଦର୍ଯ୍ୟାନୁଭୂତି ଯେପରି ଶବ୍ଦ ପରେ ଶବ୍ଦ ଗୁନ୍ଥିହୋଇ କାବ୍ୟରୂପ ଦେଇଯାଇଛି । ଶବ୍ଦରେ ଅଙ୍କିତ ହୋଇଯାଇଛି ପ୍ରକୃତିର ଚିତ୍ର । ସେହି ଶବ୍ଦମାନଙ୍କ ସାହାଯ୍ୟରେ ଜୀବନ୍ତ ହୋଇ ଉଠିଛନ୍ତି କେତେ କାହାଣୀ- କିମ୍ବଦନ୍ତୀ – ଜନଶ୍ରୁତି-ଇତିହାସ ଓ ପୁରାଣ ଗାଥା । ଭୁଲିଯାଇଥିବା ଅତୀତ ପୁଣି ଜୀଇ ଉଠିଛି । ସମୁଦ୍ର, ଚନ୍ଦ୍ରଭାଗା, ପ୍ରାଚୀ, କୁଶଭଦ୍ରା, କୋଣାର୍କ, ନୀଳାଚଳ ଏପରିକି ସମଗ୍ର ଉତ୍କଳ ଯେମିତି ଏକାକାର ହୋଇଯାଇଛି । ଚନ୍ଦ୍ରଭାଗାରେ ସକାଳର ସୂର୍ଯ୍ୟୋଦୟ ଦେଖି ତାଙ୍କର ମନେ ହୋଇଛି –

ଏ ବିଶ୍ୱମୋହନ ଦୃଶ୍ୟ / ଦେଖିବାକୁ ମନେ ମୋର
ବଳବତୀ ଆଶା / ସଫଳ ହୋଇଛି ଆଜି
ବିକଳ ବାସନା / ଅନ୍ତରେ ମୋ ଜାଣି ଉଠେ
କି ଦିବ୍ୟ ଚେତନା / ବରଷା କୁହେଳୀ

ଧୂଳି ପଟଳେ ଆଚ୍ଛନ୍ନ / ଆକଶେ ଦୁର୍ଲଭ ଏଇ
ସଚିତ୍ର ସକାଳ / ବିରଂଚିର ରମ୍ୟ ବିରଚନା ।

ଏହି ଦିବ୍ୟ ଚେତନା କବିଙ୍କୁ ଇତିହାସର ପ୍ରତିଲୋମରେ ଟାଣି ନେଇଛି କାହିଁ କେତେ ଦୂରକୁ । ଗଭୀର ବେଦନାବୋଧରେ ଅନ୍ତର ତାଙ୍କର ଦୋହଲି ଉଠିଛି ଓ ବାରମ୍ବାର ତାଙ୍କ ଭିତରୁ ସୃଷ୍ଟି ହୋଇଛି ପ୍ରଶ୍ନ ପରେ ପ୍ରଶ୍ନ । କୁଆଡ଼େ ଗଲା କୋଣାର୍କର ପୂର୍ବର ସୁଷମା । ଲାବଣ୍ୟର ପୀୟୂଷ ପ୍ରତିମା / ରୂପ ରାଜ୍ୟେ ରମ୍ୟା / ବିଶ୍ୱେ ଅନୁପମା ? ତାଙ୍କ ମନ ଭିତରେ ପୁଣି ପ୍ରଶ୍ନ ସୃଷ୍ଟି ହୋଇଛି କୁଆଡ଼େ ଗଲା କୃଷକର ଭୂମି କର୍ଷଣ, ସାଧବର ବୋଇତ ଯାତ୍ରା, ପାଇକମାନଙ୍କର ଯୁଦ୍ଧଯାତ୍ରା, ପଣ୍ଡିତମାନଙ୍କ ଶାସ୍ତ୍ର ଆଲୋଚନା, ମୁନି-ଯୋଗୀ ଓ ସାଧକମାନଙ୍କର ସାଧନା । ଗଭୀର ଦୁଃଖରେ ସେ କହନ୍ତି - 'ଆହା ! ତାହା / କାଳ ଦଣ୍ଡାଘାତେ ଯାଇଅଛ ହଜି, ସମ୍ବେଦନଶୀଳ କବି-ହୃଦୟରେ ପୁଣି ରେଖାପାତ କରିଛି ସମୁଦ୍ରରେ ଡ଼ଙ୍ଗା ନେଇ ମାଛଧରୁଥିବା ନୋଳିଆମାନଙ୍କର ଦୁଃଖ ଓ ଦୁର୍ଦ୍ଦଶା, ନୋଳିଆଣୀମାନଙ୍କର ଅସହାୟତା, ସାହୁକାର ସେମାନଙ୍କ ଉପରେ ଅତ୍ୟାଚରର କରୁଣ କାହାଣୀ । ଏହା ପରେ ପରେ କାବ୍ୟ - ପୁରୁଷଙ୍କ ମାନସକୁ ଦୋହଲାଇ ଝରି ଆସିଛି ପୁରାଣ, ଇତିହାସ, କିମ୍ବଦନ୍ତୀ ଓ ଜନଶ୍ରୁତିରୁ କେତେ କେତେ କାହାଣୀ । ଏଇ କ୍ଷେତ୍ରରେ ଶିବଙ୍କ ବ୍ରହ୍ମ କପାଳ ମୋଚନ ଯେପରି ବର୍ଣ୍ଣିତ ସେହିପରି ପଦ୍ମକ୍ଷେତ୍ର ସୂର୍ଯ୍ୟଦେବତାଙ୍କର ପ୍ରିୟସ୍ଥାନ ସମ୍ପର୍କରେ ସୂର୍ଯ୍ୟ ପୂଜା ଓ ରାଜତ୍ୱ, ଅର୍କ ଦୈତ୍ୟର ତାଙ୍କ ଉପରେ ଅତ୍ୟାଚାର, ସୂର୍ଯ୍ୟଙ୍କର  ଅର୍କ ଦୈତ୍ୟକୁ ମାଘ ମାସ ଶୁକ୍ଳପକ୍ଷ ସପ୍ତମୀ ପ୍ରଭାତରେ ହତ୍ୟା, ସେହିଦିନରୁ ଚନ୍ଦ୍ରଭାଗା ତୀର୍ଥର ଖ୍ୟାତି ଓ ଚନ୍ଦ୍ରଭାଗରେ ସ୍ନାନ, ରଘୁକୁଳଚନ୍ଦ୍ର ରାମଚନ୍ଦ୍ର ପତ୍ନୀ ସୀତା ଓ ଅନୁଜ ଲକ୍ଷ୍ମଣଙ୍କ ସହିତ ଏହି କ୍ଷେତ୍ରକୁ ଆସି ସ୍ନାନ କରିବା ସହିତ ରାମେଶ୍ୱର ଶିବଲିଙ୍ଗ ଓ ରାମଚଣ୍ଡୀ ମୂର୍ତ୍ତି ସ୍ଥାପନ, ଯୁଧିଷ୍ଠିର ପତ୍ନୀ ଦ୍ରୌପଦୀ ଓ ଭାଇମାନଙ୍କ ସହିତ ଏଠାକୁ ଆସି ସୂର୍ଯ୍ୟପୂଜା କରିବା, ଅଭିଶପ୍ତ କୁଷ୍ଠରୋଗ ଗ୍ରସ୍ତ କୃଷ୍ଣନନ୍ଦନ ଶାମ୍ବଙ୍କର ଏଠାକୁ ଆସି ସୂର୍ଯ୍ୟ ଉପାସନା କରିବା ଦ୍ୱାରା ରୋଗ ମୁକ୍ତି ଓ ପୌଷମାସ  ଦଶମୀ ତିଥିରେ ରୋଗମୁକ୍ତ ହୋଇଥିବାରୁ ଏହି ଦିବସକୁ ଶାମ୍ବଦଶମୀ ରୂପେ ପାଳନ, କପିଳ ମହର୍ଷିଙ୍କର  ଏଠାରେ କପିଳେଶ୍ୱର ମହାଦେବ ପ୍ରତିଷ୍ଠା, ଲିଆଖିଆ ଭୂମିରେ କିମ୍ବଦନ୍ତୀ, ଚେଦି ଯୁବରାଜଙ୍କ ସହିତ ଉତ୍ପଳାଙ୍କର ପ୍ରେମ, ଉତ୍ପଳାଙ୍କ  ସ୍ମୃତିରେ ଚିତ୍ରୋତ୍ପଳା ଦେବୀର ଖନନ ଓ ସେଥିରୁ କୁଶଭଦ୍ରା, ପ୍ରାଚୀ ନଦୀର ଉତ୍ପତ୍ତି, ଚିତ୍ରୋତ୍ପଳାର ଚନ୍ଦ୍ରଭାଗା ନାମ ଧାରଣ,ଚେଳିତୋଳ ଓ କୋଣାଗାର

ନନ୍ଦର ପ୍ରତିଷ୍ଠା । ଐର ଖାରବେଳଙ୍କର ବୀରତ୍ୱ ଓ କଳିଆଧିଶ୍ୱର ନାମ ଧାରଣ, କଳିଙ୍ଗ ସାଧବମାନଙ୍କର ବିଭିନ୍ନ ଦେଶ ଓ ଦ୍ୱୀପକୁ ବୋଇତ ନେଇ ବାଣିଜ୍ୟ କରିବାକୁ ଯାତ୍ରା, ମହାରାଜା ପୂର୍ଣ୍ଣବର୍ମା ଓ ଶୈଳନ୍ଦ୍ରେଙ୍କ ମାଳଦ୍ୱୀପ, ଚଂପା ଓ କମ୍ବଜରେ ଉପନିବେଶ ସ୍ଥାପନ, ଚନ୍ଦ୍ରିକା ନରସିଂହ ତାନ୍ତ୍ରିକ କାମନନ୍ଦ ବୃତ୍ତାନ୍ତ, ନରସିଂହ ଦେବଙ୍କର ମନ୍ଦିର ନିର୍ମାଣ, ବିଶୁ ମହାରଣା ଓ ଧର୍ମପଦ ଇତ୍ୟାଦି ନାନା ଘଟଣାକୁ କବି ଯେପରି ବର୍ଣ୍ଣନା କରିଛନ୍ତି ତାହା ତାଙ୍କର ପୁରାଣ କବିତ୍ୱର କେବଳ ପରିଚୟ ଦିଏ ନାହିଁ, ତତ୍‌ସହିତ ତାଙ୍କର ପୁରାଣ ଓ ଇତିହାସ-ପ୍ରୀତି, କିମ୍ବଦନ୍ତୀ ଓ ଜନଶ୍ରୁତି ପ୍ରତି ମମତ୍ୱବୋଧକୁ ମଧ୍ୟ ସୂଚେଇଦିଏ । କବିଙ୍କର କବିତ୍ୱର ଦୃଷ୍ଟାନ୍ତଟିଏ ଦେଖନ୍ତୁ-

ଛାଇ ଓ ଆଲୁଅ / ତାଳପତ୍ର ମହଲରେ
ବାଦୁଡ଼ି ପରାୟ / ନେସିହେଲା ଫୁଲ ସଂଜର ଅନ୍ଧାର
ସିନ୍ଧୁ ଓ ତଟିନୀ ତଟେ / ଖେଳିଯାଏ ଶୁଚିଶୁଭ୍ରରେଶମୀ ପଟଳ
ଖାଲ ଢିପ ସମତଳ/ ସବୁକିଛି ପୂର୍ଣ୍ଣ
ପୂର୍ଣ୍ଣପ୍ରାଣ ପୂର୍ଣ୍ଣଚିତ୍ତ / ପୂର୍ଣ୍ଣମିଦଂ / ଚିତ୍ରିତ ଚଇତ୍ର ।

କାବ୍ୟ ପୁରୁଷ ପ୍ରକୃତିର ଅପରୂପ ଲାବଣ୍ୟରେ ନିମଜ୍ଜିତ ହୋଇ ଆନନ୍ଦ ଉପଲବ୍ଧି କରୁ କରୁ ଉତ୍କଳର ଅତୀତ ସଂଗେ ସଂଗେ ସୌନ୍ଦର୍ଯ୍ୟ -ଅବବୋଧ ସହିତ ସତ୍ୟର ସାକ୍ଷାତକାର ଯେପରି କରିଛନ୍ତି ଓ ଯେପରି ଶୂନ୍ୟ ବର୍ତ୍ତମାନକୁ ସମୃଦ୍ଧ ଓ ଜ୍ୟୋତିଷ୍ମନ୍ତ କରିବା ପାଇଁ ଆହ୍ୱାନ ଦେଇଅଛନ୍ତି ତାହା ତାଙ୍କର ଜାତୀୟ ମାନସିକତାକୁ ସୂଚେଇଦିଏ । ସ୍ମୃତିର ନୟନରେ ଅତୀତକୁ ଅବଲୋକନ କରି ସେ ଭୁଲିଯାଇଛନ୍ତି ସମସ୍ତ ଗ୍ଲାନି ଅବସାଦ ଓ ତାଙ୍କ ଅନ୍ତରାତ୍ମା ଲାଭ କରିଛି ବ୍ରହ୍ମାନନ୍ଦ । ଚନ୍ଦ୍ରଭାଗାର ନିସର୍ଗ ଲାବଣ୍ୟ ତାଙ୍କୁ ଏପରି ବିମୋହିତ କରିଦେଇଛି ଯେ ସେ ନିବେଦନ କରିଛନ୍ତି

ତୋର ନୀଳରଙ୍ଗ ବ୍ୟାପ୍ତି
ହୃଦୟ ପରୁରେ ମୋର / ରଚିଥାଏ
ମୌସୁମୀ ଆମୋଦ / ନପାଇବି ପାଇବାର
ମହ ମହ ଗନ୍ଧ / ନିସର୍ଗ ସୁନ୍ଦରି !
ଦେ ତୁ ମେଲାଣି / ଆସୁଛି ମୁଁ ଏବେ
ଆସିବି ମୁଁ ବାରବାର

ତୋ ଦର୍ଶନ ତୃଷା ହେଲେ ଅନିବାର ।

ସକାଳର ଘରୁ ଚନ୍ଦ୍ରଭାଗାର ଦୃଶ୍ୟ କାବ୍ୟପୁରୁଷଙ୍କୁ ତନ୍ମୟ କରିଛି । ସୌନ୍ଦର୍ଯ୍ୟ ଭିତରେ ଅନୁଭବିଛନ୍ତି ସତ୍ୟକୁ । ସତ୍ୟର ସାକ୍ଷାତକାର କରୁ କରୁ କେତେବେଳେ ତାଙ୍କ ଅନ୍ତରରେ ବ୍ୟଥାର ରାଗିଣୀ ସୃଷ୍ଟି ହୋଇଛି ତ କେତେବେଳେ ଅତୀତର ଗୌରବକୁ ସ୍ମରଣ କରି ପୁଲକିତ ହୋଇଛନ୍ତି । ସମଗ୍ର କାବ୍ୟରେ କିନ୍ତୁ ସ୍ମୃତି, କାରୁଣ୍ୟ ଓ ସାନ୍ତ୍ୱନାର ହୋଇଛି ତ୍ରିବେଣି ସଂଗମ । ବେଦନା ଭିତରେ ଗୋଟାଏ ଆଶାବାଦ ଉଦ୍‌ଭାସିତ ହୋଇଉଠିଛି

ଲକ୍ଷ୍ମୀଧର ବାବୁ ହୁଏତ କବିତା କ୍ଷେତ୍ରରେ ବହୁପ୍ରଜ ନୁହଁନ୍ତି; ତଥାପି ସୀମିତ କାବ୍ୟାଲୋକ ଭିତରେ ତାଙ୍କର ସରଳ ନିଷ୍କପଟ ସୌନ୍ଦର୍ଯ୍ୟ ପିପାସୀ ଦୃଷ୍ଟିକୋଣଟି ବଡ଼ ମାର୍ମିକ । କବିତ୍ୱର ଦିବ୍ୟ ଚେତନାହିଁ ତାଙ୍କୁ ଗଳ୍ପ ଲେଖିବାକୁ ପ୍ରେରଣା ଦେଇଛି; ଦେଇଛି ମଧ୍ୟ ପ୍ରବନ୍ଧ ରମ୍ୟ ରଚନା ଓ ସମାଲୋଚନା ଲେଖିବାକୁ । ସର୍ବତ୍ର ତାଙ୍କର ବିବେକ ସ୍ନାତ ବିଚାରବୋଧ, ପ୍ରକୃତି ପ୍ରୀତି, ଜାତୀୟମମତା, ସଂଘର୍ଷରତ ସାଧାରଣ ମଣିଷମାନଙ୍କ ପ୍ରତି ସମ୍ବେଦନା ପ୍ରକାଶିତ । ଏହିପରି ଜଣେ ନମନୀୟ ସାରସ୍ୱତ ସ୍ରଷ୍ଟାଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧା ନିବେଦନ କରୁଛି ।



# ସକାଳର ଚନ୍ଦ୍ରଭାଗା

ଡ଼କ୍ଟର କରୁଣାସାଗର ବେହେରା

ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ ଅନନ୍ୟ ସୂର୍ଯ୍ୟମନ୍ଦିର କବି ଓ କଳାକାରମାନଙ୍କୁ ଗଭୀର ଭାବେ ପ୍ରଭାବିତ କରିଛି । କୋଣାର୍କର ଅନତି ଦୂରରେ ଜନ୍ମଗ୍ରହଣ କରିଥିବା ଲକ୍ଷ୍ମୀଧର ଦାସ ପ୍ରଖ୍ୟାତ କୋଣାର୍କ ମନ୍ଦିର, ସେଠିକାର ପାଣି-ପବନ, ପ୍ରାକୃତିକ ପରିବେଶ, ଜନଶ୍ରୁତି ଓ କିମ୍ବଦନ୍ତୀ ସହିତ ବେଶ୍ ପରିଚିତ । ଚନ୍ଦ୍ରଭାଗାର ସୂର୍ଯ୍ୟୋଦୟ ଶ୍ରୀ ଦାସଙ୍କୁ ପ୍ରଲୁବ୍ଧ କରିଛି, ପ୍ରେରଣା ଦେଇଛି ତାର କାବ୍ୟିକ ରୂପାୟନ ପାଇଁ । ସେ କୋଣାର୍କର ନୌବାଣିଜ୍ୟ ସମ୍ପର୍କରେ ଅନେକ ତଥ୍ୟ, ଜନଶ୍ରୁତି-କିମ୍ବଦନ୍ତୀ ଭିତ୍ତିରେ ବିଷୟବସ୍ତୁ 'ସକାଳର ଚନ୍ଦ୍ରଭାଗା'ରେ ଦେଇଛନ୍ତି । କିମ୍ବଦନ୍ତୀ ଇତିହାସ ନୁହେଁ, କିନ୍ତୁ ବେଳେବେଳେ ସେଥିରୁ ଲୁକାୟିତ ଐତିହାସିକ ତଥ୍ୟ ଉପଲବ୍ଧ ହୋଇଥାଏ । କୋଣାର୍କର ସାମୁଦ୍ରିକ ସମ୍ପର୍କ ଖାଲି କଳ୍ପନା ବିଳାସ ନୁହେଁ, ଏହା ନିକଟସ୍ଥ ଖାଲକଟାର ପ୍ରତ୍ନତାତ୍ତ୍ୱିକ ଖନନ ଏବଂ ଅନେକ ପ୍ରାଚୀନ କୀର୍ତ୍ତି ସୂଚାଇ ଦିଏ ଯେ, କୋଣାର୍କର ଦେଶ-ବିଦେଶର ବିଭିନ୍ନ ଅଞ୍ଚଳ ସହିତ ବାଣିଜ୍ୟିକ ସମ୍ପର୍କ ରହିଥିଲା ।

ଲକ୍ଷ୍ମୀଧର ବାବୁଙ୍କୁ ମୁଁ ଏଇ ମନୋଜ୍ଞ କାବ୍ୟକୃତି ପାଇଁ ଅଭିନନ୍ଦନ ଜଣାଉଛି । ମୋର ଦୃଢ଼ ଆଶା ଓ ବିଶ୍ୱାସ ଯେ, ସାହିତ୍ୟ ସଂସ୍କୃତି ଶିଳ୍ପକଳା ଉପରେ ରୁଚିଶୀଳ ସମସ୍ତ ପାଠକ ଓ ଜନସାଧାରଣ ଏଇ ପୁସ୍ତକକୁ ସ୍ୱାଗତ କରିବେ ।

ପ୍ରାକ୍ତନ ପ୍ରଫେସର, ଇତିହାସ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ
ଏବଂ
ପ୍ରାକ୍ତନ କୁଳପତି, ଫକୀରମୋହନ ବିଶ୍ୱବିଦ୍ୟାଳୟ



# ପ୍ରତ୍ୟୁଷପାଦ

ଡ଼କ୍ଟର ପ୍ରସନ୍ନ କୁମାର ପଟ୍ଟନାୟକ

ଓଡ଼ିଆ କବିତାର ଯୁଗାବ୍ଧିରେ 'କୋଣାର୍କ', ଏକ କରୁଣ ରହସ୍ୟ ରୂପେ ଚିରକାଳ କବିମନକୁ ଆଲୋଡ଼ିତ କରିଆସିଛି । କିଏ ଏହାକୁ ଦେଖିଛି କାମାନ୍ଧ ସୂର୍ଯ୍ୟଦେବଙ୍କ ପ୍ରତି ତପସ୍ୱୀ ସୁମନ୍ୟୁଙ୍କ ଅଭିଶାପର ପରିଣତି ରୂପେ ତ, କିଏ ଯୁବରାଜ ନରସିଂହ ଓ ସାମନ୍ତ କନ୍ୟା ମାୟାଦେବୀଙ୍କ ପ୍ରଣୟ କାହାଣୀର ମୂକସାକ୍ଷୀ ରୂପେ; କିଏ ଏହାକୁ ଦେଖିଛି ଧର୍ମପଦର ଉଦାତ୍ତ ଜାତୀୟତାବୋଧର ସ୍ମାରକୀ ରୂପେ ତ, କିଏ 'ବିଗତ ଯୌବନା ସୈକେତ ଶୟନା' ରୂପସୀ ରୂପେ, କିଏ 'କୋଟି କଙ୍କାଳ ଭଗ୍ନ ବୁକୁର ସ୍ତୂପ' ରୂପେ ବା 'ଲାଲ ପାଗୋଡ଼ାର ପ୍ରେତ' ରୂପେ । କିନ୍ତୁ 'ସକାଳର ଚନ୍ଦ୍ରଭାଗା' ଏ ସମସ୍ତରୁ ଭିନ୍ନ ଏକ ବାସ୍ତବତା ଉପରେ ଆଧାରିତ ସଦ୍ୟୋଜାତ କୃତି । ଚନ୍ଦ୍ରଭାଗାରେ ତିଳ ସପ୍ତମୀରେ ବାଳାର୍କ - "ପବିତ୍ର ପାବନ ଏଇ ଅଲୌକିକ ଦୃଶ୍ୟ, ଦର୍ଶନ ସୌଭାଗ୍ୟ ମିଳେ ନାହିଁ ପ୍ରତିବର୍ଷ, ଘନ କୁହୁଡ଼ି ଆଚ୍ଛାନ୍ନେ .... କେବେ ହୁଏ ଗୋପ୍ୟ"କିନ୍ତୁ କବିଙ୍କର ବିକଳ ବାସନା ଆଜି ସଫଳ ହୋଇଛି । ସୌନ୍ଦର୍ଯ୍ୟର ବେଦ୍ୟାନ୍ତର ସ୍ପର୍ଶ ଶୂନ୍ୟ, ବ୍ରହ୍ମାସ୍ୱାଦ ସହୋଦର, ଲୋକୋତ୍ତର ଚମତ୍କାର ଆସ୍ୱାଦନ, ଆବାଲ୍ୟ ସଞ୍ଚିତ ସ୍ମୃତିର ଉତ୍ତରଳ ଚିନ୍ମୟ ପ୍ରବାହ ସହ ହୋଇଉଠିଛି ଏକ ଏକ ଉଚ୍ଛ୍ୱସିତ ଉତ୍କଳିକା । କବି ସଚେତନ ଯେ, 'ସେ କାଳର ବିଶ୍ୱାସ ତା ନାଇଁ ଏହି କାଳେ, ଜ୍ଞାନ ମଦେ ସନ୍ଦେହ ଦୋଳାରେ, ପ୍ରାଣ ମୋର ଦୋଳେ' । ତଥାପି 'ସୌନ୍ଦର୍ଯ୍ୟର କୁହୁକରେ ଆସି ମୁହିଁ ଏ ତଟରେ, ଏ କି ଦିବ୍ୟଭାବ ମନେ ମୋ ସଞ୍ଚାର-ସୌନ୍ଦର୍ଯ୍ୟ ଜଗତ ସତୁଁ ନୁହେଁ ବହୁ ଦୂର ....'

'ସକାଳର ଚନ୍ଦ୍ରଭାଗା' ବିସ୍ମୃତିର ଅତଳ ଗହ୍ୱରରୁ କେବଳ ଇତିହାସ ବା କିମ୍ବଦନ୍ତୀ ଉତ୍ତୋଳନ କରି ନାହିଁ, ପ୍ରତ୍ୟକ୍ଷ ଉପସ୍ଥିତ ନିସର୍ଗ ସୌନ୍ଦର୍ଯ୍ୟର ଅରୁଣ ରାଗକୁ ରୂପାନ୍ତରିତ କରିଛି ବୈତାଳିକୀରେ । ଏହାକୁ ରାଧାନାଥଙ୍କ 'ଚନ୍ଦ୍ରଭାଗା' 'ଚିଲିକା', ନୀଳକଣ୍ଠଙ୍କ 'କୋଣାର୍କେ' ଏବଂ ମାୟାଧର ମାନସିଂହଙ୍କ 'କୋଣାର୍କେ' ପରଂପରାରେ ବିଚାର କରିବାକୁ ପାଠକ ଉତ୍ସୁକତା ଅନୁଭବ କଲେ ମଧ୍ୟ, ଏଥିରେ

ନିହିତ କବିଙ୍କର ବ୍ୟକ୍ତିଗତ ରୁଚି, ପ୍ରକୃତି ପରିଚର୍ଯ୍ୟା, ସ୍ୱତନ୍ତତା ସଂପନ୍ନ, ରାଜା କର୍ଣୟବିନ୍ଦୁ ଓ ଅର୍କ ଦୈତ୍ୟ ବଧ ବୃତ୍ତାନ୍ତ,ଭଗବାନ ରାମଚନ୍ଦ୍ରଙ୍କ ଚଣ୍ଡୀପୂଜା, ଦୁର୍ଯ୍ୟୋଧନଙ୍କ କନ୍ୟା ଚନ୍ଦ୍ରାବତୀଙ୍କ ସ୍ୱାମୀ କୃଷ୍ଣନନ୍ଦନ, ଶାମ୍ବଙ୍କର ଅର୍କ ପୂଜା ଓ କୁଷ୍ଟ ରୋଗରୁ ମୁକ୍ତି, କପିଳେଶ୍ୱର ମହାଦେବ କିମ୍ବଦନ୍ତୀ, ଲକ୍ଷ୍ମୀ ପୁରାଣ ସମ୍ବନ୍ଧି. 'ଲିଆଖିଆ' କିମ୍ବଦନ୍ତୀ, ରାଜକୁମାରୀ ଉତ୍ପଳା ଓ ଚିତ୍ରୋତ୍ପଳା କିମ୍ବଦନ୍ତୀ, ଚେଳିତୋଳ ଓ କୋଣାଗାର ବନ୍ଦରର ଐତିହ୍ୟ, ମହାମେଘବାହନ ଐର ଖାରବେଳଙ୍କ ଐଶ୍ୱର୍ଯ୍ୟଶାଳୀ କଳିଙ୍ଗ ସାମ୍ରାଜ୍ୟ, କୋଣାର୍କ ମନ୍ଦିର ଗାତ୍ରରେ ଜିରାଫ୍‌ର ମୂର୍ତ୍ତି, ସାଧବଙ୍କ ଯବଦ୍ୱୀପ ଅଭିଯାନ, ବାଲିଯାତ୍ରା, ମହାରାଜ ପୂର୍ଣ୍ଣବର୍ମା ଏବଂ ଶୈଳେନ୍ଦ୍ରଙ୍କ ମାଳଦ୍ୱୀପ, ଚମ୍ପା ଓ କମ୍ବୁଜରେ ଉପନିବେଶ ସ୍ଥାପନ, ଚନ୍ଦ୍ରିକା-ନରସିଂହ- ତାନ୍ତ୍ରିକ କାମାନନ୍ଦ ବୃତ୍ତାନ୍ତ, ନରସିଂହଙ୍କ ମନ୍ଦିର ନିର୍ମାଣ ଓ ବିଶୁ ମହାରଣା ଧର୍ମପଦ କିମ୍ବଦନ୍ତୀ ଇତ୍ୟାଦି ଅସରନ୍ତି ଉପାଖ୍ୟାନର ଏକ ଭବ୍ୟ ସମାହାର ରୂପେ 'ସକାଳର ଚନ୍ଦ୍ରଭାଗା' ବର୍ତ୍ତମାନର ଦାରିଦ୍ର୍ୟ ନିପୀଡ଼ିତ ଓଡ଼ିଶାର ଏପରି ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ଉନ୍ମୋଚନ କରେ- ଯାହା ଅର୍ବାଚୀନ ଓଡ଼ିଆ ପାଠକଙ୍କୁ ତଟସ୍ଥ କରିବ ।

ପ୍ରଦତ୍ତ କିମ୍ବଦନ୍ତୀ ଓ ପୁରାଣ ସବୁର ଐତିହାସିକତା ପ୍ରାମାଣିକ ହୋଇଥିବା, ନ ହୋଇଥିବା କାବ୍ୟ ନିର୍ମାଣ ପାଇଁ ଏକାନ୍ତ ଗୁରୁତ୍ୱପୂର୍ଣ୍ଣ ନୁହେଁ । କୋଣାର୍କ ଯେ ପ୍ରତ୍ୟକ୍ଷରେ ଆମ ଜନ୍ମଭୂମିର ସମୃଦ୍ଧତମ ଅବସ୍ଥାରେ ଭୂଲୁଣ୍ଠିତ ଭଗ୍ନାବଶେଷ, ଏହା ଉତ୍ତର ପୁରୁଷଙ୍କୁ ଉପଲବ୍ଧ କରାଇବା ପାଇଁ ଅକଳ୍ପନୀୟ, ଅସମ୍ଭବ, ଅତିରଞ୍ଜିତ କିମ୍ବଦନ୍ତୀ ବା ପୁରାଣରୁ ଶକ୍ତି ଆହରଣ କରାଯାଇପାରେ ଏବଂ ଏହା ଦୋଷାବହ ନୁହେଁ । ଏହା ହିଁ ଯଥାର୍ଥରେ ଇତିହାସର 'emanatistic logic' ଏବଂ 'pneumatic conception of history' ଯାହାକୁ ରୋମାଣ୍ଟିସିଜମ୍‌ର ଅତି ମହତ୍ତ୍ୱପୂର୍ଣ୍ଣ ଉପସର୍ଗ ରୂପେ ଅବତାରଣା କରାଯାଏ । ମଣିଷ ମନର, ରାଜନୀତିକ ଅନୁଷ୍ଠାନର, ଆଇନ୍‌ର ଭାଷାର, ଧର୍ମର ଏବଂ କଳାର ପ୍ରକୃତି ଯେ କେବଳ ସେ ସବୁର ଇତିହାସ ଭିତ୍ତିରେ ବୋଧଗମ୍ୟ ଏବଂ ଐତିହାସିକ ଜୀବନ ଯେ ଏପରି ଏକ ପରିମଣ୍ଡଳର ପ୍ରତିନିଧିତ୍ୱ କରେ ଯହିଁରେ ଏସବୁ ସଂରଚନା ରୂପପାଏ, ଏ ଧାରଣା ରୋମାଣ୍ଟିକ ଆନ୍ଦୋଳନ ପୂର୍ବରୁ ଥିଲାଅଚିନ୍ତନୀୟ । ଓର୍ଟେଗା ୱାଇ ଗାସେଟ୍ କହନ୍ତି- 'Man has no nature. What he has is history' । 'ସକାଳର ଚନ୍ଦ୍ରଭାଗା'ର କବି ଯେ ଇତିହାସରେ ସ୍ନାତକୋତ୍ତର ଉପାଧି ଲାଭ କରିଛନ୍ତି ଏବଂ ଇତିହାସର ମୂଲ୍ୟ ଉତ୍ତମତର ଭାବେ ଉପଲବ୍ଧ କରିଛନ୍ତି – ଏହାର ସାର୍ଥକତମ ଉଦାହରଣ

ଆଉ କ'ଣ ହୋଇପାରେ ?

'ସୌନ୍ଦର୍ଯ୍ୟ ଜଗତ ସତ୍ୟ ନୁହେଁ ବହୁ ଦୂର'- କିଟ୍‌ସ୍‌ଙ୍କ ' Beauty is truth, truth is beauty' ଉକ୍ତିର ଏ ପ୍ରତିଧ୍ୱନି ଅଙ୍ଗୀକାର ରୂପେ କେବଳ ଏହାର ରୋମାଣ୍ଟିକ୍ ବିଭବ ସାବ୍ୟସ୍ତ କରେ ନାହିଁ, ଏହାର କାବ୍ୟିକ ପଦବନ୍ଧ( Poetic diction) ପ୍ରକୃତି ପରିଚର୍ଯ୍ୟା ଯାହା ଆଧୁନିକ କବିତାରୁ କ୍ରମଶଃ ହ୍ରାସ ଲୋପ ହେବାକୁ ବସିଛି, ତା'କୁ ପୁନଶ୍ଚ ତାର ଐଶ୍ୱର୍ଯ୍ୟମୟ ସ୍ଥାନ ପ୍ରତ୍ୟର୍ପଣ କରିବାର ମନୋବୃତ୍ତି, ୱାର୍ଡସ୍‌ୱର୍ଥଙ୍କ କବିତାର ସଂଜ୍ଞା 'ଶକ୍ତିଶାଳୀ ଅନୁଭୂତିର ସ୍ୱତଃସ୍ଫୂର୍ତ୍ତ ଉଚ୍ଛଳନ' ଏବଂ 'ନିଃଶବ୍ଦତା ମଧ୍ୟରେ ସ୍ମରିତ ଆବେଗ'ର ନିପୁଣ ନିର୍ବହଣ, କିଟ୍‌ସ୍‌ଙ୍କ 'ନକାରାତ୍ମକ ଦକ୍ଷତା'(Negative capability)ଏବଂ ଇନ୍ଦ୍ରିୟ ପ୍ରବଣତା(Sensuality), ଲିଙ୍କ ଇନ୍ଦ୍ରିୟୋତ୍ତର ଭାବ(Platonic idealism) ଓ ସ୍ୱୟଂଶାସିତ କଳ୍ପନା(autonomous imagination), କଲେରିଜ୍‌ଙ୍କ ଫାନ୍‌ସି( fancy), ମହାୟାନ ଚିନ୍ତା(sublime thought) ଇତ୍ୟାଦି ପ୍ରତ୍ୟେକ ବିଭାବର ବର୍ଣ୍ଣାଢ଼୍ୟ ଉପଚାର ଏହାକୁ ଏକ ନବ୍ୟ-ରୋମାଣ୍ଟିକ୍ ଧାରା ଅଭିନନ୍ଦନୀୟ ଉଦ୍ୟମ ରୂପେ ଚିହ୍ନିତ କରେ ।

ଏ ଗ୍ରନ୍ଥର ଆଦ୍ୟ ପାଣ୍ଡୁଲିପି ମୁଁ ଦେଖିବାର ସୁଯୋଗ ପାଇଥିଲି ପ୍ରାୟ ଚାରିବର୍ଷ ତଳେ, ଏକଦା କବିଙ୍କ ସହିତ ଏକଇ ସହରରେ ଯେତେବେଳେ ପ୍ରତିବେଶୀ-ପ୍ରାୟ ରହୁଥିଲି । ଏ ସଂପର୍କରେ ଏକାଧିକବାର ଆମ ଭିତରେ ଆଳାପ ଆଲୋଚନା ହୋଇଛି । ଆଜି ଏହାର ଚୂଡ଼ାନ୍ତ ମୁଦ୍ରଣ ଲିପି ଦେଖିବା ପରେ ସ୍ମରଣକୁ ଆସୁଛି କଲେରିଜ୍‌ଙ୍କ Biographia ର ଗୋଟିଏ ଅନୁଚ୍ଛେଦ- "ମିଷ୍ଟର ୱାର୍ଡ଼ସ୍‌ୱର୍ଥ ଏବଂ ମୁଁ ପ୍ରତିବେଶୀ ଭାବେ ରହିବାର ପ୍ରଥମ ବର୍ଷକ ଭିତରେ, ଆମର ଆଳାପ ପ୍ରାୟତଃ କବିତାର ଦୁଇଟି ମୂଳବିନ୍ଦୁ ଉପରକୁ ଲେଉଟି ଆସୁଥିଲା । ବିଶ୍ୱସ୍ତ ଆନୁଗତ୍ୟ ମାଧ୍ୟମରେ ପ୍ରକୃତିର ସତ୍ୟତା ପ୍ରତି ପାଠକର ସହାନୁଭୂତି ସୃଷ୍ଟି କରିବାର କ୍ଷମତା ଏବଂ କଳ୍ପନାର ରଂଗ ପରିବର୍ତ୍ତନ ଦ୍ୱାରା ଅଭିନବତାର ଆଗ୍ରହ ସୃଷ୍ଟି କରିବାର କ୍ଷମତା । ସହସା ସମ୍ମୋହନ ଯାହା ଛାଇ-ଆଲୁଅର, ଚନ୍ଦ୍ରାଲୋକ ବା ଅସ୍ତରାଗର ଆକସ୍ମିକ ସଂଘଟନା ପରି ମିଶି ଯାଉଥିଲା ଏକ ଚିହ୍ନାଜଣା ଦୃଶ୍ୟ ଭୂମି ଉପରେ, ମନେ ହେଉଥିଲା ଉଭୟକୁ ସମନ୍ୱିତ କରିବାର ସାମ୍ଭାବ୍ୟତାକୁ ପ୍ରତିନିଧିତ୍ୱ କଲାପରି ....' ଏହି ଭାବରେ 'ଲିରିକାଲ୍ ବାଲାର୍ଡ଼ସ'ର ଯୋଜନା ଜନ୍ମ ନେଲା, ଯହିଁରେ ଏହା ସ୍ୱୀକୃତ ହେଲା ଯେ ମୋର

ଉଦ୍ୟମ ଅତିପ୍ରାକୃତ କିମ୍ବା ଅନ୍ତତଃ ରୋମାଣ୍ଟିକ୍ ଚରିତ୍ର ବା ବ୍ୟକ୍ତିମାନଙ୍କ ପ୍ରତି ଉଦ୍ଦିଷ୍ଟ ହେବା ଉଚିତ୍ । ତଥାପି ଆମର ଆଭ୍ୟନ୍ତରୀଣ ପ୍ରକୃତିରୁ ଏକ ମାନବୀୟ ଆଗ୍ରହ ଓ ସତ୍ୟର ପ୍ରତୀତ ସ୍ଥାନାନ୍ତର କରିବା ଉଦ୍ଦେଶ୍ୟରେ ଯାହା ମୁହୂର୍ତ୍ତକ ପାଇଁ ଏସବୁ କଳ୍ପନାର ଛାଇ ପାଇଁ ଆବଶ୍ୟକ ଅବିଶ୍ୱାସର ସ୍ୱେଚ୍ଛାକୃତ ନିଲମ୍ବନ' (willing suspension of disbelief) ଘଟାଇବାକୁ ଯଥେଷ୍ଟ ହେବ ଏବଂ ଯାହା କାବ୍ୟିକ ବିଶ୍ୱାସ ଜାତ କରିବ, ମୋର ଉଦ୍ୟମ ସେପରି ହେବା ଉଚିତ୍ । ଅପର ପକ୍ଷରେ ମିଷ୍ଟର ଓ୍ୱାର୍ଡସ୍ୱର୍ଥ ନିଜକୁ ନିଜ ଲକ୍ଷ୍ୟ ସଂପର୍କରେ ପ୍ରସ୍ତାବ କରୁଥିଲେ ନିତିଦିନିଆ ପାଦାର୍ଥ ସବୁକୁ ଅଭିନବତାର ସମ୍ମୋହକ ଶକ୍ତି ଦେବା ପାଇଁ ଏବଂ ଏପରି ଏକ ଅନୁଭାବ ସୃଷ୍ଟି କରିବା ପାଇଁ ଯାହା ଅତି ପ୍ରାକୃତ ସହ ସମାନ ହୋଇପାରିବ, ପ୍ରଥା ପରଂପରାର ଆଳସ୍ୟରୁ ମନଧ୍ୟାନକୁ ଉଦ୍ରେକ କରି ଏବଂ ଆମ ଆଗରେ ଉନ୍ମୁକ୍ତ ବିଶ୍ୱର ଚମତ୍କାରିତା ଓ ରମଣୀୟତା ଦିଗରେ ପରିଚାଳିତ କରି ।"(ଅଧ୍ୟାୟ - ୧୪/.୨, ୫୦୬)କଲେରିଜ୍‌ଙ୍କ ପ୍ରସ୍ତାବିତ ଏହି 'ଅବିଶ୍ୱାସର ସ୍ୱେଚ୍ଛାକୃତ ନିଲମ୍ବନ' ଏବଂ ଓ୍ୱାର୍ଡ୍‌ସ୍ୱର୍ଥଙ୍କ ପ୍ରସ୍ତାବିତ ନିତିଦିନିଆ ପଦାର୍ଥର ଅଭିନବତା ସଂପାଦନ ସମ୍ମିଳିତ ଭାବେ ରୂପାୟିତ ହୋଇଛି 'ସକାଳର ଚନ୍ଦ୍ରଭାଗା'ରେ । ଅବଶ୍ୟ ଏହା 'ଲିରିକାଲ୍ ବାଲାର୍ଡ୍‌ସ୍' ହୋଇ ନାହିଁକିନ୍ତୁ ହୋଇଛି ଅମିତ୍ରଛନ୍ଦର ବାଲାର୍ଡ ।

ଯୁଗରୁଚି ବା ବର୍ତ୍ତମାନ ମାନଦଣ୍ଡ ଅନୁସାରେ ମଧ୍ୟ ଏ କାବ୍ୟ କୌଣସି ପାଠକକୁ ପୁଣି ଥରେ 'ରୋମାଣ୍ଟିକ୍ ରିଭାଇଭାଲ୍' ଯୁଗକୁ ଫେରାଇ ନେବାର ଅପଚେଷ୍ଟା କରୁ ନାହିଁ । ଭାଷା, ଶୈଳୀ, ଛନ୍ଦ-ଏ ସବୁ ତ ନିୟତ ପରିବର୍ତ୍ତନଶୀଳ । କବିତାରେ ଯଦି ଅପରିବର୍ତ୍ତନୀୟ ଉପାଦାନ କିଛି ଥାଏ, ତାହା ହେଉଛି ଗୋଟିଏ ଜାତିର ଐତିହ୍ୟ ଓ ସଂସ୍କୃତିର ଶାଶ୍ୱତ ଗୁଣସୂତ୍ର ବା ଫାଇଲୋଜେନେଟିକ୍ ଉପାଦାନ । କହିବା ବାହୁଲ୍ୟ ହେବ ଯେ 'ସକାଳର ଚନ୍ଦ୍ରଭାଗା'ର ପ୍ରଧାନ ଉପଜୀବ୍ୟ ନାହିଁ । 'ସକାଳର ଚନ୍ଦ୍ରଭାଗା' ଖାଲି 'ସେ କାଳର ଚନ୍ଦ୍ରଭାଗା' ନୁହେଁ । ସଦ୍ୟ ଉପସ୍ଥିତ ସକାଳର ଚନ୍ଦ୍ରଭାଗା ମଧ୍ୟ । ରାଧାନାଥଙ୍କ ପରି ଏଥିରେ ନୂଆ ସୃଷ୍ଟି କରିବାର ପ୍ରୟାସ କରାଯାଇନାହିଁ । ଐତିହ୍ୟ ଓ କିମ୍ବଦନ୍ତୀର ଅନିର୍ବାଣ ଅବଶେଷ କୋଣାର୍କ ଏଥିରେ ରୂପାନ୍ତରିତ ହୋଇଛି ଲୋକୋତ୍ତର ଓ ଲୌକିକ ସୌନ୍ଦର୍ଯ୍ୟର ମୂର୍ତ୍ତିମତୀ ବ୍ୟକ୍ତିତ୍ୱରେ, ଯାହାକୁ ସଜୀବ ଜ୍ଞାନରେ ସମ୍ବୋଧନ କରାଯାଇପାରେ, ଯେପରି କରାଯାଇଛି ଓ୍ୱାର୍ଡ୍‌ସ୍ୱର୍ଥଙ୍କ 'ଇଣ୍ଟିମେସନ୍' ଓଡ଼ରେ -

O Lady! We receive but what we give

And in our Life alone does Nature Live;
Ours is her wedding - garment, ours her shroud!
And would we aught behold, of higher worth.
Than that in animate cold world allowed
To the poor loveless ever- anxious crowed,
Ah! from the soul itself must issue forth
A light a glory, a fair luminous cloud
Enveloping the Earth-
And from the soul itself must there be sent
A sweet and potent voice, of its own birth
of all sweet sounds the life and element !

'ସକାଳର ଚନ୍ଦ୍ରଭାଗାର ଶେଷାଂଶରେ ନିସର୍ଗ ସୁନ୍ଦରୀ ପ୍ରତି ରୂପ ପିପାସୁ କବିଙ୍କ ଅନ୍ତରାତ୍ମାର ଅନୁରୂପ ମୂର୍ଦ୍ଧଣ୍ୟ ଉଚ୍ଚାରଣ ଏହାକୁ ଏପରି ଏକ ମହନୀୟ ଉଚ୍ଚତାରେ ଅବସ୍ଥାପିତ କରିଛି, ଯାହାକୁ ଓଡ଼ିଆ କବିତାର ଇତିହାସ ଅବହେଳା କରିପାରିବ ନାହିଁ, ବରଂ ନିଜର ଖର୍ବତା ଦୂର କରିବା ପାଇଁ ଅବଶ୍ୟ କୋଳାଗ୍ରତ କରିବ ।

ଭୁବନେଶ୍ୱର

# "ସକାଳର ଚନ୍ଦ୍ରଭାଗା"ର କବି ଲକ୍ଷ୍ମୀଧର

*ରାଜକୃଷ୍ଣ ମହାନ୍ତି*

ଡକ୍ଟର ଲକ୍ଷ୍ମୀଧର ଦାସ ବିସ୍ମୟକର ଭାବରେ ଜଣେ ବିରଳ ପ୍ରତିଭାର ଅଧିକାରୀ । ମଣିଷର ଅଭୀପ୍ସା, ସାଧନା, ଇଚ୍ଛାଶକ୍ତି ଓ ଉଚ୍ଚାକାଂକ୍ଷା ଯେ ତାହାକୁ 'ଚରୈବେତି' ମନରେ ଦିକ୍ଷୀତ କରାଇ ତୃଣମୂଳ ସ୍ତରରୁ ସୋପାନ ପରେ ସୋପାନ ଆରୋହଣ କରି ଯଶର ସର୍ବୋଚ୍ଚ ଶିଖରୀରେ ପହଞ୍ଚାଇ ଦେଇପାରେ ତାହାର ଏକ ଉଜ୍ଜଳତମ ଉଦାହରଣ ହେଉଛନ୍ତି ଡକ୍ଟର ଦାସ । ପୁରୀ ଜିଲ୍ଲାର ଏକ ଆଖ୍ୟାତ ପଲ୍ଲୀର ନିମ୍ନ ମଧ୍ୟବିତ୍ତ ପରିବାରରେ ଜନ୍ମିତ ଲକ୍ଷ୍ମୀଧର କୈଶୋରରୁ ଜୀବନ ସଂଗ୍ରାମରେ ରତ ହୋଇ ପ୍ରାଥମିକ ସ୍କୁଲର ଶିକ୍ଷକତା କରିବା ଠାରୁ ଯେ ନିଜ ଅଧ୍ୟବସାୟ ବଳରେ ଘରୋଇ ଭାବରେ ମାଟ୍ରିକ, ସ୍ନାତକ ଓ ତିନୋଟି ବିଷୟରେ ସ୍ନାତକୋତ୍ତର ଡ଼ିଗ୍ରୀ ଲାଭ କରିବା ସହ ଶିକ୍ଷାର ସର୍ବୋଚ୍ଚ ପି.ଏଚ୍. ଡ଼ି. ଡ଼ିଗ୍ରୀ ପ୍ରାପ୍ତ ହୋଇ ଶିକ୍ଷକତାର ସର୍ବୋଚ୍ଚ ପଦବୀ ପ୍ରାଧ୍ୟାପକରୁ ସେବା ନିବୃତ୍ତ ହୋଇଛନ୍ତି । ତାହା ସହିତ ତାଙ୍କର ସାହିତ୍ୟ ସାଧନା ଦିଗନ୍ତ ବିସ୍ତାରିତ । ଗବେଷଣା, ଅନୁବାଦ, ଅହମୀୟା ଗଳ୍ପର ଓଡ଼ିଆ ଭାଷାନ୍ତର ସହିତ ବହୁ ମନନଶୀଳ ପ୍ରବନ୍ଧର ସ୍ରଷ୍ଟା ତଥା ସଂକଳକ । କିନ୍ତୁ ସାହିତ୍ୟ ପାଷାଣ ବନ୍ଧୁର ବୁକୁ ଚିରି ତା ଭିତରେ ତାଙ୍କର ମଧୁ ନିସ୍ୟନ୍ଦିନୀ କବିତାର କଲ୍ଲୋଳିନୀ ଧାରାଟିଏ ଯେ ଜୀବନ କ୍ଷେତ୍ରକୁ ପଲ୍ଲବିତ ଓ କୁସୁମିତ କରି ତୋଳିଛି, ତାହା ଯେତିକି ବିସ୍ମୟକର ସେତିକି ସତ୍ୟ । କବିଙ୍କର "ସକାଳର ଚନ୍ଦ୍ରଭାଗା" ତାହାର ଜ୍ୱଳନ୍ତ ସାକ୍ଷ୍ୟ ପ୍ରଦାନ କରେ । ଅବଶ୍ୟ ଏହା ପୂର୍ବରୁ ତାଙ୍କର କ୍ଷୁଦ୍ର କବିତା ସଂକଳନ ଗ୍ରନ୍ଥ "ଚିତ୍ରିତ ଚଇତ୍ର" ଓ ଏବେ ଦୁଇଟି ସଦ୍ୟ ପ୍ରକାଶିତ କବିତା ପୁସ୍ତକ ତାଙ୍କ କବିତ୍ୱର ସ୍ୱାକ୍ଷର ବହନ କରେ । କିନ୍ତୁ "ସକାଳର ଚନ୍ଦ୍ରଭାଗା"ର ବିଭବ ଏମାନଙ୍କ ଠାରୁ ବହୁ ଉର୍ଦ୍ଧ୍ୱରେ ।

ତାଙ୍କ କାବ୍ୟ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ଯେଉଁ କାବ୍ୟତତ୍ତ୍ୱ ଆଧାରରେ ମୋର ଭାବନାକୁ ପ୍ରକାଶ କରିଛି ସେ ସମ୍ବନ୍ଧରେ ସାମାନ୍ୟ ସୂଚନା ଦେବାର ପ୍ରୟାସ କରୁଛି । ଗତ ଦୁଇ ଶତାବ୍ଦୀ ଧରି ନାନା ମୁନିଙ୍କର ନାନା ମତ ନ୍ୟାୟରେ କବିତା କଣ ହେବା ଉଚିତ୍ ସେ ଦିଗରେ ଏହି ପାଶ୍ଚାତ୍ୟ ପଣ୍ଡିତ ବିଭିନ୍ନ ବିଶ୍ଳେଷଣ କରିଛନ୍ତି । କିନ୍ତୁ ଇଂଲଣ୍ଡର ରୋମାଣ୍ଟିକ୍ ଯୁଗର ଜଣେ କବି କହିଛନ୍ତି ଯେ – Poetry is the antithesis of science, having its immediate

object pleasure, not truth.-ସତ୍ୟ ନୁହେଁ ଆନନ୍ଦ ହିଁ କାବ୍ୟର ଆତ୍ମା । ସେହିପରି ବହୁ ଶତାବ୍ଦୀ ପୂର୍ବରୁ ପ୍ରାଚ୍ୟ କାବ୍ୟରେ ଘୋଷଣା କରିଛି ଯେ "ବାକ୍ୟ ରସାତ୍ମକ କାବ୍ୟଂ- ରସାଶ୍ରୟୀ କାବ୍ୟ ହିଁ କାବ୍ୟର ପ୍ରାଣ । ଯୁଦ୍ଧ ଉତ୍ତର ଆଧୁନିକ କବିତାର ଜଣେ ପ୍ରସିଦ୍ଧ କବି ପ୍ଲାବୋ ନେରୋଦାଙ୍କ ଭାଷାରେ "କବିତା ତାର ପାଠକ ସହ ସଂପର୍କ ହରାଇ ସାରିଛି । ପାଠକ ପାଖରେ ଅପହଞ୍ଚ ହୋଇ ଯାଇଛି । କବିତାକୁ ପାଠକ ପାଖକୁ ଯିବାକୁ ପଡ଼ିବ । ତାକୁ ଫେରାଇ ଆଣିବାକୁ ପଡ଼ିବ । ଉପରୋକ୍ତ ଏ ସମସ୍ତ ତତ୍ତ୍ୱକୁ ସାର୍ଥକତା ପ୍ରତିପାଦନ କରୁଛି "ସକାଳର ଚନ୍ଦ୍ରଭାଗା" । ତାହାର ଭାଷା ଯେପରି ସରଳ, ତରଳ ଓ ମନୋମୁଗ୍ଧକର ସେହିପରି ତାହାର ପ୍ରତ୍ୟେକ ପଂକ୍ତିରେ ଭରି ରହିଛି ରୂପ, ରସ, ଛନ୍ଦ ଓ ଗନ୍ଧର ଅପୂର୍ବ ସମାବେଶ । କାବ୍ୟଟି ପାଠକଲେ ମନ ପ୍ରାଣ ଅପୂର୍ବ ଆନନ୍ଦରେ ପୁଲକିତ ହୋଇ ଉଠେ, । ପାଠକକୁ ତଲ୍ଲୀନ କରି ରଖେ ।

ଓଡ଼ିଶାରେ ନଦୀ ଓ ହ୍ରଦକୁ ନେଇ ବେଶ କିଛି କାବ୍ୟ ରଚନା କରାହୋଇଛି । ଏ ଦିଗରେ ରାଧାନାଥ ରାୟଙ୍କର ଚନ୍ଦ୍ରଭାଗା ଓ ଚିଲିକା ଗୋଟିଏ ଗୋଟିଏ ଅନବଦ୍ୟ ସୃଷ୍ଟି । "ଚନ୍ଦ୍ରଭାଗା" ପୁରାଣ ଆଧାରିତ ହୋଇଥିଲା ବେଳେ ଚିଲିକା ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଇତିହାସ କିଂବଦନ୍ତୀର ବର୍ଣ୍ଣନାରେ ଭାସ୍ୱର ହୋଇଉଠିଛି । କବି ନିର୍ବୈକ୍ତିକ ଭାବରେ ଦୂରରୁ ଚିଲିକାକୁ ପର୍ଯ୍ୟବେକ୍ଷଣ କରିଛନ୍ତି ସେହିପରି କବି ଜୟକୃଷ୍ଣ ମିଶ୍ରଙ୍କର "ଅଂଶୁପା" କୁ ମଧ୍ୟ ଉଲ୍ଲେଖ କରାଯାଇପାରେ ।

କିନ୍ତୁ "ସକାଳର ଚନ୍ଦ୍ରଭାଗା" ଭିତରେ କବିଙ୍କର ବ୍ୟକ୍ତିସତ୍ତା ହଜିଯାଇଛି । ତାଙ୍କର ଚେତନାକୁ ଚନ୍ଦ୍ରଭାଗା ଯେପରି ଆବୋରି ରହିଛି । କାରଣ କବିଙ୍କର ବାସସ୍ଥାନ ଚନ୍ଦ୍ରଭାଗାଠାରୁ ବେଶି ଦୂରରେ ନୁହେଁ । ତାଙ୍କର ଶୈଶବ ଓ କୈଶୋର ନିଜ ଗ୍ରାମରେ କଟିଥିବାରୁ ବାରଂବାର ଚନ୍ଦ୍ରଭାଗା ତାଙ୍କ ନିଜଭୂମିରେ ପରିଣତ ହୋଇଛି । ଚନ୍ଦ୍ରଭାଗା ମଧ୍ୟ ଅଧିକରୁ ଅଧିକ ସ୍ଥାନ ଅଧିକାର କରିଛି । ବହୁବାର ମାଘ ସପ୍ତମୀରେ ଚନ୍ଦ୍ରଭାଗାରେ ବୁଡ଼ ପକାଇ ପିତାମାତାଙ୍କ ସହ ଯିବାର ସେ ସକଳ ସ୍ମୃତି ଏବେ ବି ତାଙ୍କର ଏ ଉତ୍ତର ବୟସରେ ସଜୀବ ହୋଇ ରହିଛି-

"ବାଳରବି ଦରଶନ
ଶୈଶବ କୈଶୋରେ
କରୁଥିଲୁ ପିତାମାତା ସହ
x x x x

ପୂର୍ବଦିନ ସଞ୍ଜବେଳେ
ଚଢ଼ି ଶଗଡରେ
ପ୍ରତିବେଶୀ ପରିଜନ ନେଇ ସଙ୍ଗତରେ
ଲଂଘି ଅପନ୍ତରା ଭୂଇଁ
ବେଣାପାଟ, ନଈ
ବିଶ୍ରାମ ବେଳାରେ ହୁଏ
ବାଟରେ ରୋଷେଇ
ପଂକ୍ତି ଭୋଜନାନ୍ତେ ସର୍ବେ
ମହା ଆନନ୍ଦରେ
ଯାତ୍ରାକରୁ ତୀର୍ଥ ଉଦ୍ଦେଶ୍ୟରେ ।
ଗାଡ଼ିଆଳଙ୍କ କୁହାଟ,
ମନ ଫୁଲୋଖିଆ ଗୀତ
ବଳଦଙ୍କ ଗଳ ଘଣ୍ଟିନାଦ
ହାରକିନି ଆଲୁଅର ମାଳ
ମନପ୍ରାଣ କରେ ବିମୋହିତ ।"

ଏବେ ମଧ୍ୟ ବହୁଳ ମଟର ଯାନର ଘର୍ଘର ନାଦକୁ ପ୍ରତିହତ କରି ନିକଟବର୍ତ୍ତି ଗ୍ରାମମାନଙ୍କରୁ ଏ ତୀର୍ଥ ଯାତ୍ରାର ଶୋଭାଯାତ୍ରା ହଜିଯାଇନାହିଁ ।

ସମସ୍ତ କାବ୍ୟଟି ଅଧ୍ୟୟନ କରିବା ପରେଲାଗେ ଯେମିତି କବି ତାଙ୍କ ଉଚ୍ଛଳ ଯୌବନ କାଳରେ ଚନ୍ଦ୍ରଭାଗା ତୀରର କୌଣସି ଏକ ବାଲିବନ୍ତ ଉପରେ ପ୍ରତ୍ୟୁଷର ବହୁ ପୂର୍ବରୁ "ଭାବଗୁର୍ଥୀ ମଧ୍ୟେ ବସି" ଅତୀତକୁ ରୋମନ୍ଥନ କରିବା ସହିତ ଚକ୍ଷୁ ସମକ୍ଷରେ ଘଟି ଯାଇଥିବା ସାଂପ୍ରତିକ ଘଟଣାବଳିକୁ ବିମୁଗ୍ଧ ନୟନରେ ଉପଭୋଗ କରୁଛନ୍ତି । ସେହି ପାତଳ ଅନ୍ଧକାରରେ ଚନ୍ଦ୍ରଭାଗା ତୀରରେ ପ୍ରଥମେ ତାଙ୍କର ଦୃଷ୍ଟି ପଡ଼ିଛି ।

"ପଞ୍ଚତାରକା ହୋଟେଲୁ
ପାହାନ୍ତାରୁ ତେଜି
ସୁଖନିଦ୍ରା ସୁପାତିର ଶେଜ
ମଧୁଚନ୍ଦ୍ରିକାର କ୍ଳାନ୍ତି
ତନ୍ଦ୍ରାବଶ ଭାବକୁ ଲିଭାଇ ।

ତନ୍ୱୀ ତରୁଣୀଙ୍କ ଗଣ୍ଡୁ
ଅବା ଓଷ୍ଠାଧାରୁ
ଲିଭିନାହିଁ ଏ ଅବଧି
ନୈଶ ପ୍ରସାଧନ,
ଚଞ୍ଚଳତା ନାହିଁ ତାଙ୍କ
ବିଲୋଳ ଲୋଚନେ
ଶ୍ରାନ୍ତି ଚିହ୍ନ ଲିଭିନାହିଁ
ନିଟୋଳ ବଦନୁ
ଜଡ଼ିକାନ୍ତ ତନୁ
କାନ୍ଧେ କର ଥାପି
ଆବେଗ ବିଧୁର ହୃଦେ
ରହିଛନ୍ତି ଚାହିଁ ।”

କବି ମଧ୍ୟ ଚନ୍ଦ୍ରଭାଗାର ସେଇ ଅପାସୋରା ସୂର୍ଯ୍ୟୋଦୟକୁ ବିମୁଗ୍ଧ ନୟନରେ ଚାହିଁ ରହିଛନ୍ତି । “ବାଳରବି କର”ରେ “ବନଭୁଇଁ-ସାଗର-ଅମ୍ବର, ଶୁଭ୍ର ଆବରଣେ ସର୍ବେ ହୋଇଲେ ଭାସ୍ୱର । “ଜଳେ ସ୍ଥଳେ ଆକାଶରେ ଆଲୋକର ନୃତ୍ୟ କଲ୍ଲୋଳର ତାଳେ ତାଳେ” ଚନ୍ଦ୍ରଭାଗାର ନୀଳ ଜଳରାଶି ସମୟ ସହିତ ତାଳ ଦେଇ ବିଭିନ୍ନ ରଂଗରେ ରୂପାୟିତ ହୋଇ ଉଠୁଛି ।

“ଜଳଜୀବଙ୍କର ଖେଳା
କାହିଁ କାହିଁ ଲମ୍ଫିଦିଏ ଶିଶୁମୋର,
ଲାଗିଲାଣି ଗହଳ ଚହଳ
ତଟ ଦେଶେ ଚା ଦୋକାନରେ
ଉଠିଲାଣି ଧୂଆଁର କୁଣ୍ଡଳ
ବଢ଼ିଲାଣି ଯାତ୍ରୀଙ୍କର ଭିଡ଼୍
ଯନ୍ତ୍ରଯାନର ଶୁଣିର
ଜନ କୋଳାହଳ
ଚନ୍ଦ୍ରଭାଗା ତୀର ।।

ସମୁଦ୍ର ଗର୍ଭକୁ ଓହ୍ଲାଇ ଯାଇଛନ୍ତି ସ୍ନାନାଭିଳାଷୀ ବହୁ ନରନାରୀ । ସ୍ନାନରତା ତରୁଣୀମାନଙ୍କୁ ଦେଖି ।

"ପ୍ରବୃତ୍ତି ବିକଳ
ପୁରୁଷର ଡ଼ାହାଣିଆ ଆଖି
ଚରିଯାଏ ନାରୀ ଯଉବନ
ମାଡ଼ିଆସେ ଉତ୍ତାଳ ଲହରୀ
ବେଗେ ଭିଡ଼େ ଯାନ୍ତି ଅପସରି
ଭୀରୁ ନିତମ୍ବିନୀ
ହୁଇର ବନ୍ଦିନୀ
ଦୁଷ୍ଟ ଢ଼େଉ କୋଳେ
ସିକ୍ତବାସେ ଫୁଟିଦିଶେ
ସୁକୋମଳ ଅପଘନ
ହୁଏ ନତ ଅରୁଣିତ
ସୁଷମ ବଦନ ।"

ତାହାରି ସହିତ ମଧ କବି ଦେଖିଛନ୍ତି "ଜୀବନର ଅନ୍ୟନାମ ଜୀବନ ଯନ୍ତ୍ରଣା" ମତ୍ସ୍ୟଜୀବି ନୋଳିଆ ଯାଏ ସମୁଦ୍ର ଗର୍ଭକୁ ମାଛମାରିବାକୁ ।

"କ୍ଷୀଣବପୁ ମଧ୍ୟେ ଧରି ଅମାପ ସାହସ
ନମାନି ଝଡ଼ ବରଷା ବିପଦ ଆପଦ
ଅତଳ ଓ ଅଶାନ୍ତ ସମୁଦ୍ରେ
ଆତଯାତ ହୁଏ ବାରମାସ
ସାଉକାର ଯନ୍ତ୍ରତରୀ
ଖାଇବା ପତରୁ ଭାତ ନିଏ ହରି ।"

ନୋଳିଆଣିଟି "ଜଳକା ପରି ଚାହୁଁଚି ଭାଗ୍ୟକୁ ଆଦରି" "କାନିରୁ ଫିଟାଇ, ଖଣ୍ଡେ ଖଣ୍ଡେ ବାସି ରୁଟି ଗୁଞ୍ଜି ଦେଲା ।

"ପିଲାଙ୍କର ଶିରାଳ ଓ ଟାଆଁସା ହାତରେ
ନିଜେ ଧରି ଖଣ୍ଡେ ପୋଡ଼ା ରୁଟି
ଥନ ଭାଙ୍ଗି ଦେଲା କ୍ଷୀର କଅଁଳା ପିଲାରେ ।"

* * * *

"ଯାତ୍ରୀମେଳେ ଭିଗମାଗେ ଭିକାରୁଣୀ ବୁଢ଼ୀ
ଥର ଥର ହାତକୁ ବଢ଼ାଇ

ପାଇଲେ ସେ କିଛି
ଦାତାମୁଣ୍ଡେ ଲଦି ଦିଏ କଲ୍ୟାଣ ପାହାଡ଼ ।"

ଏ ଦୃଶ୍ୟ କବିଙ୍କ ହୃଦୟରେ ଭାବାନ୍ତର ସୃଷ୍ଟି କରିଛି । ସେ ଫେରିଯାଇଛନ୍ତି ଅତୀତକୁ କି ଥିଲା ଏ ଦେଶ କି ହୋଇଛି ଆଜ ।" ଏହି ଚନ୍ଦ୍ରଭାଗା ତୀର କଣ ନ ଦେଖିଛି । ପ୍ରାଚୀ, କୁଶଭଦ୍ରା ଓ ଚିତ୍ତୋତ୍ପଳା ନଦୀ ସଂଗମରେ ଏଠାରେ ଅବସ୍ଥିତ ଥିଲା ଚାରିତ୍ର ବନ୍ଦର । ସାଧବ ପୁଅର ବୋଇତ ବଣିଜରେ ଏ ଦେଶ ଧନ୍ୟ ଧାନ୍ୟରେ ପୁରି ଉଠୁଥିଲା । ବିଶ୍ୱ ପ୍ରସିଦ୍ଧ କୋଣାର୍କ ମନ୍ଦିର ମଥା ଟେକି ଓଡ଼ିଆ ଶିଳ୍ପ କଳାର ଜୟଗାନ କରୁଥିଲା  ଆଜି ସେ ଚିତ୍ରୋତ୍ପଳା ନଦୀ ଅନ୍ତର୍ହିତ, ଚାରିତ୍ର୍ୟ ବନ୍ଦର ଇତିହାସ ହୋଇଯାଇଛି, କୋଣାର୍କର ଭଗ୍ନାବଶେଷ ଉତ୍କଳର ସମ୍ରାଟ ନରସିଂହ ଦେବଙ୍କର କୀର୍ତ୍ତିକୁ ଖାଲି ସ୍ମରଣ କରାଇ ଦେଉଛି ।

" ସୁମରି ସୁମରି ହୃତ ଗଇରବ ଗାଥା
ବିଳପଇ ଚନ୍ଦ୍ରଭାଗାର ଅତୃପ୍ତ ଆତ୍ମା ।
ଏହିଠାରେ କବିଙ୍କର ପଂକ୍ତି ମନେ ପଡ଼ିଯାଏ
"ଅତୀତର ତୁହି ସାକ୍ଷୀ ପୁରାତନ
ଦେଖିଲୁ ନରର ଉତ୍‌ଥାନ ପତନ ।"

କବି ପୁଣି ଭାବରାଜ୍ୟରୁ  ବାସ୍ତବତାମକୁ ଫେରି ଆସି ଦେଖିଲେ ମଧ୍ୟାହ୍ନ ଗଡ଼ି ଗଲାଣି । ଚନ୍ଦ୍ରଭାଗା ତୀରର ଝାଉଁବଣରେ ଲାଗିଛି ବଣ ଭୋଜିର ଭିଡ଼ । ନାନା ସ୍ୱାଦିଷ୍ଟ ଆହାରର ଚାଲିଛି ଆୟୋଜନ । ସେହି ବାସ୍ନାରେ ଘୂରି ବୁଲୁଛନ୍ତି ପଲ ପଲ କୁକୁର ଚାଟିବାକୁ ଅଇଁଠା ପତର । କଙ୍କାଳ ସାର ଭୋକିଲା ପିଲାଟିଏ ମଧ୍ୟ ସାହାଯ୍ୟ କରୁଛି ପିକନିକ୍‌ବାଲାଙ୍କୁ କିଛି ଖାଦ୍ୟ ଆଶାରେ । ଗୋଟିଏ ମିଷ୍ଟାନ୍ନ ପୋଟଳକୁ ଜଣେ ତରୁଣ ଫିଙ୍ଗି ଦେବାରୁ ପିଲାଟି ଧାଇଁଯାଇ ତାକୁ ଧରିବା କ୍ଷଣି ଗୋଟିଏ କୁକୁର ତା ଗୋଡ଼କୁ କାମୁଡ଼ି ରକ୍ତାକ୍ତ କରି ପୋଟଳଟିକୁ ଝାମ୍ପିନେଲା । ବାଳକଟିର କରୁଣ କ୍ରନ୍ଦନରେ କବି ମର୍ମାହତ ହୋଇ ଭାବୁଛନ୍ତି --

"ଏ ଦାରୁଣ ଦଶା କିବା
ଖାରବେଳ ଦେଶ ଶିଶୁ କପାଳ ଲିଖନ ?"
କବି ବ୍ୟଥିତ ଚିତ୍ତରେ ପ୍ରକାଶ କରିଛନ୍ତି ।
" ଇତିହାସେ ବୀରଜାତି ରୂପେ ପରଚିତ
ଏବେ ତା ସନ୍ତାନ, କାପୁରୁଷ ଭାଗ୍ୟହୀନ

ହରାଇଛି ତାର ସ୍ୱାଭିମାନ ।"

କାହିଁକି ଆଜି ଏ ବୀର ଜାତିର ଅଧପତନ ? ଓଡ଼ିଶା ଭୂଇଁରେ ସମଗ୍ର ଦେଶର ସମ୍ପଦ ଭରି ରହିଛି । ତଥାପି କାହିଁକି ଆଜି ଓଡ଼ିଆ ଦରିଦ୍ର ? କବି ଆତ୍ମଚିନ୍ତନ କରିଛନ୍ତି ।

"ଜୀବନର ଅନ୍ୟ ନାମ ଅଟଇ ସଂଗ୍ରାମ
ହୁଅଇ ସଫଳ ତାହା ଅନ୍ତରରେ ଥିଲେ ତାର ବିଚାର,ସାହସ
ଧୈର୍ଯ୍ୟକର୍ମ, ପ୍ରେମ, ଉଦ୍ୟମ ଆଦର୍ଶ ।
ସ୍ୱାଭିମାନୀ ଜାତି, ଦେଶପ୍ରେମୀ ବୀର
ଅନୁକୂଳେ ଅବା ପ୍ରତିକୂଳେ ସମ୍ଭାଳିତେ କରିଲେ ସମର ସେଇ ଜାତି ପ୍ରିୟ ଭାଗ୍ୟ ଲକ୍ଷ୍ମଣଙ୍କର

ଆଜି କର୍ମବିମୁଖ ପରମୁଖାପେକ୍ଷୀ ଓଡ଼ିଆ ଜାତି ତାର ସେ ସ୍ୱାଭିମାନ ଭୁଲି ଯାଇଛି । ମିଛ ବଡ଼ିମା ଦେଖାଇ ଉଚ୍ଛବ ପାଳୁଛି, ବୋଇତ ବନ୍ଦାଣର ପ୍ରହସନ କରୁଛି, କିନ୍ତୁ ଭିକାରି ପାଲଟି ଯାଇଛି ।

" ମୁଣ୍ଡପାତି ଅବା ପଦ ଧରି
ପାଇଲେ ସେ କିଛି ଦାନ ଭାବେ ଭାଗ୍ୟବାନ
ଜୀବନ ତା ଧନ୍ୟ ।"

ତାହାର ଏ ମାନସିକ ବୈକଲ୍ୟକୁ ଆୟୁଧ କରି ଭୋକିଲା କୁକୁରକୁ ହାଡ଼ଖଣ୍ଡେ ଫିଙ୍ଗିଦେଲା ପରି ଜନ ପ୍ରତିନିଧି  ଜାତିର କାଙ୍ଗାଳ ମଣିଷକୁ ଆହାର ଲୋଭ ଦେଖାଇ ନିରଂକୁଶ ଶାସନ ଜାରି ରଖିଛନ୍ତି । ଭାରତର ଅନ୍ୟ ରାଜ୍ୟମାନେ ଯେତେବେଳେ ଉନ୍ନତିର ଶିଖର ଦେଶରେ ପହଞ୍ଚିବା ପାଇଁ ପ୍ରତିଯୋଗିତାରେ ଲାଗି ପଡ଼ିଛନ୍ତି ଏ ଜାତିର ଭାଗ୍ୟ ଯେଉଁ ତିମିରେ କୁ ସେଇ ତିମିରେ, ତେଣୁ କବି କହିଛନ୍ତି ।

" କରେ ମୁଁ ମିନତି
ଦେ କିଛି ସାମର୍ଥ୍ୟ ଓ ବୁଦ୍ଧି
ଏ ପତିତ ଜାତି
ଗଢ଼ିବାକୁ ଛାୟାଛନ୍ନ ଭବିଷ୍ୟତ
ସମୃଦ୍ଧି ଓ ଜ୍ୟୋତିଷ୍ମନ୍ତି ।"

ଧନ୍ୟ କବି । ଧନ୍ୟ ତମ ଦେଶପ୍ରାଣର ମହନୀୟତା । ପଣ୍ଡିତ ନୀଳକଣ୍ଠଙ୍କର "କୋଣାର୍କେ" କାବ୍ୟ ସମ୍ବନ୍ଧରେ କବି ମାୟାଧର ମାନସିଂ ଲେଖିଥିଲେ ରାଜନୀତିଜ୍ଞ ନୀଳକଂଠ କାଆଲି ପରି ଜନମାନସରୁ ହଜିଯିବେ କିନ୍ତୁ "କୋଣାର୍କ"ର କବି ନୀଳକଣ୍ଠଙ୍କର ମୃତ୍ୟୁ ନାହିଁ । ସେହିପରି

" କାଳର କପୋଳ ତଳେ ଲକ୍ଷ୍ମୀଧରଙ୍କର
ସାହିତ୍ୟର କୃତି ସବୁ
ଶୋଭୁଥିବ ଗ୍ରନ୍ଥ ମନ୍ଦିରରେ୍ୟ
"ସକାଳର ଚନ୍ଦ୍ରଭାଗା" କିନ୍ତୁ
ରହିଥିବ ବିଧ୍ୱସ୍ତ ଅନ୍ତରେ ।"

ହେରାଗୋହରି ସାହି, ପୁରୀ



# କବି ଲକ୍ଷ୍ମୀଧର ଦାସଙ୍କ କାବ୍ୟଯାତ୍ରା ଏକ ଅଲେଖ୍ୟ

ହରିହର ମିଶ୍ର

ଡକ୍ଟର ଲକ୍ଷ୍ମୀଧର ଦାସ ମୋର ସମସାମୟିକ ଜଣେ ସର୍ଜନଶୀଳ ସାହିତ୍ୟିକ । ସାହିତ୍ୟର ବହୁବିଧ ବିଭାବକୁ ଦେଇ ତାଙ୍କର ସୃଷ୍ଟି ପ୍ରତିଭା ବିଳସିତ ଓ ବିକଶିତ । ତାଙ୍କର ଜନ୍ମ ୧୯୪୦ ମସିହା ଅଗଷ୍ଟ ପହିଲା ବୋଲି ଶିକ୍ଷା କାଗାଜାତରେ ଲେଖାଥିଲା ବେଳେ ପୁରୀ ଜିଲ୍ଲା ଗୋପ ଥାନାର ଓଟର ଶାସନରେ ଜୁନ୍ ୧୨.୧୯୩୯ ମସିହାରେ ସେ ଜନ୍ମ ହୋଇଥିବା ଜଣାପଡ଼ିଛି । ଏହି ହେତୁ ତାଙ୍କର ୭୫ ବର୍ଷ ପୂରଣ ହେବାକୁ ଯାଉଛି । (ପଞ୍ଚସ୍ତରି ରନ୍ କରିଛନ୍ତି ସିନା କିନ୍ତୁ କ୍ରିକେଟ କ୍ରୀଜ୍‌ରେ ବହୁ ସମୟ ବ୍ୟାଟିଙ୍ଗ୍‌ରେ ରହିଲା ଭଳି ଲାଗୁଛି । ଓଡ଼ିଆ, ରାଜନୀତି ବିଜ୍ଞାନ, ଇତିହାସରେ ସ୍ନାତକୋତ୍ତର ଡିଗ୍ରୀ ଲାଭ କରିବାରେ ସେ ଟ୍ରିପଲ୍ ସେଂଚୁରୀ ଲାଭ କରିଥିବା ଜଣେ ପୋଖତ ଖେଳାଳୀ । ଛାତ୍ର ଛାତ୍ରୀମାନେ ତାଙ୍କୁ ସେହେବାଗ୍‌ଙ୍କ ସହିତ ତୁଳନା କରନ୍ତି କିବା ବ୍ରିୟେନ୍ ଲାମ !)

ସେ ଜଣେ ଘରୋଇ ମଣିଷ । ଅଭିଜାତ ବଂଶଜ ଅଥଚ ଜୀବନ ସଂଗ୍ରାମୀ ପୁରୁଷ ଗ୍ରାମମଙ୍ଗଳ ସ୍କୁଲରେ ସେବକ, ସି.ଟି.ବି.ଏଡ୍ ପାଇ, ପ୍ରାଥମିକ, ମାଧ୍ୟମିକ, ସ୍ତରରେ ଶିକ୍ଷାଦାନ କରି ସେ ମହାବିଦ୍ୟାଳୟର ସର୍ବୋଚ୍ଚ ଶ୍ରେଣୀରେ ଶିକ୍ଷାଦାନ କରିଛନ୍ତି । ସେ ନିଜେ ଗବେଷକ ଓ ଗବେଷଣାର ଦିଗ୍‌ଦର୍ଶକ, କାବ୍ୟ, ଉପନ୍ୟାସ, ତୁଳାନାତ୍ମକ ସାହିତ୍ୟ ଉପରେ ତାଙ୍କର ଗଭୀର ଅଭିନିବେଶ ବିସ୍ମୟକର ମନେହୁଏ । ପୂର୍ବାଞ୍ଚଳ ଭାଷାର ସେ ଜଣେ ତତ୍ତ୍ୱବିଦ୍ । ଏ ଦୃଷ୍ଟିରୁ ଅନୁବାଦକ ଭାବେ ସେ ନିଜକୁ ପରିଚିତ କରାଇ ପାରିଛନ୍ତି । ସଂପାଦନା, ଶିକ୍ଷା ପୁସ୍ତକ ସଂକଳନ କ୍ଷେତ୍ରରେ ତାଙ୍କର ଉପଯୋଗିତା କର୍ତ୍ତୃପକ୍ଷଙ୍କ ନିକଟରେ ସର୍ବଦା ରହିଆସିଛି । ଜୁଲାଇ ୩୧.୧୯୯୮ରେ ସେବାନିବୃତ୍ତ ହେଲା ପରେ ତାଙ୍କର ସାହିତ୍ୟନୁରାଗ ବଳବତ୍ତର ରହିଛି । ବଂକିମ ଚଟାର୍ଜୀ ଓ ଫକୀରମୋହନଙ୍କ କଥା ସାହିତ୍ୟର ସାଦୃଶ୍ୟବୋଧ ତଥା ଚରିତ୍ର ଚିତ୍ରଣକୁ ନେଇ ସେ ଗବେଷଣା ସଂଦର୍ଭ ଲେଖିଛନ୍ତି ।

ଏହି ପୃଷ୍ଠଭୂମି ଉପରେ ଯତ୍‌କିଂଚିତ କବିତା ରଚନା କରି ସେ ଅପୂର୍ବ ପ୍ରତିଭାର ପରିଚୟ ଦିଅନ୍ତି । ବିଶେଷ କରି ତାଙ୍କର ଦୀର୍ଘ କବିତା 'ସକାଳର ଚନ୍ଦ୍ରଭାଗା' ଓଡ଼ିଆ କାବ୍ୟକ୍ଷେତ୍ରରେ ଏକ ଅମ୍ଳାନ କୃତି । ଏପରି ଦୀର୍ଘ କବିତା

ଆଧୁନିକ କାବ୍ୟ କବିତାର ପରଂପରାରେ ପରିପୁଷ୍ଟ ଯେତିକି, ତାର ନୂତନ ସୃଜନୀର ସୌନ୍ଦର୍ଯ୍ୟବୋଧରେ ସେତିକି ନାଂଦନିକ ଅଭିରଚିର ପରିଚୟକ । କବିବର ରାଧାନାଥ ରାୟ ଖଣ୍ଡକାବ୍ୟରେ ଯେଉଁଭଳି ପ୍ରଥାଗତ ବିଷୟବସ୍ତୁର ସଂରଚନା କରିଛନ୍ତି, ସେଭଳି ସଂରଚନା ତାଙ୍କର 'ଚିଲିକା' କବିତାରେ ନଥିବାରୁ ତାହା ଦୀର୍ଘ କବିତା ପଦବାଚ୍ୟ ନଂଦ କିଶୋର ବଳଙ୍କ ନିର୍ଝରିଣୀ, ନୀଳକଣ୍ଠ ଦାସଙ୍କର ରାମଚଣ୍ଡୀଠାରେ ରାତି ଓ ସକାଳ, ଗୋପବଂଧୁଙ୍କର ଧର୍ମପଦ, ସଚ୍ଚି ରାଉତରାୟଙ୍କ ବାଜିରାଉତ, ଗୁରୁପ୍ରସାଦ ମହାନ୍ତିଙ୍କର କାଳପୁରୁଷ, ରମାକାନ୍ତ ରଥଙ୍କର ବାଘ ଶିକାର, ଅନନ୍ତ ଶୟନ, ଶ୍ରୀରାଧା, ଶ୍ରୀପଳାତକ, ସୀମାନ୍ତ ବାସ, ଜାହାଜ ଆସୁଛି, କବି ସୀତାକାନ୍ତ ମହାପାତ୍ରଙ୍କର 'ଅଷ୍ଟପଦୀ' ହର ପ୍ରସାଦ ଦାସଙ୍କର ଅପାର୍ଥିବ ପ୍ରେମକବିତା, ପ୍ରତିଭା ଶତପଥୀଙ୍କର 'ଶବରୀ' ରବି ସିଂହଙ୍କ 'ଲାଲ ପାଗୋଡ଼ାର ପ୍ରେତ' କବି ପ୍ରସନ୍ନ କୁମାର ମିଶ୍ରଙ୍କର 'ଧର୍ମ ପଦର ଗାଥା' ମୋର ଶଙ୍ଖନାଭି, ଦର୍ପଣଶିଳା, ଶବ୍ଦ ଏକାଏକା ଏକତ୍ର, ଶୟନ ପ୍ରତିମା ଭଳି ଅନେକ କବିଙ୍କର ଦୀର୍ଘ କବିତାର ଶିଳ୍ପକର୍ମ ଏହାକୁ ଗାଥା କବିତା ଓ ଖଣ୍ଡ କାବ୍ୟ ଠାରୁ ଭିନ୍ନ କରି ଗଢ଼ିଛି । ଏହି ପରଂପରାର ଆଂଗିକକୁ ଦେଇ ମୁକ୍ତଶୈଳୀରେ ତଥା ଅମିତ୍ରାକ୍ଷର ଛନ୍ଦରେ ଲେଖା "ସକାଳର ଚନ୍ଦ୍ରଭାଗା" ସ୍ୱତନ୍ତ୍ର ଶିଳାରୀତିର ସମନ୍ୱିତ ଚେତନା ପ୍ରବାହରେ ବେଶ୍ ଅଗ୍ରସର ହୋଇଛି । ଶୁଦ୍ଧ ସୌନ୍ଦର୍ଯ୍ୟବୋଧ ସହିତ ଉତ୍କଳର ଐତିହ୍ୟ ଚେତନା ମିଶି ଏହାକୁ ଜାତିର ମହନୀୟ ଗାଥା କରି ସ୍ୱତଃ ପ୍ରବୃତ୍ତ ଭାବେ ଗଢ଼ି ତୋଳିଛି ।

କବିଙ୍କ ସ୍ମୃତି, କଳ୍ପନା ଓ ସ୍ୱପ୍ନର ବିନ୍ୟାସ ପ୍ରତି ଦୃଷ୍ଟିପାତ କଲେ ଆମେ ଅଚେତନ, ଅବଚେତନ ଓ ସଚେତନ ମାନସୀ ଲୋକର ପ୍ରାଚୀକ୍ଷେତ୍ରର ବୈଶିଷ୍ଟ୍ୟକୁ ଉପଲବ୍ଧି କରିପାରିବା । ଏହି ସ୍ମୃତି ତୀର୍ଥ ବୈଦିକ କାଳର, ମହାଭାରତ, ରାମାୟଣ କାଳ ଦେଇ ବୌଦ୍ଧ ତନ୍ତ୍ରର ପରଂପରାରେ ସିଦ୍ଧ ତଥା ଅଭିମଂତ୍ରିତ ହୋଇ ଉତ୍କଳର ନୌବାଣିଜ୍ୟ ତଥା କଳାକାରିଗରୀ, ରୀତି,ନୀତି, ପ୍ରଥା ଓ ଜୀବନ ଧାରାର ନିର୍ଯାସ ପାଲଟିଛି । ବ୍ୟକ୍ତି ଓ ଜାତି ଏହି ଜୀବନଧାରେ ବଂଚି ଆସିଛନ୍ତି ଏପର୍ଯ୍ୟନ୍ତ ।

ନୀଳକଣ୍ଠ ଦାସଙ୍କ କବିତାର ଐତିହ୍ୟ ଚେତନାରେ ସମସାୟିକ ଜାତୀୟତା ବୋଧ, ସଚ୍ଚିବାବୁଙ୍କ ବର୍ଣ୍ଣନାରେ ବୈପ୍ଳବିକ ପରିବର୍ତ୍ତନର ଧାରା, ରବି ସିଂହଙ୍କ ଦୃଷ୍ଟିରେ ପ୍ରତିବାଦର ଚିତ୍ର, ଗୁରୁବାବୁ କାଳପୁରୁଷରେ ମହାଯୁଦ୍ଧ ପରବର୍ତ୍ତୀ ଅନିକେତ ବୋଧ ଓ ଛିନ୍ନମୂଳ ଜୀନର ଅବକ୍ଷୟୀ ଚିତ୍ର ମିଥ୍ ଗୁଡ଼ିକର ତତ୍କାଳିନ ସାଦୃଶ୍ୟକୁ

ପ୍ରତୀକିତ କରିଥିଲା । କିନ୍ତୁ ଗୋପବଂଧୁଙ୍କର ସର୍ବକାଳୀନ ବାର୍ତ୍ତା ଥିଲା ବ୍ୟକ୍ତିର ଉତ୍ସର୍ଗରେ ସମଷ୍ଟିର ଅଭ୍ୟୁଦୟ ହେବାର ଚିତ୍ର । ଲକ୍ଷ୍ମୀଧର ବାବୁଙ୍କ ଭୁୟୋଦର୍ଶନ ବା ସ୍ୱପ୍ନ ସେହି ପରଂପରାକୁ ଆଦର୍ଶ ମନେ କରିଅଛି । ଧର୍ମପଦ ଏଠି ଉଭେଇ ଯାଇଛି । କେଉଁଠି –

"ଝଡ଼ବେଗେ ହେଲା ଅନ୍ତର୍ଧାନ
ମହାସିନ୍ଧୁ ଉତ୍ତାଳ ତରଙ୍ଗେ
ଝାସଦେଇ ହୋଇଗଲା ଲୀନ
ଗଣ ପାଇଁ ଜଣ
ଜାତି ପାଇଁ ବ୍ୟକ୍ତିର ଆତ୍ମଦାନ
ଆଦର୍ଶର ବିରଳ ଦୃଷ୍ଟାନ୍ତ ।"

ଗୋପବନ୍ଧୁଙ୍କର ଚିରନ୍ତନ ଦର୍ଶନ ଥିଲା ଠିକ୍ ଅନୁରୂପ । ଧର୍ମପଦରେ ଗୋପବନ୍ଧୁ କହନ୍ତି-

ଏକର ବିନାଶେ ଅନେକ ପ୍ରକାଶେ
ବିଶ୍ୱର ଏ ନିତ୍ୟବିଧି
ଏକ ଗଲେ କ୍ଷୟ ଅନେକ ଉଦୟ
ଅନେକ ଏକର ସିଦ୍ଧି ।" (ଧର୍ମପଦ)

କିନ୍ତୁ ଆଦର୍ଶବୋଧରେ ନିଜେ ବାସ୍ତବ ବୋଧକୁ ଭାରାକ୍ରାନ୍ତ କରି ନାହାନ୍ତି କବି । ସେ ତାଙ୍କର ଅନୁଭବ ପ୍ରତି ଏକନିଷ୍ଠ ହୋଇ କବିତାରେ ଆନ୍ତରିକତା ପ୍ରଦର୍ଶନ କରିଛନ୍ତି । ଏ ଆନ୍ତରିକତା ତାଙ୍କର ବାସ୍ତବ ବୋଧକୁ କଳ୍ପନାରେ ଅନୁରଂଜିତ କରି ଏକ ଶକ୍ତିଶାଳୀ କବିତ୍ୱର ନିଦର୍ଶନ ପ୍ରଦାନ କରିଛି । ନୀଳକଣ୍ଠଙ୍କ ଭଳି ଶିଶୁ ମେଳରେ ଶିଶୁ, ରାଧାନାଥଙ୍କ ଭଳି ରୂପ ବର୍ଣ୍ଣନାରେ ଉଚ୍ଛ୍ୱସିତ ଆବେଗ ତାଙ୍କ କଳ୍ପନାର ଅନୁସଂଗ ଭାବରେ ଐତିହ୍ୟର ବଣ୍ଡାଳିରେ ବିଭୁଷିତ ହୋଇଛି । ଏହି ଐତିହ୍ୟବୋଧ ତାଙ୍କୁ ଅତୀତମୁଖୀ କେବଳ କରିନାହିଁ । ବରଂ ପରଂପରାର ସାରବତ୍ତା ଅଧ୍ୟାତ୍ମର ବ୍ରହ୍ମ ସ୍ୱାଦ ଚଖେଇ ଦେଇଛି ।

ତୀବ୍ର ବିରହେ ଆସିବ
ପାଖେ ଅତି ପାଖେ
ତୋର ସ୍ନିଗ୍ଧ ନୀଳରଂଗ ମୋହ
ନୀଳସ୍ପର୍ଶ, ନିବିଡ଼ ନୀଳ ଋହାଣି

ମାଟିଠାରୁ ଲୋଭନୀୟ
ଆକାଶରୁ ଶ୍ରେୟ-ଅତିଶ୍ରେୟଃ
ନାଭିକମଳରୁ ସୃତି ଫଗୁଆକୁ ଫେଡ଼ି
ଦେଖିବି ନିରୀକ୍ଷି ଉଆଁସ ଅନ୍ଧାରେ
ଶତଶତ ଚଂଦ୍ରୋଦୟି ଶୋଭା
ଇନ୍ଦ୍ରୟରେ ଅତୀନ୍ଦ୍ରିୟ ପ୍ରଭା
ପ୍ରିୟତମ !
ସକାଳର ଘରୁ ଚନ୍ଦ୍ରଭାଗା ।

'ପ୍ରିୟତମା' ସଂବୋଧନରେ ଶବ୍ଦ ଏଠି ଗଢ଼ିଛି ଚିଂବନର ଚୁଂବକୀୟ କାବ୍ୟଭାଷା । ସତେ ଅବା ଯାହା କିଛି ନୈତିକତାର ପ୍ରଦର୍ଶନ କବି କାବ୍ୟକୌଶଳରେ ଗୁଂଫିତ କରିଛନ୍ତି, ତାହା କାନ୍ତା ସମ୍ମିତ ଉପଦେଶ ପରି ମଧୁମୟ ।

କବିଙ୍କର ପ୍ରଗଲ୍‌ଭତା ବା ରୋମାଣ୍ଟିକ୍ ଆବେଗ ବୋଲି ଯିଏ ଯେତେ ଏହାର ଶୈଳୀକୁ ନାକଚ କରିପାରନ୍ତି କିନ୍ତୁ କବିର ବ୍ୟକ୍ତିଗତ ଅନୁଭୂତିର ବାସ୍ତବତା ଉପରେ ଜାତିର ଅତଳ ତଳ ଚେତନାକୁ ରୂପଦେବା ପାଇଁ ଅନ୍ୟ କାବ୍ୟକୌଶଳ ଅକୁଳାଣ ମନେ ହୁଅନ୍ତା ନିଶ୍ଚୟ ।

ଏପରି ମନ୍ତବ୍ୟ ଦେଲାବେଳେ 'ଚିତ୍ରିତ ଚଇତି'ର ଅଳ୍ପ କେତୋଟି ପ୍ରତୀକାତ୍ମକ କ୍ଷୁଦ୍ର କବିତା ପ୍ରତି ମୁଁ ପାଠକର ଦୃଷ୍ଟି ଆପର୍ଷଣ କରିବି । ଏହା ଦୀର୍ଘ କବିତା 'ସକାଳର ଚନ୍ଦ୍ରଭାଗା'ର ଦଶବର୍ଷ ପୂର୍ବରୁ ଲେଖା ! କିଛି ସାର୍ଥକ କବିତା ରୂପ ନିର୍ଣ୍ଣୟ କରିବାର ପ୍ରୟାସ ଘଟିଥିଲା ଲକ୍ଷ୍ମୀଧର ବାବୁଙ୍କ ଦ୍ୱାରା ଚିତ୍ରିତ ଚଇତରେ କବିତା ସଂପର୍କରେ କବିଙ୍କ ସ୍ୱଗତ ମଧ୍ୟ ଏକାନ୍ତ ଉପଲବ୍ଧିର ବିଷୟ ।

କବିତା କୁହୁକିନୀ । ଏହାର କୁହୁକରେ ଭୋଳ ଓ ପ୍ରେମରେ ପାଗଳ ମଣିଷଟି ହେଉଛି କବି । କବିର ଜଗତ ପ୍ରେମାପ୍ଲୁତ ଏକ ଆନନ୍ଦମୟ ଜଗତ । ସେଥିପାଇଁ କବିତାକୁ ଖୋଜିଲେ ମିଳେ ନାହିଁ । ପୁଣି ବେଳେବେଳେ ନ ଖୋଜିଲେ ବି ଆପେ ଆପେ ଧରାଦିଏ, ପ୍ରାଣ ମନକୁ ବିହ୍ୱଳ କରେ, ହୃଦୟକୁ ବିସ୍ମୃତ କରେ ।" ବା ଏତିକି ଜଣେ ସତ୍‌କବିର ପରିଚୟ ପାଇଁ ଯଥେଷ୍ଟ । ତାର ନିଛକ ଉପଲବ୍ଧିର ଏ ନିଭୃତ୍ତ ଉଚ୍ଚାରଣ କବି ଲକ୍ଷ୍ମୀଧର ଦାସଙ୍କର । ଏତକ ଅବରୋଧ ନେଇ ସେ ପ୍ରୟୋଗବାଦ ଆଡ଼କୁ ପ୍ରଥମେ ମୁହାଁଇଥିଲେ । ସେ ନିଜେ ଜଣେ ସମାଲୋଚକ । କବି ଭିତରେ ଆପେ ଆପେ ଦେଖାଦେଇଥାଏ । କାବ୍ୟ ନିୟନ୍ତ୍ରିଣର

ଶୃଙ୍ଖଳାବୋଧ । ତାର ପ୍ରଜ୍ଞାରେ ଫୁଟି ଉଠେ ଦେଶ ବିଦେଶର କବିତାର ଘଟୁଥିବା ପରୀକ୍ଷା ଓ ପ୍ରୟୋଗ । ଲକ୍ଷ୍ମୀଧର ବାବୁ ସେ ଦିଗରେ ଆଗେଇବାକୁ ସମୟ ପାଇ ନାହାନ୍ତି କିନ୍ତୁ ସେଥିପ୍ରତି ଆଖିବୁଜି ଦଇନାହାନ୍ତି । 'ଚିତ୍ରିତ ଚଇତ' କବିତା ସଂକଳନର 'ଚଇତାଳି' କବିତାଟି ଏ ଦିଗରେ ପ୍ରଣିଧାନ ଯୋଗ୍ୟ । ଧୂସର ମୁହୂର୍ତ୍ତ । କାମନାରେ ଉଦ୍‌ଗ୍ର ଚଇତ । ଚଇତ ଚିତ୍ରିତ । ମୃତ୍ୟୁ ଓ ପ୍ରଜନ୍ମର ଆଦିରୂପ (Architype) ଏ ଚଇତ । ରୁଦ୍ର ବୈଶାଖୀର ଆବାହନରେ ଆଦିମ ସରୀସୃପ (ଡାଇନୋସୋର ଭଳି) । ଲହ ଲହ ଜିହ୍ବାରୁ ଲାଳ ଗଡେ । ଜୀବନ ମଜ୍‌ଗୁଲ୍ ହୁଏ । ଏଭଳି ଯୌବନର ଉଦ୍ଦୀପନାରେ । ଏ ଆଦିମ ସ୍ତର ଭିତରେ ଅଙ୍କୁରିତ ହୁଏ ସଭ୍ୟତାର ସାତ୍ତ୍ୱିକ ଅଭ୍ୟୁଦୟ । କିନ୍ତୁ ଭାବନାରେ ମିଳେନା । ଏହାକୁ କବିତାର ପରୀକ୍ଷାଗାରରେ ପରୀକ୍ଷା କରିବାକୁ ହୁଏ । ଶବ୍ଦର କୌତୁକୀୟ ଶକ୍ତିରୁ ଚମକାଇ ଦେବାକୁ ପଡେ । 'ବିଦାୟ ବସନ୍ତ' ରେ ଆଶା ଦିଶେ । ବିବର୍ଣ୍ଣ ବୟସରେ ବସନ୍ତର କୁହୁକ କିମିୟା ଲାଗେ । 'ବିଦାୟ' ନେଇ ବି ଦେଇ ହୁଏନା ସେ ମାୟାରୁ । ବସନ୍ତର ନିତ୍ୟ ଲୀଳଭୂମି ବାର୍ଦ୍ଧକ୍ୟର ନିର୍ମୋକକୁ ଫୋପାଡ଼ି ଯୌବନ ସଜଳ ହୋଇ ଦିଶେ । ବିଦାୟ ବେଳକୁ ବସନ୍ତ ଆଣେ ବୈପ୍ଳବିକ ଶକ୍ତି, ସେଲୀଙ୍କ କବିତାରେ ଏହି ଆହ୍ବାନ । ଆସେ "ବର୍ଷା ବିଚିତ୍ରା" ଅମାପ ଡହକ ଭିତରେ ମାଟିର ମହକ ପରିପୂର୍ଣ୍ଣ । ନିଜେ ହଜି ହଜାଇବାକୁ ହୁଏ । ସହସ୍ର ସ୍ୱପ୍ନ ନିଜର । ବର୍ଷାର ମୋହିନୀଶକ୍ତି ସଚିତ୍ର ଓ ବୈଚିତ୍ର୍ୟରେ ଭରିଦିଏ କବିର ହୃଦୟ । 'ଅନୁଚିନ୍ତା' ଆସେ । କୁହୁକୀୟ ବାସ୍ତବତାରେ ମେଣ୍ଢା ହୁଏ ଭେଣ୍ଡା ଓ ଭେଣ୍ଡା ହୁଏ, ମେଣ୍ଢା" । ଜ୍ଞାନଦେଇ ମାଲୁଣୀର କୁହୁକ ବଳରେ ବଂଚୁଥିଲା ବେଳେ ଶରଧା ବାଲିରୁ ମହାମନ୍ତ୍ର ଶୁଭେ । ବ୍ୟାକୁଳ ହୁଏ ଅନ୍ତର ଅମୃତ ଆଶାରେ । କିନ୍ତୁ ସେ ମୁକ୍ତି ମିଳେନା ଏଠି । ବରଂ ଏହି ମୁକ୍ତି ବ୍ୟାକୁଳ ସ୍ୱର ଏଠି । 'ମେଲାଣି' ମାଖ । ମୃତ୍ୟୁର ବିରୂପତା ଚଉପାଖେ ତାର ବାସ୍ତବତାରେ ମୁକ୍ତି ନଥାଏ । ଜୀବନରେ ଥାଏ ମୁକ୍ତିର ସ୍ୱାଦ । ଥାଏ ପ୍ରେମର ଆସ୍ୱାଦରେ ସେହି ଶାଶ୍ୱତ ଆନଂଦ ।

'ଯଶୋଦା' କବିତାରେ ଦୀର୍ଘକାଳ ବାହୁନନ୍ତି କବି । ଉଦ୍ଧବ ପାଖରେ ତାର ଜ୍ଞାନ ଅକୁଳାଣ ହୁଏ ମାନବୀୟ ମମତ୍ୱକୁ ମାପିବା ପାଇଁ । ଉପେକ୍ଷିତା ନାୟିକା 'ଲଳିତା' କାହିଁକି ହୋଇ ପାରେନୀ ଶ୍ରୀରାଧା ? ନାୟକର ଆଲମ୍ବନ ସେ ହୋଇପାରେନା କାହିଁକି । ଆହ୍ଲାଦିନୀ ଶକ୍ତି ? ଗୀତ ଗୋବିନ୍ଦର "ଚରୁଶୀଳେ" ସଂବୋଧନ କରୁଥିବା ଚରିତ୍ରଟି ଜୀବନକୁ ଅପୂର୍ଣ୍ଣ ମନେ କରେ ଶ୍ୟାମଙ୍କୁ ନ

ପାଇ । ସବୁ ସୌନ୍ଦର୍ଯ୍ୟର କୋଟିକମ ଥାଇ ବି ଉପେକ୍ଷିତା ହୁଏ ପ୍ରେମମୟୀ ଲଳିତା । ଏଭଳି ବିଡ଼ମ୍ବନା ଅନ୍ତହୀନ ନିଷ୍ଫଳ ପ୍ରୟାସ ଓ ବିଡ଼ମ୍ବିତ ସତ୍ୟର ପ୍ରହେଳିକା ପ୍ରତି ପାଠକର ଦୃଷ୍ଟି ଆକର୍ଷଣ କରେ ।

"ଉପେକ୍ଷିତା ଲଳିତା ଗୋ
ରହିଗଲ ଚିରଦିନ ପାଇଁ
ଅମୁହାଁ ଦେଉଳ ଏକ
ଶିଳ୍ପରାଜ୍ୟେ ହୋଇ ?

କଣ କରାଯାଇପାରେ ଅଦୃଷ୍ଟର ଏ ବିଚାରକୁ ନେଇ ? ନ୍ୟାୟ ନ ପାଇ ବି ଭାବଭୋଳ ହୁଏ କବି । ଖେଳଣା ସାଜେ ଓ ଖେଳଣା ମନେ କରି ସଂସାରକୁ ଖେଳାଏ । କବି ନଜରୁଲ୍‌ଙ୍କ ଅବୋଷ ଶିଶୁ ବା ଆମ ଭଳି  ଅଧମ ଶିଶୁ ସେ ବିଶ୍ୱପିତା ସୃଷ୍ଟି ନିୟନ୍ତାଙ୍କର ଖେଳଣା ! (ଖେଳଣା)

ଖେଳଣା ଧରି ଆମେ ଖେଳୁ । ଆମକୁ ଖେଳଣା କରି କଂଢେ଼ଇ ନଚାଏ ସୂତ୍ରଧର । ଏହି ସତ୍ୟତାକୁ ନେଇ କବି କଳ୍ପନା ଓ ସତ୍ୟର ଉଦ୍‌ଘାଟନ କରେ ।

ସେ 'ଜ୍ୱଳନର ଜ୍ୟୋତି' ନିଜେ ପାଲଟିଯାଏ କବି । ସତ୍ୟକୁ ପରୀକ୍ଷା କରିବାର ସାହସ ତଥା ସତ୍ୟକୁ ପ୍ରୟୋଗ କରିବାର ସାହସ ତାର ଲୋଡ଼ାହୁଏ । ସଳିତା ଭଳି ଜଳେ ଓ ଜାଳେ ଆଲୁଅ ଦେଖାଏ ।

କବି ଏ କବିତାରେ କହନ୍ତି -

"ବ୍ୟାପ୍ତି, ପ୍ରାପ୍ତି, ସ୍ୱସ୍ତି ମୂଳବୀଜ ଏକ ଓ ଅଭିନ୍ନ ।"

ଭ୍ରମର 'ଲକ୍ଷ୍ୟହୀନ' ହୋଇ ମଧୁ ଖୋଜେ । ସାଂପ୍ରତିକ ପରିସ୍ଥିତିରେ ଏବଂ ରାଜନୈତିକ ଚପରେ ବିଶ୍ୱକୁ ମୁଣ୍ଡାଇବା ବାସୁଳୀ ପକ୍ଷେ ବି ଅସମ୍ଭବ ।

ତେଣୁ କେଉଁ ବାଟରେ ଆଗେଇବ ଏପରି ଲକ୍ଷ୍ୟ ସ୍ଥିର ହୋଇପାରେନା ଲକ୍ଷ୍ୟହୀନ କବିତାରେ । ଅନ୍ତଃ ସଲ୍ଲିଳା ଫଲଗୁ ଭଳି ସେ କିନ୍ତୁ ମରୁତୁଲ୍ୟ ରାଶି ରାଶି ବାଲୁକା ସ୍ତୂପର ହାହାକାର ଭିତରେ ମର୍ମରୁ ଥାଏ । କବି ତା ଜାଣିପାରେ । ଦେଖି ପାରେନା । (ଲକ୍ଷ୍ୟହୀନ) ଜୁଆର ଉଠେ ଫଲ୍‌ଗୁରେ । କିନ୍ତୁ କବି ପ୍ରଶ୍ନାକୁଳତା ଭିତରେ ଛନ୍ଦି ହୋଇ ଜଟିଳ ଜୀବନର ଅସମାଧିତ ସମସ୍ୟାର ଗୁରୁତ୍ୱ ଅନୁଭବକୁ ନିଏ । ଏହା ହିଁ ଯୁଗ ଯଂତ୍ରଣା । ଲକ୍ଷ୍ମୀଧର ବାବୁ ଏହାକୁ ବୁଝିଛନ୍ତି କିନ୍ତୁ ନିରାଶ ହୋଇ ନାହାନ୍ତି । 'ମୃତ୍ୟୁଞ୍ଜୟ' କବିତାରେ ସେ ଇହଲୋକରୁ ପରଲୋକର ସ୍ଥିତି ପ୍ରତି ଆଗ୍ରହ ପ୍ରକାଶ କରି ସତ୍ୟାଗ୍ରହୀ ହୋଇଛନ୍ତି । ଏଭଳି କାବ୍ୟ-ନୈତିକତା ହିଁ

କବିରସ ସମ୍ବଳ ହୋଇ ମାର୍ଗଦର୍ଶନ କରାଏ । ବ୍ୟକ୍ତି ଚେତନାରୁ ଗଣଚେତନାକୁ ଯିବାର କାବ୍ୟ ପରଂପରାକୁ ପୁନଃ ସଂସ୍ଥାନ କରାଇ ସେ "ବାଣୀ ବୀଣା ବାଇ ବାଇ ଗଣଗୀତି ଗାଇ ଗାଇ" ବ୍ୟକ୍ତିକୁ ଅନୁଷ୍ଠାନରେ ଥାପି ଦିଅନ୍ତି କିନ୍ତୁ ଅନୁଷ୍ଠାନ ସେ ବ୍ୟକ୍ତିକୁ ବଂଚାଏ କି ମାରେ ତାହାର ଖିଆଲ ରଖି ନାହାନ୍ତି କବି । କବି ମଧ ଯୁଗେ ଯୁଗେ ଅଧିଷ୍ଠାନ ଲାଭ କରିବାକୁ ଚାହେଁ ଏକ ମନୋରମ ମହାକାବ୍ୟ ରଚନା କରି । କେବଳ ଏତିକି କବି - କର୍ମଜୀବନ ଜଂଜାଳ ଭିତରେ ଆଉ କଣ କରିଥାନ୍ତେ କବି ଲକ୍ଷ୍ମୀଧର ?

ମାର୍କଣ୍ଡେଶ୍ୱର ସାହି

ମୋ - ୯୪୩୮୫୩୨୦୫୫



# ଶିଶୁ କବିତା ଓ ଡକ୍ଟର ଲକ୍ଷ୍ମୀଧର ଦାସ

ସତ୍ୟନାରାୟଣ ମିଶ୍ର

ଡକ୍ଟର ଲକ୍ଷ୍ମୀଧର ଦାସ ସ୍ୱର୍ଗତ ଅମରେଶ୍ୱର ଦାସଙ୍କ ଦ୍ୱିତୀୟ ପୁତ୍ର । ପୁରୀଜିଲ୍ଲା ଗୋପ ଥାନା ଅନ୍ତର୍ଗତ ଓଟର ଶାସନରେ ୧୯୪୦ ଅଗଷ୍ଟ ପହିଲାରେ ତାଙ୍କର ଜନ୍ମ । ବୃତ୍ତି ଅଧ୍ୟାପନା ଓ ପ୍ରବୃତ୍ତି କବିତା, ପ୍ରବନ୍ଧ, ଶିଶୁ ସାହିତ୍ୟ ରଚନା । ଅବସର ପରେ ମହାଶୟ ସାହିତ୍ୟିକକର୍ମରେ ସର୍ବଦା ନିଜକୁ ନିୟୋଜିତ କରିଛନ୍ତି । ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ତାଙ୍କର ସ୍ୱାଗତଯୋଗ୍ୟ ଅବଦାନ ରହିଛି । ବିଶେଷକରି ଜଣେ ପ୍ରାବନ୍ଧିକ ଭାବେ ସେ ସାହିତ୍ୟ ଜଗତରେ ଜଣାଶୁଣା । ସମାଲୋଚନା କ୍ଷେତ୍ରରେ 'ଅସମୀୟା ସାହିତ୍ୟ ପରିକ୍ରମା 'ଉପନ୍ୟାସ ତତ୍ତ୍ୱ ଓ ଅଳଙ୍କାର', ଭଞ୍ଜସାହିତ୍ୟର 'ବର୍ଣ୍ଣ ଓ ବର୍ଣ୍ଣାଳୀ' ଓ 'କର୍ମଯୋଗୀ ରାମଚନ୍ଦ୍ର' ପ୍ରଭୃତି ଉଲ୍ଲେଖ ଯୋଗ୍ୟ । ସେ କଳା, ସଂସ୍କୃତି, ସାହିତ୍ୟକୁ ଆପଣେଇ ନେଇଥିବା ମଣିଷଙ୍କ ମଧ୍ୟରେ ମଣିଷଟିଏ ଡକ୍ଟର ଦାସ ଜଣେ ଏପରି ମଣିଷ ଯେ'କି ସ୍ୱୟଂ ସବୁଜିମାରେ ମହିମାନ୍ୱିତ । 'ସକାଳର ଚନ୍ଦ୍ରଭାଗା' ତାଙ୍କର ଏକ ଦୀର୍ଘ କବିତା ସଂକଳନ । ସେଥିରେ ଯେଉଁ କାବ୍ୟିକ ଶିହରଣ ଓ ମଣିଷର ଗାଥା ସୃଷ୍ଟି ହୋଇଛି ତାହା ଜଣେ ପାଠକହିଁ କହିପାରିବ ।

ଏସବୁ ସତ୍ତ୍ୱେ ଡକ୍ଟର ଦାସଙ୍କର ଶିଶୁମାନଙ୍କ ପ୍ରତି ପ୍ରଗାଢ଼ ଶ୍ରଦ୍ଧା ରହିଥିବାର ତାଙ୍କ ଶିଶୁକବିତା ରଚନାରୁ ହିଁ ସ୍ପଷ୍ଟ ରୂପେ ଜାଣିହୁଏ । ଯଦିଓ ସେହି ଇଲାକାଟି ତାଙ୍କର କ୍ଷୁଦ୍ର ମାତ୍ର ତାଙ୍କର ରଚନାବଳୀ ନିଶ୍ଚିତରୂପେ ଶିଶୁଉପଯୋଗୀ ଏଥିରେ ସନ୍ଦେହ ନାହିଁ । ତା ଛଡ଼ା ସେ ପ୍ରାଥମିକ ବିଦ୍ୟାଳୟରୁ ଶିକ୍ଷକତା ଆରମ୍ଭ କରିଛନ୍ତି । ତେଣୁ ଶିଶୁମାନଙ୍କ ସହିତ ମିଳାମିଶା ଫଳରେ ତାଙ୍କର ଶିଶୁସାହିତ୍ୟ ରଚନା କରିବା ପାଇଁ ସେ ଖୋରାକ୍ ପାଇଥିବେ ।

ତାଙ୍କର ଋତୁ ସମ୍ବନ୍ଧିତ କବିତାମାନଙ୍କରୁ ବସନ୍ତି ଉତ୍ସବ କବିତାରେ ପିଲାଙ୍କ ମନଭରି କଥା ସେ ବର୍ଣ୍ଣନା କରିଛନ୍ତି । ସେଥିରେ ଏକ ଅଂଶ ହେଲା-

"ବଉଳ, ମଲ୍ଲୀ ଫୁଲର ଗନ୍ଧି
ଚଇତାଳି ଓ ଚଇତି ଘଳ
ମଙ୍ଗଳାପୂଜା, ଚଇତିଯୋଡା
ମନେ ଭରିବ କେତେ ଆନନ୍ଦ' ।

'ବେଙ୍ଗୁଲୀ ନାନି', 'ବିଲୁଆନନା', 'ଗୁଣ୍ଡିଚିମୂଷା', 'ଆସ ଆସହେ ପାରାଯୋଡ଼ିକ୍', 'ବରଷାରାଣୀ', 'ବଗୁଲୀରାଣୀ' କବିତା ଗୁଡ଼ିକର ବିଷୟବସ୍ତୁ ଶିଶୁର ପରିବେଶ ମଧ୍ୟରୁ ଚୟନ କରାଯାଇଥିବାରୁ ଏହା ଶିଶୁମନଲାଖି ହୋଇପାରିଛି । ସେ ମଧ୍ୟ ତାଙ୍କର କବିତା ରଚନା କଲାବେଳେ ଶିଶୁ ମନସ୍ତତ୍ୱକୁ ଠିକ୍‌ରୂପେ ପଢ଼ିପାରିଛନ୍ତି । ସେଥିନିମିତ୍ତ ସେ ହାସ୍ୟଉଦ୍ଦିପକ ଶବ୍ଦାବଳୀ ମଧ୍ୟ ବହୁକବିତାରେ ପ୍ରୟୋଗ କରିଛନ୍ତି । ତତ୍‌ସହିତ ଅନେକ ଧ୍ୱନ୍ୟାତ୍ମକ ଶବ୍ଦ ମଧ୍ୟ ଡକ୍ଟର ଦାସ କବିତାରେ ସ୍ଥାନଦେଇଛନ୍ତି । ତେଣୁ ତାଙ୍କର କବିତା 'ରଥଯାତ୍ରା'ରେ ସେ ଲେଖିଛନ୍ତି -

'ଟାଇଁଟାଇଁ ଘଣ୍ଟ ବାଜଇ
ମର୍ଦ୍ଦଳ ତାଧିନ୍ ଧିନ୍
ଝାଇଁଝଇଁ ଝାଇଁ କରତାଳର
କାହାଳିର ପେଏଁ ଧ୍ୱନି ।'

ବରଷାରାଣୀ କବିତାରେ -

'ବଉଦ ଦୋଳାରେ ଝୁଲିଝୁଲିକା
ବିଜୁଳି ହାବେଳି ମାରିମାରିକ
ଘନେ ଘଡ଼ଘଡ଼ି ବାଣ ଫୁଟାଇ
କିରଙ୍ଗେ ବରଷା ରାଣୀ ଆସଇ ।'

ଡକ୍ଟର ଦାସ ଶିଶୁ ସାହିତ୍ୟ କ୍ଷେତ୍ରରେ ବିଶେଷ ଅଗ୍ରଗତି କରିନଥିଲେ ମଧ୍ୟେ ତାଙ୍କର ଶିଶୁ ସାହିତ୍ୟର ସ୍ୱଳ୍ପାୟତନ ମଧ୍ୟରେ ସେ ଶିଶୁକୁ କେବଳ ଆନନ୍ଦପ୍ରଦାନ କରିଛନ୍ତି ତାହାନୁହେଁ ବରଂ ତା'ର ମନରାଜ୍ୟରେ ତରଙ୍ଗାୟିତ ବିଭିନ୍ନ ଭାବକୁ ସ୍ୱଷ୍ଟ ଓ ପ୍ରତିଷ୍ଠିତ ରୂପପ୍ରଦାନ କରିବା ପାଇଁ ଏକ ଅନୁକୂଳ ବାତାବରଣ ସୃଷ୍ଟି କରିପାରିଛନ୍ତି । ତାଙ୍କ କବିତା ମଧ୍ୟରେ ସେ ଅନେକ ପ୍ରେରଣା ଓ ଉପଦେଶ ଶିଶୁମାନଙ୍କ ପାଖରେ ପହଞ୍ଚେଇ ପାରିଛନ୍ତି ।

ତାଙ୍କର 'କିଏ ନୁହେଁ ବଡ଼ସାନ' କବିତାରେ ସେ ଲେଖିଛନ୍ତି-

"ଧୂଳି ବାଲିମେଳେ ଥିଲେ ମିଠାକଣା
ପିମ୍ପୁଡ଼ି ଆଣଇ ଧରି
ହାତୀକେଡେବଡ ବଳବାନ ଜୀବ
ତାହାକି ପାରଇ କରି ।'

ଶିଶୁ ମନରେ ସୌନ୍ଦର୍ଯ୍ୟବୋଧ ଭରିଦେବାପାଇଁ ଡକ୍ଟର ଦାସଙ୍କ କବିତା ବେଶ ଅଗ୍ରଣୀ । ତା'ଛଡ଼ା କବିଙ୍କର 'ଗୁଡ଼ି' କବିତାଟିରେ ଶିଶୁଟିର ମନୋଭାବର ସେ ପରିଚୟ ଦେଇଛନ୍ତି । ଶିଶୁଟିଏ ସରଗ ରାଇଜ କଥା ଜାଣିବାକୁ ଆଗ୍ରହୀ ହୋଇଛି ।

ଅଜଣାରାଇଜ ବୁଲି ବୁଲି ସେ ଯେଉଁକାହାଣୀ ଶିକ୍ଷାକରିବ ତାକୁ ପୁଣି ଆସି ତା'ଦୁନିଆରେ ବାଣ୍ଟିବାକୁ  ଇଛା । କବିତାରେ ଗୋଟିଏ ଅଂଶ ହେଲା-

'ସରଗ ରାଇଜେ ବନ୍ଧୁ ବାନ୍ଧିବି
ନୂଆନୂଆ କଥାମାନ ଜାଣିବି
ଅଜଣା ରାଇଜ କାହାଣୀପେଡ଼ି
ସମସ୍ତଙ୍କ ଆଗେ ଦେବିମୁଁ ଫେଡ଼ି ।

ପରିଶେଷରେ ମୁଁ ଏତିକି କହିବି ଯେ, ଡକ୍ଟର ଦାସଙ୍କ ଶିଶୁ କବିତାଗୁଡ଼ିକରେ ଭାଷା, ଗୀତିର ପ୍ରୟୋଗ, ଚରିତ୍ରଗଠନ ପାଇଁ ଦିଗ୍‌ଦର୍ଶନ, ପରିବେଶ ସଚେତନତା ଓ ହାସ୍ୟରସ ଥିବାରୁ ସେଗୁଡ଼ିକ ଶିଶୁ ଉପଯୋଗୀ । ପ୍ରାୟ ବିଦ୍‌ଗଧ ସାହିତ୍ୟ ରଚନା କରୁଥିବା କବିମାନେ ପ୍ରଥମେ ଶିଶୁସାହିତ୍ୟ ସୋପାନ ଦେଇ ଉପରସୋପାନକୁ ଉଠନ୍ତି ଏ କଥା ଅନେକ ଗବେଷକ କୁହନ୍ତି କିନ୍ତୁ କେହି କେହି ଶିଶୁ ସାହିତ୍ୟକୁ ଆପଣେଇ ନେଇ କୁନିକୁନି ପିଲାମାନଙ୍କ ମନଛୁଆଁ ଗପ, କବିତା, ନାଟକ, ଉପନ୍ୟାସ ସାରଜୀବନ ଲେଖି ଚାଲିଛନ୍ତି ।

ସାଧାରଣ ସମ୍ପାଦକ
ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ପରିଷଦ,
ପୁରୀ

# ଆକର୍ଷଣରୁ ଆରମ୍ଭ, ଡଃ ଲକ୍ଷ୍ମୀଧର ଦାସ ମହକରେ ବିଭୋରିତ କବି

**ଡଃ ଚାରୁବାଳା ଦାଶ**

ଜଣେ ନିଷ୍ଠାପର ବ୍ୟକ୍ତିତ୍ୱ, ସାହିତ୍ୟାନୁରାଗୀ ଓ ଆଦର୍ଶ ମଣିଷ ହେଉଛନ୍ତି କବି ଡଃ ଲକ୍ଷ୍ମୀଧର ଦାସ ମହୋଦୟ। ଜୀବନ ତାଙ୍କ ପାଖରେ ରହସ୍ୟ ନୁହେଁ ବରଂ ପ୍ରବାହମୟୀ ଧାରା। ଜୀବନରେ ପ୍ରତିଟି ମୁହୂର୍ତ୍ତର ମୂଲ୍ୟାଙ୍କନ କରି ସେ ଜଣେ ଆଦର୍ଶ ବ୍ୟକ୍ତିତ୍ୱର ଉଦାହରଣ ପାଲଟିଛନ୍ତି। ମାଟି ଉପରେ ଘାସଟିଏ ହୋଇ ଘାସ ଫୁଲକୁ ଛୁଇଁବାଟା ବଡ଼କଥା ନୁହେଁ, ବରଂ ବଡ଼କଥା ହେଉଛିତ ମାଟି ଉପରେ ଉଡ଼ି ବୁଲୁଥିବା ଛୋଟପ୍ରଜାପତିଟିଏ ହୋଇ ଆକାଶକୁ ଛୁଇଁବାର ଆସ୍ପର୍ଦ୍ଧା ରଖିବା ସ୍ରଷ୍ଟାଟିଏ ତାର ଅଦମ୍ୟ ଲାଳସାକୁ ମନ ଭିତରେ ଅବଦମିତ କରି ରଖିପାରେ ନାହିଁ। ବରଂ କଳ୍ପନା ଓ ପ୍ରବୃତ୍ତିକୁ ପାଥେୟ କରି ଅନବରତ ସଂଘର୍ଷ କରିଚାଲେ ଏହାହିଁ ପ୍ରତିପାଦିତ କରିଛନ୍ତି କବି ତାଙ୍କର ଜୀବନରେ। କଳ୍ପନା ଓ ପ୍ରବୃତ୍ତି ପରସ୍ପର ଉଭୟର ପ୍ରତିଦ୍ୱନ୍ଦୀ ନୁହଁନ୍ତି କେବଳ ଯେ ଦୃଷ୍ଟିକୋଣ ଏହି ସିଦ୍ଧାନ୍ତକୁ କବି ପ୍ରମାଣିତ କରିଛନ୍ତି ନିଜ ଜୀବନରେ। ଶୈକ୍ଷିକ ଦୃଷ୍ଟିକୋଣରୁ ନୁହେଁ ମାଦବବାଦୀ ଚେତନାଠାରୁ ସେ କିଛିପାଦ ଆଗରେ। ନିଜର ଅଖଣ୍ଡ ଅଭିଳାଷ ଓ ଅନେକ ପରିବ୍ୟାପ୍ତିର ଇଚ୍ଛାକୁ ପାଥେୟ କରି ସେ ବଢ଼ିଛନ୍ତି ଆଗକୁ। ଦୁଃଖ, ଦାରିଦ୍ର୍ୟ ସମୟ ପାଖରେ ତାଙ୍କୁ ପରାସ୍ତ କରିନି ଆଗକୁ ଚାଲିବାର ପ୍ରେରଣା ଦେଇଛି। ତାଙ୍କ ଦ୍ୱାରା ରଚିତ ଅନେକ ରଚନା ମାନଙ୍କ ମଧ୍ୟରୁ ଅଧିକାଂଶ ରଚନାରେ ଓଡ଼ିଶାର ପରମ୍ପରା, ଓଡ଼ିଆର ଐତିହ୍ୟ, ମହତ୍ତ୍ୱ ପ୍ରତିପାଦିତ ହୋଇଥିଲା ବେଳେ ଅଧିକାଂଶ କାବ୍ୟ କବିତାରେ ପ୍ରକୃତି ହିଁ ମୂଳ ଉପାଦାନ ଭାବେ ଗ୍ରହଣ କରିଛନ୍ତି। ଓଡ଼ିଆ ସାହିତ୍ୟର ଅନ୍ୟ ଅନ୍ୟ କବି ମାନଙ୍କ ଭଳି ସାହିତ୍ୟ ଭଣ୍ଡାରକୁ ଅନେକ ଆଙ୍ଗିକ ରୂପରେଖ ଓ ଆତ୍ମିକ ଭାବସଂପଦ ପ୍ରଦାନ କରିବା ପାଇଁ ସେ ସମର୍ଥ ହୋଇଛନ୍ତି। ତେଣୁ ଭବିଷ୍ୟତରେ ତାଙ୍କର ଏହି ଅର୍ନ୍ତମୁଖୀ ପରିକଳ୍ପନାର ଧାରାକୁ କେତୋଟି ପ୍ରକୃତି ଭିତ୍ତିକ କବିତାର ମୂଲ୍ୟାଙ୍କନ ମାଧ୍ୟମରେ ପାଠକ ନିକଟରେ ଉପସ୍ଥାପନ କରି ପାରିଲେ ନିଜକୁ

ସାର୍ଥକ ମଣିବି ।

ସାହିତ୍ୟ ସବୁବେଳେ ମୁକ୍ତ । କେବଳ ପାଠକଟିଏ ହିଁ ତାକୁ ଧରି ରଖିବାରେ ସମର୍ଥ । ଫୁଲସହ ବାସ୍ନାର,ଚନ୍ଦ୍ର ସହ ଜ୍ୟୋସ୍ନାର ସଂପର୍କ ଭଳି ସାହିତ୍ୟ ସହ ଜୀବନର ସଂପର୍କ । ସାହିତ୍ୟ ସବୁବେଳେ ଆମ ପାଖରେ ଅଛି, ଅବଶ୍ୟ କିଏ କେଉଁପରି ଭାବରେ କେତେବେଳେ ଯେ ତାହା ନିଜପରେ ଅନୁଭବ କରେ ତାହା ତାକୁ ହିଁ ଜଣା । କାଳେ କାଳେ ସାହିତ୍ୟର ରୂପ ରଙ୍ଗ ବଦଳିଛି ! କିନ୍ତୁ ମନମାନେ ବଦଳି ନାହାନ୍ତି । ମନରେ ଏବେବି ଆକାଶର ରଙ୍ଗଲାଗେ, ପବନରେ ଶିହରଣ ଖେଳିଯାଏ, ଜହ୍ନ ଓ ତାରା ଏବେବି ଆକର୍ଷଣୀୟ ତେବେ ଲେଖକ ଯେ କେଉଁ ଭଳି ଭାବରେ ତାକୁ ତାର ସୌନ୍ଦର୍ଯ୍ୟକୁ ଆସ୍ୱାଦନ କରେ ଏହା ତାର ମନସ୍ତତ୍ୟ ଉପରେ ନିର୍ଭର କରେ । ସାହିତ୍ୟର ରୂପରେଖ ଓ ତାହାର ପ୍ରଭାବ କଳ୍ପନା କରାଯାଇପାରେନା ମାତ୍ର ସାହିତ୍ୟର ଭାଷା ଓ ପରିସ୍ଫୁଟନ ମାନେ ବଦଳିଯାଆନ୍ତି । ସାହିତ୍ୟ ମନୋଭାବର ଅର୍ନ୍ତମୁଖୀ ପ୍ରଗତି ଓ ପରାକାଷ୍ଠାର ନମୂନାମାତ୍ରା ଦେଶକାଳପାତ୍ର ଅନୁସାରେ ସାହିତ୍ୟ ଯେପରି ପରିପୃଷ୍ଟ ବ୍ୟକ୍ତି ଚେତନାକୁ ଛୁଇଁଯାଏ । ସବୁକିଛି ପାଇବା ଭିତରୁ କିଛି ବି ନ ପାଇବା ସର୍ବୋପରି ଅନେକ କିଛି  ନପାଇବାରୁ ବହୁତ କିଛି ପାଇବାର ଉତ୍କର୍ଷତାକୁ ହିଁ ସାହିତ୍ୟ ପ୍ରତିପାଦିତ କରେ । ସେହି ମର୍ମରେ କବି ହଃ ଦାସଙ୍କର ଜନ୍ମଭୂମି ପ୍ରତି ଥିବା ଜୀବନ୍ତ ମମତ୍ୱବୋଧ ନିବିଡ଼ ପରିବାରିକ ଆତ୍ମୀୟତା ଏବଂ ନିଜର ମାଟିପ୍ରତି ଥିବା ଗଭୀର ଆକର୍ଷଣ ତାଙ୍କର ପ୍ରତିଟି କବିତାରେ ବାରି ହୋଇପଡ଼େ । ଯେପରିକି,

"ଜୀବନୀ ଚଲାପଥେ ଝଲି ଝଲି ବହୁଦୂର ମନଅଙ୍ଗନରେ
ସାଇତିଛି ଛାୟାଛନ୍ନ ସ୍ମୃତି ଶବଳ ଓ ସଜଳ କେତେ ଅନୁଭୂତି ।"

ଇତ୍ୟାଦି ପଦ୍ୟାଂଶରୁ ବୁଝାପଡ଼ିଯାଏ ତାଙ୍କର ଆନ୍ତରିକ ଶ୍ରଦ୍ଧା ନିବେଦନକୁ, ପଲ୍ଲୀ କବିତା ସଂକଳିତ କାବ୍ୟ ଗ୍ରନ୍ଥଟିରେ ଯେ କେବଳ କେତୋଟି ପଲ୍ଲୀ କବିତାକୁ ସ୍ଥାନିତ କରିଛନ୍ତି ତାହା ନୁହେଁ ବରଂ ଏଥିରେ ଅନେକ ଆଧ୍ୟାତ୍ମିକ ଧର୍ମୀ କବିତା ବଳି ଓ ଚେତନାଧର୍ମୀ ମାର୍ଗ ଦର୍ଶନ ମୂଳକ କବିତା ଗୁଡ଼ିକ ଦେଖିବାକୁ ମିଳେ । ଯାହାର ପ୍ରଭାବରେ ଏ ସମାଜ ବଦଳିଯାଇପାରେ ।

ପ୍ରକୃତିର ଉତ୍କର୍ଷତା ଏବଂ ମାନବୀୟ ଜୀବନର ଜୀବନର ଅବବୋଧ କେହି ଅଲଗା ନୁହଁନ୍ତି ବରଂ ଏକ ସାରଗର୍ଭକ ସମ୍ମିଶ୍ରଣ ତେବେ ସୃଷ୍ଟି ଆମକୁ ବହୁତ କିଛି ଦେଇଥିବା ବେଳେ ଆମେ ସୃଷ୍ଟିକୁ ଦେଇଛୁ କ'ଣ ବୋଲି ଅନେକ ବାର ପ୍ରଶ୍ନ ଉଠେ । କବି ମଧ ତାଙ୍କର କବିତା ବଳି ମାଧମରେ ମଣିଷର ମନର କଥା ଦ୍ୱନ୍ଦ ଓ ପରିତାପର କଥା ଉଲ୍ଲେଖ କରିଛନ୍ତି । ଅତଏବ ମା' ମାଟି ପ୍ରତି ଥିବା ଐତିକାନ୍ତିକ ସ୍ନେହର ପରିଣାମ ସ୍ୱରୂପ ତାଙ୍କ ସାହିତ୍ୟରେ ଜୀବନ ମାନଙ୍କର ନିଛକ ଉଦାହରଣ ମାନ ଦେଖିବାକୁ ମିଳେ । ଜୀବନ କେତେବେଳେ ତାଙ୍କ ପାଇଁ ସାହିତ୍ୟ ତ ସାହିତ୍ୟ କେତେବେଳେ ତାଙ୍କ ପାଇଁ ଜୀବନ । ତେଣୁ ବହଳ ଅନ୍ଧାର ବି ନଇଁ ଆସିଛି ତାଙ୍କ ପାଇଁ । କୁଆଁତାରା ଓଲ୍ଲାଇ ଯାଇଛି ଆକାଶର ସକାଳର ସୂଚନା ଦେବାକୁ କାଉ କା- ଆ-କା-ଆ କରି ବୋବାଇଛି ଗଛର୍ ଡାଳରେ । କସ୍ତୁରୀ ମୃଗ ଭଳି ନିଜ ଭିତରେ ବାସ୍ନାକୁ ବାରି ନ ପାରି କବି ଘୁରିବୁଲିଛନ୍ତି ରହସ୍ୟର ସନ୍ଧାନରେ । ନିତ୍ୟ, ନୂତନ, ନିଶ୍ଚଳ ନିଃଶବ୍ଦ ନଦୀମାନେ ପ୍ରବାହିତ ହୋଇଛନ୍ତି ତାଙ୍କର ଚରିପାଖେ । ପ୍ରକୃତି କୋଳରେ ରହିବା ଯେପରି ତାଙ୍କର ସହଜାତ ପ୍ରବୃତ୍ତି ହୋଇଯାଇଛି । ତେଣୁ କବି ନିଜ ଭାଷାରେ ଲେଖିଛନ୍ତି । "ଧନ୍ୟ ଧନ୍ୟ ତୁହି ନାରୀ, ଜନ୍ମମାଟି ମୋହ ଏଡ଼ି ଅଚିହ୍ନା ମାଟିକୁ କର୍ମଭୂମି ରୂପେ ବରି, ତ୍ୟାଗ ସ୍ନେହପ୍ରେମ ସାଧନା ବଳରେ ରଚୁଚୁ ତୁ ସରଗପୁରୀ" । କିଏ ଏହା ଅନୁଭବ କରିପାରେ । କବିଟିଏ ନାଁ କବି ହିଁ ଗୋଟିଏ ନାରୀ ଭିତରେ ପ୍ରକୃତିର ଅନନ୍ତ ଅସୀମ ଶୋଭାକୁ ପରଖିନିଏ । ସମୟର ପରିବର୍ତ୍ତନ ସହ ତାଳଦେଇ ମଣିଷ କିପରି ଆଜିର ସମାଜ ଠାରୁ ଦୂରକୁ ଦୂରକୁ ଚାଲିଯାଉଛି ଏହାକୁ ଅତି ନିଖୁଣ ଭାବରେ କବି ବର୍ଣ୍ଣନା କରିଛନ୍ତି ନିଜର କାବ୍ୟରେ । ଯେପରିକି କବିଙ୍କ ଭାଷାରେ-

"ଶୁଣ ଲୋ ଶୁଣ, ସ୍ୱାଇଁ ଘର ବୋହୁଗୁଣ"

ଗେରସ୍ତ ରହିଲା,କାଳିମାଟି ଯାଇ ଦିଅରେ ସରାଗ ଟାଣ ।

ବଙ୍ଗାଳୁଣୀଟିଏ ସେଇ ଇନେଇ ମେଲିଛି ସଂସାର ସେଠାରେ ଘର ନାଁ ଧରୁ ନାହିଁ ଆଦି କାବ୍ୟିତା ମାଧ୍ୟମରେ କବି ସମାଜକୁ ଜୀବନର ଧାରା ସହ ଯୋଡ଼ିବାକୁ ଚେଷ୍ଟା କରିଛନ୍ତି ! ପ୍ରକୃତି ପ୍ରାଣରେ ନିବିଷ୍ଟ ହୋଇ ମଣିଷର ଅନ୍ତରାତ୍ମାକୁ ବୁଝିବାହିଁ

କବିଙ୍କ ମୂଳ ଉଦ୍ଦେଶ୍ୟ । ପ୍ରକୃତି ସହ ହସିବା, କାନ୍ଦିବା ସହ ନୂଆ ନୂଆ ଉତ୍ସାହ ଭରିଦେବା ଯେ ପରି କବିର ଧର୍ମ ହୋଇ ପଡ଼ିଛି ।

ସେଥିପାଇଁ 'ଗହାଳୀ ଛୁଟିପରେ' କବିତାରେ ତାଙ୍କର ମନେ ପଡ଼ିଯାଇଛି ଗାଁ ଚଟଶାଳୀ ବହିବସ୍ତାନି ପୋଖରି ତୁଠ, ହଂସରାଳିପଲ, ପାଣିସିଙ୍ଗିଡ଼ା ଗଛ ଆଦିର କଥା କବି ଏଠାରେ ଲେଖି ବସିଛନ୍ତି, "ବର ଓହଳରେ ଝୁଲି" କିଏ ଖେଳୁଥାଲ ଦୋଳି, ଆଁଖୁ କେଳିବଣୁ ତୋଲିଲାଣି କିଏ କୋଳି ।" ଆହୁରି ମଧ୍ୟ ତାଙ୍କର ମନେପଡ଼ିଯାଇଛି ଏ ସନର ଟାଇଁ ଟାଇଁ ଖରା ଓ ଗଜା ମରୁଡ଼ିର ହିନି ଅବସ୍ଥା, ଚଷାଭାଇ ଓଦା ଗାମୁଛା ମୁଣ୍ଡରେ ଭିଡ଼ି ଏକା ଏକା ଖଟୁଥିବାତ କଥା, ବର୍ଷସାରା ମଣ୍ଡଝାଳ ତୁଣ୍ଡରେ ମାରିଲେ ମଧ୍ୟ ଦିଓଳା ଦିମୁଠା ପେଟ ଭରିଖାଇବାର ଅଭ୍ୟାସ ଆଉ ତାର ନାହିଁ । ଫସଲ ସବୁ ଉଜୁଡ଼ି ଗଲେଣି କଷ୍ଟେ ମଷ୍ଟେ ଧାର କରଜ କରି ଚଳିବାକୁ ପଡୁଛି ବର୍ଷସାରା । କବି ଚଷାପୁଅର ଏ ଦୁଃଖ ଦେଖି ମ୍ରିୟମାଣ ହୋଇପଡ଼ିଛନ୍ତି । ଏପଟରେ 'ଖରାବେଳର' କବିତାରେ ମଧ୍ୟ ଖରାର ପ୍ରକୋପ ଦେଖି ଗାଁ ଗହଳିର ଦୟନୀୟ ଅବସ୍ଥା ବିଷୟରେ ଯେଉଁ ନିଚ୍ଛକ ଦୟନୀୟ ଅବସ୍ଥାର କଳ୍ପନା ପାଟବତାର ଦେଖାଇଛନ୍ତି ତାହା ବର୍ଣ୍ଣନ ଯୋଗ୍ୟ ଓ ସୁନ୍ଦର ବ୍ୟାପୃତିରେ ରସାଣିତ ହୋଇ ପାରିଛି ।

ଗୋଟିଏ ପଟକୁ ଦେଖିଲେ କବି ଆଶାବାଦୀ ଅନ୍ୟ ପଟକୁ ଦେଖିଲେ କବିଙ୍କ ମନ ବିଷାଦ ଗ୍ରସ୍ତ । ଗ୍ରାମ ଜୀବନରେ ଦାରିଦ୍ର୍ୟ, ଦୁଃଖ କଷଣକୁ ଦେଖି ସେ ମର୍ମାହତା ଆଶାବାଦୀ ଏଇଥିପାଇଁ ଅଛନ୍ତି ଯେ ପଲ୍ଲୀଜୀବନରେ ସରଳତା ଛଡ଼ା ଅନ୍ୟ କିଛି ନାହିଁ ନିଜେ ସେମାନେ ଯେତେ ଦୁଃଖ ପାଆନ୍ତୁ ନାଁ କାହିଁକି ପରର ଉପକାର କରିବାକୁ ସେମାନେ ନିଜର ଧର୍ମ ବୋଲି ଭାବନ୍ତି । ପଲ୍ଲୀଜୀବନୀର ସରସତା, ସାରଳତା ସାଙ୍ଗକୁ ପବିତ୍ରତା ମଧ୍ୟ କବିଙ୍କ ମନକୁ ଉଦ୍‌ବୁଦ୍ଧ କରିଛି । ଆନନ୍ଦରେ ବିହ୍ୱଳ ହୋଇ ସେ ଲେଖିଛନ୍ତି । " ପଶ୍ଚିମ ଆକାଶେ ସିନ୍ଦୂର ଲହରୀ ପୂରବେ କଅଁଳି ଜହ୍ନ, କଳା ଧଳା ନିଳ ବଉଦ ମାଳାରେ ଅନିମୋହନ ବେହରଣ" ପଲ୍ଲୀ ମାନସର ପ୍ରତିଟି ସକାଳ ପ୍ରତିଟି ସକାଳ ପ୍ରତିଟି ସଂଧ୍ୟାରେ ଯେପରି କବି ଜୀବନ୍ତ ହୋଇ ଉଠିଛନ୍ତି ।

ନିର୍ଜନ ରାତିର ଚିଁ ଚିଁ ସ୍ୱର ତାଙ୍କୁ ଯେମିତି ମୁଗ୍ଧ କରିଛି ସେତିକି ଆମୋଦିତ କରିଛି । ଜୁଳୁଜୁଳିଆ ପୋକଟିର ଆଲୋକ ଝରେଇବା ଦେଖି । ଅତଏବ କବି ନିଶାଚର ବାଦୁଡ଼ି ପକ୍ଷୀର ଫଡ ଫଡ ନାଦକୁ ଯେତିକି ଭଲ ପାଆନ୍ତି ସେତିକି ସଂପର୍କ ଯୋଡ଼ିଥାନ୍ତି । ବିଲୁଆ ନନାର ହୁକେ ହୋ ଡାକ ସହ ଓ ଶ୍ୱାପଦ ମାନଙ୍କ କିଳିକତା ରଡି ସହ ତାଙ୍କ ଭାଷାରେ "ନିର୍ଜନ ନିଶୀଥେ ଅଜଣା ଆତଙ୍କ ଘରିଆଡ଼େ ଆସେ ମାଡ଼ି, ପ୍ରକୃତି ସନ୍ତାନ ପଲ୍ଲୀବାସୀଙ୍କର ଏଥିପ୍ରତି ନିଘା ନାହିଁ ତେଣୁ ପଲ୍ଲୀବାସୀ ଯେ କେତେ ସହଜ ସରଳ ଏହି କଥାକୁ କବି ତାଙ୍କର କବିତା ମାଧ୍ୟମରେ ଜଣାଇଦେବାକୁ ଚହାଁନ୍ତି । ଆଜିର ମଣିଷ କିପରି ବିଶ୍ୱାସ ଘାତକତାକୁ ପାଥେୟ କରି ବଂଚିଛି, ସେକଥା ମନେପଡ଼ି କବିଙ୍କ ଛାତି କୋହରେ ପୁରି ଉଠିଛି ଛନ୍ଦ କପଟ ବିହୀନ ପଲ୍ଲୀବାସୀଙ୍କ ପ୍ରତି ତାଙ୍କର ହୃଦୟ ବିଚଳିତ । ସାହି ସାହି, ଗାଁ ଗାଁ, ଲୋକ ଲୋକ ମାନଙ୍କ ଭିତରେ ଆଦି କଳିତକରାଳ । ସମସ୍ତେ ନିଜ ନିଜର ସ୍ୱାର୍ଥ ପାଇଁ ଏମିତି ଅନ୍ଧ ଯେ କେହି କାହା ବିଷୟରେ ଭାବିବା ମଧ ସ୍ୱପ୍ନ ହେଇପଡୁଛି । ଏକଥା କବି ଚିନ୍ତା କରି ତାଙ୍କର ଆଦର୍ଶର ଗାଁ ଆଜି କିଭଳି ଶ୍ରୀହିନ ହୋଇପଡ଼ିଛି ତାର ବିଚାର କରି ବସିଛନ୍ତି । ଅର୍ଦ୍ଧଶିକ୍ଷିତ ଗାଁ ଲୋକମାନେ ହାତରେ ହତିଆର ଧରି ଅନ୍ୟକୁ ହତ୍ୟା କରିବା ପାଇଁ ମଧ ତୟାର ଏକଥାରେ କବି ବ୍ୟଥିତା ତେଣୁ ସେ ତାଙ୍କ ଭାଷାରେ ଲେଖିଛନ୍ତି । "ମେସିନ୍ ହାତରେ ବନ୍ଧ ଏବେ ଗାଆଁ ଭୁଲିଛି ପୁରୁଣା କଥା, ସହର ପାଗଳ ଗାଆଁର ମଣିଷ ଭୁଲିଛି ଗ୍ରାମ ଗୌରବ ହରାଇଛି ନିଜ ସତ୍ତା" ଆଜି ଗାଁର ମଣିଷ ବୁଢ଼ା ବାପାଟିର କଷ୍ଟ ଦେଖିପାରୁନି ଅଭାବ କଷଣ ଦୂରୀଭୂତ କରିବା ପାଇଁ ନିଜର ମାଟି ମା'କୁ ଅନ୍ୟ ପାଖରେ ବନ୍ଧା ପକାଇ ଅୟସ କରିବାକୁ ଚହେଁ । ମୋଟା ମୋଟି ଭାବରେ କହିବାକୁ ଗଲେ କବି ଗ୍ରାମ୍ୟ ଜୀବନର ଭାବଧାରରେ ଯେତିକି ପ୍ରଛନ୍ନ ସେତିକି ଉତ୍‌କ୍ଷିପ୍ତ ମଧ । ତେଣୁ ତାଙ୍କ ରଚନା ବଳୀରେ ଯାହା ନିଛକ ସତା ତାହା ହିଁ ଆମେ ଦେଖିବାକୁ ପାଇଥାଉ ।

ଏତଦ୍ ବ୍ୟତିତ ଉକ୍ତ ପୁସ୍ତକଟିରେ ରଚିତ ଅନ୍ୟାନ୍ୟ କବିତା ବଳୀ ଗୁଡ଼ିକରେ ଭାବସ୍ତବକ, ରାଜନୀତି, ପ୍ରେମପରିଣୟ ମନ, ବ୍ୟକ୍ତି ଓ ବୃତ୍ତି, ଭାଗ୍ୟବାନ ମୂଳପ୍ରଶ୍ନ, ଚୁକ୍ତି ଖିଲାପ, ମହାପ୍ଲାବନ, ବିନତି ବିଳମ୍ବ ନକର, ଶ୍ରୀମା, ପ୍ରଣୟ

ଦ୍ୱିପଦୀ, ଭାବବିନୋଦିନି, ଜାୟା, ଜନ୍ମ ଦାତାପିତା,ଜନନୀ, ଭାବଅଭାବ, ପଶୁ ମଣିଷ, ଆଜି ଏବେ, ଅସ୍ତିତ୍ୱ, ପ୍ରଜାତନ୍ତ୍ର, ମଧ୍ୟବିତ୍ତ ଓ ପ୍ରତୀକ୍ଷିତା, ମ୍ଲେଚ୍ଛ ନିପାତ କର, ଏତିକି ପ୍ରାର୍ଥନା, ତୁମେହିଁ ସର୍ବେଶ୍ୱର ଭଳି ଅନେକ ଭିନ୍ନ ଭିନ୍ନ ରୁଚିର ମନୋମୁଗ୍ଧକର ଚେତନା ଧର୍ମ ଭାବସମ୍ବଳିତ କବିତା ବଳୀ ଦେଖିବାକୁ ମିଳେ ।

ତେବେ ସବାନ୍ତଃ କରଣରେ ଏତିକି କୁହାଯାଇ ପାରେ ଯେ ଏହି କବିତା ଗୁଡ଼ିକ ଏକତ୍ର ସନ୍ନିବେଶିତ ହୋଇ ଗୋଟିଏ ପୁସ୍ତକ ଆକାରରେ ନ ରହି ଭିନ୍ନ ଭିନ୍ନ ଶୈଳୀରେ ଭିନ୍ନ ଭିନ୍ନ ପୁସ୍ତକ ଆକାରରେ ମୁଦ୍ରଣ କରାଗଲେ କବିତା ଗୁଡ଼ିକର ଭାବ ଓ ବିଭାଗର ସଠିକ୍ ମୂଲ୍ୟାୟନ ହୋଇପାରନ୍ତା ।

ସଂପାଦିକା, ଅନ୍ୱେଷିତା

ମୋ - ୯୨୩୮୬୨୭୭୯୧



# ଶିକ୍ଷକ ପରି ଶିକ୍ଷକଟିଏ ଶ୍ରୀଯୁକ୍ତ ଦାସ

ରଘୁନାଥ ମହାପାତ୍ର

ଶିକ୍ଷକର ଜୀବନ ଏକ ସାଧନାର ଜୀବନ । ସେ ହିଁ ପ୍ରକୃତ ଶିକ୍ଷକ ଯେ କି ଜଣେ ଜିଜ୍ଞାସୁ ଛାତ୍ରପରି ସଦା ଅଧ୍ୟୟନ ରତ । 'ନ ଇତି', 'ନ ଇତି'ର ମନ୍ତ୍ର ଜପି ଜପି ଜ୍ଞାନ ରାଜ୍ୟରେ ସଦା ବିଚରଣ କରୁଥିବା ଏହିପରି ଜଣେ ସୁଯୋଗ୍ୟ ଶିକ୍ଷକ ହେଉଛନ୍ତି ଶ୍ରୀଯୁକ୍ତ ଦାସ । ଜଣେ ପ୍ରାଥମିକ ଶିକ୍ଷକ ଭାବେ କାର୍ଯ୍ୟ ଆରମ୍ଭ କରିଥିବା ଓ ପ୍ରାଧ୍ୟାପକ ସ୍ତର ପର୍ଯ୍ୟନ୍ତ ଶିକ୍ଷାବ୍ୟବସ୍ଥାର ଅନେକ ଦିଗକୁ ଛୁଇଁ ପାରିଥିବା ଏହିପରି ଜଣେ ଗରିମାମୟ ଶିକ୍ଷକଙ୍କ ଜୀବନାନୁଭୂତିର ଅଭିଧାନରୁ କେତେକ ଶବ୍ଦାର୍ଥ ସଂଗ୍ରହ କରିବା ବାସ୍ତବିକ୍ ମୋ ପାଇଁ ପରମ ସୌଭାଗ୍ୟର ବିଷୟ ।

ସେଦିନ ଥିଲା ଏକ ଶୁଭ ସନ୍ଧ୍ୟା । ଜଣେ ବିଶିଷ୍ଟ ସାହିତ୍ୟିକ ଶ୍ରୀଯୁକ୍ତ ରାଜକୃଷ୍ଣ ମହାନ୍ତିଙ୍କ ଠାରୁ ଠିକଣା ସଂଗ୍ରହ କରି ଦଉଡ଼ି ଯାଇଥିଲି ଶ୍ରୀଯୁକ୍ତ ଦାସଙ୍କ ପୁରୀସ୍ଥ ବାସଭବନ ଅମରକ୍ଷେତ୍ରକୁ । କଲିଙ୍ଗ୍ ବେଲ୍ ଚିପିବାପରେ ନିମକ୍‌ସଚ୍ଚା ଗୃହ ପାଳିତ ଶ୍ୱାନଟି ତା ଭାଷାରେ କ'ଣ କ'ଣ କହି ମୋ ପରି ଏକ ଅପରିଚିତ ଲୋକର ପଥରୋଧ କରିଥିଲା । ଲକ୍ଷ୍ମୀଧର ବାବୁ ତାକୁ ଆକଟ କରି ମତେ ଆଦର ସହକାରେ ଘରର ଉପର ମହଲାକୁ ନେଇ ବସାଇଥିଲେ । ଚା' ପାନ ପରେ ସେ ମୋ ଆସିବାର କାରଣ ଜିଜ୍ଞାସା କରିଥିଲେ । ମୁଁ ତୁଣ୍ଡ ଖୋଲି କହିଲି, ମୁଁ ନିଜେ ଜଣେ ଶିକ୍ଷକ ଥିବାରୁ ଆପଣଙ୍କ ଶିକ୍ଷକ ଜୀବନ ବିଷୟରେ କିଛି ଜାଣିବାକୁ ଚାହୁଁଛି । ବ୍ୟାସଦେବ ଭାଗବତ ବର୍ଣ୍ଣନା କଲାପରି ସେ ନିରବଚ୍ଛିନ୍ନ ଭାବେ କହିଯାଉଥାନ୍ତି ମାତ୍ର ମୁଁ ତ ଶ୍ରୀ ଗଣେଶ ନୁହେଁ ଯେ ନିରବଚ୍ଛିନ୍ନ ଭାବେ ଲେଖିପାରିବି ! ମଝିରେ ମଝିରେ ତାଙ୍କୁ ଅଟକାଇବାକୁ ପଡୁଥାଏ ।

ତାଙ୍କ ପିତା ଥିଲେ ଜଣେ ଶିକ୍ଷା ଓ ସଂସ୍କୃତିପ୍ରେମୀ ମଣିଷ । ପ୍ରଜାମେଳି ଓ ଭାଗଚାଷ ଜନିତ ମାଲିମକଦ୍ଦମାରେ ଅନିଚ୍ଛାକୃତ ଭାବେ ଲିପ୍ତ ରହି ତାଙ୍କ

ପିତା ନିଜର ପୁତ୍ର କନ୍ୟାମାନଙ୍କୁ ଉଚ୍ଚଶିକ୍ଷା ଦେଇ ପାରିନଥିଲେ । ଫଳରେ ନୟାହାଟ ସ୍କୁଲରୁ ମାଇନର ପାସ୍ କରି ଗୃହକର୍ମ କରୁଥିବା ଶ୍ରୀଯୁକ୍ତ ଦାସ ଭିଲେଜ୍ ଓଏଲ୍‌ଫେୟାର ଡ଼ିପାର୍ଟମେଣ୍ଟ୍ ଅଧୀନରେ ଥିବା ଆନ୍ଧ୍ର ଓ ଛତିଶଗଡ଼ ସୀମା ନିକଟରେ ଦୁର୍ଗମ ଘଞ୍ଚ ଅରଣ୍ୟାନୀ ମଧ୍ୟରେ ଗିରିକାନପଲ୍ଲୀ ନାମକ ଏକ ସେବାଶ୍ରମ ସ୍କୁଲରେ କାର୍ଯ୍ୟ ଆରମ୍ଭ କରିଥିଲେ । ସେଠାରେ କିଛି ଦିନ କଷ୍ଟକର ଜୀବନ ଅତିବାହିତ କରିବା ପରେ ପୁରୀ ଜିଲ୍ଲାବୋର୍ଡ଼ ଅଧୀନସ୍ଥ ପ୍ରାଥମିକ ବିଦ୍ୟାଳୟରେ ଚାକିରି ପାଇଁ ଇଣ୍ଟରଭିଉରେ ଉନ୍ନୀତ ହୋଇ ସେ ପ୍ରଥମେ ନୂଆସନ୍ଥ ୟୁ.ପି ସ୍କୁଲରେ ସହକାରୀ ଶିକ୍ଷକ ରୂପେ ଚାକିରି ଆରମ୍ଭ କଲେ । ଏଠାରେ କାର୍ଯ୍ୟ କରିବାର କିଛିବର୍ଷ ପରେ ସେ ବଦଳି ହୋଇ କାକଟପୁର ୟୁ.ପି. ସ୍କୁଲରେ ଯୋଗ ଦେଇଥିଲେ । ମାଆ ମଙ୍ଗଳାଙ୍କ କୃପାରୁ ସେ ଇ.ଟି ଟ୍ରେନିଙ୍ଗ୍ ଯିବା ପାଇଁ ଯୋଗ୍ୟ ବିବେଚିତ ହୋଇ ନିମାପଡ଼ା ଏଲିମେଣ୍ଟାରୀ ଟ୍ରେନିଙ୍ଗ୍ ସ୍କୁଲରେ ରେଗୁଲାର୍ ଛାତ୍ର ରୂପେ ଦୁଇବର୍ଷ ପ୍ରଶିକ୍ଷଣ ନେଇଥିଲେ । ଏଠାରେ ମାଆ ମଙ୍ଗଳା ତାଙ୍କ ଡ଼ାକ ଶୁଣିଲେ କହିବାର ତାତ୍ପର୍ଯ୍ୟ ହେଉଛି ସେ ଯଦି ରେଗୁଲାର୍ ଛାତ୍ର ରୂପେ ଦୁଇବର୍ଷ ଟ୍ରେନିଙ୍ଗ୍ ସ୍କୁଲରେ ପଢ଼ି ନ ଥାନ୍ତେ ତେବେ ସି.ଟି. ଓ ବି.ଏଡ୍ ପ୍ରାଇଭେଟ୍‌ଲି ଦେଇପାରି ନଥାନ୍ତେ ଓ ସରକାରୀ ସ୍କୁଲରେ କାମ କରିବାର ସୁଯୋଗରୁ ବଞ୍ଚିତ ହୋଇଥାନ୍ତେ । ପୁନଶ୍ଚ ଅଧିକ ବୟସରେ ସରକାରୀ କଲେଜରେ ଆଉ ଚାକିରି କରିପାରି ନଥାନ୍ତେ ।

ଟ୍ରେନିଙ୍ଗ୍ ସରିଗଲା ଓ ସେ ଶିକ୍ଷକ ହେବାର ଯୋଗ୍ୟତା ଲାଭ କଲେ । ଜିଲ୍ଲାବୋର୍ଡ଼ ତାଙ୍କୁ ବଦଳି କରି କୋଣାର୍କ ୟୁ.ପି. ସ୍କୁଲରେ ପୋଷ୍ଟିଙ୍ଗ୍ ଦେଲା । କିଛି ଦିନପରେ ତାଙ୍କୁ ଦେଉଳୀ ଏଲ୍.ପି ସ୍କୁଲକୁ ବଦଳି କରାଗଲା । ଏଠାରେ କାର୍ଯ୍ୟରତ ଥିବା ସମୟରେ ଇଣ୍ଟରଭିଉ ଦେଇ ଭୁବନେଶ୍ୱର ୟୁନିଟ୍‌ଥ୍ରୀ ସ୍ଥିତ ସରକାରୀ ୟୁ.ପି ସ୍କୁଲରେ ୧୯୬୨ ମସିହାରେ ଯୋଗ ଦେଇଥିଲେ । ଏହି ବର୍ଷଟି ଶ୍ରୀଯୁକ୍ତ ଦାସଙ୍କ ପାଇଁ ଏକ ଶୁଭବର୍ଷ । କାରଣ ସରକାରୀ ଚାକିରି ପ୍ରାପ୍ତି ସହିତ ସହଧର୍ମିଣୀ ପ୍ରାପ୍ତି ଘଟିଥିଲା ତାଙ୍କ ଭାଗ୍ୟରେ । ଜଣେ ସୁଯୋଗ୍ୟା ସହଧର୍ମିଣୀଙ୍କର ପ୍ରେରଣା ଯୋଗୁଁ ତାଙ୍କ ଭିତରେ ଲୁକ୍କାୟିତ ଥିବା ଅଗ୍ରଗତି

କରିବାର ସ୍ଫୁଲିଙ୍ଗ ପ୍ରଜ୍ୱଳିତ ହେବାକୁ ଲାଗିଲା । ସେ ଆଉ ପଛକୁ ଫେରି ଚାହିଁ ନାହାଁନ୍ତି । ୧୯୬୩ ମସିହାରେ ପ୍ରାଇଭେଟ୍‌ଲି ମାଟ୍ରିକ୍ ଏବଂ ପି.ୟୁ, ପି.ପି ଓ ଡିଗ୍ରୀ କୋର୍ସ ବ.ଜେ.ବି ସାନ୍ଧ୍ୟ କଲେଜରୁ ପାସ୍ କଲେ । ବି.ଏ ପାସ କରିବା ବର୍ଷ ମଧ୍ୟ ପ୍ରାଇଭେଟ୍‌ଲି ସି. ଟି. ପାସ୍ କରିଥିଲେ । ୧୯୬୮ ମସିହାରେ ପ୍ରାଇଭେଟ୍‌ଲି ବି.ଏଡ୍. ପାସ୍ କଲେ । ଭୁବନେଶ୍ୱରରେ ରହଣି ସମୟରେ ସେ ଏମ୍.ଇ, ଇ.ଟିରୁ ବି.ଏ,ବି.ଏଡ୍ ପର୍ଯ୍ୟନ୍ତ ଯୋଗ୍ୟତା ଅର୍ଜନ କରିଥିଲେ ।

ଶିକ୍ଷାବିଭାଗର ତାଙ୍କ ଉପରେ ସୁଦୃଷ୍ଟି ପଡ଼ିଲା । ତାଙ୍କୁ ଆଇ.ଏ.,ସି.ଟି ପୋଷ୍ଟକୁ ଉନ୍ନୀତ କରାଯାଇ ଭୁବନେଶ୍ୱରରୁ ପୁରୀ ଜିଲ୍ଲା ସ୍କୁଲକୁ ବଦଳି କରାଗଲା । କିଛିଦିନ ପରେ ସେ ଟ୍ରେନ୍‌ଡ୍ ଗ୍ରାଜୁଏଟ୍ ପୋଷ୍ଟକୁ ଉନ୍ନୀତ ହେଲେ ଓ ତାଙ୍କୁ ପୁରୀ ଜିଲ୍ଲା ସ୍କୁଲରୁ ରାଜସୁନାଖେଳା ହାଇସ୍କୁଲକୁ ବଦଳି କରାଗଲା । ସେତେବେଳର ସରକାରୀ ନିୟମ ଅନୁସାରେ ରାଜ୍ୟ ରାଜ୍ୟ ମଧ୍ୟରେ ସମ୍ପର୍କ ବୃଦ୍ଧି ପାଇଁ କେତେକ ହାଇସ୍କୁଲ ଶିକ୍ଷକଙ୍କୁ ଅନ୍ୟ ରାଜ୍ୟର ଭାଷା ଶିଖିବା ପାଇଁ ବର୍ଷେ ଡେପୁଟେସନ୍‌ରେ ପଠାଯାଉଥିଲା । ଶ୍ରୀଯୁକ୍ତ ଦାସ ଡେପୁଟେସନ୍‌ରେ ଆସାମ ଯାଇ ଅହମିଆ ଭାଷାରେ ଡ଼ିପ୍ଲୋମା ପାସ୍ କଲେ । ସରକାର ସେମାନଙ୍କୁ ପ୍ରୋତ୍ସାହିତ କରିବା ପାଇଁ ମଧ୍ୟ ଅଧିକ ଇନ୍‌କ୍ରିମେଣ୍ଟ୍ ଦେବାର ବ୍ୟବସ୍ଥା କରିଥିଲେ । ଏଠାରୁ ଫେରିବା ପରେ ତାଙ୍କୁ ରାଜସୁନାଖେଳାରୁ ଦାଶରଥି ହାଇସ୍କୁଲ ଓଳଶିଙ୍ଗ୍‌କୁ ବଦଳି କରାଯାଇଥିଲା । ସେ ଆସାମରେ ରହି ଭାଷା ଶିକ୍ଷା କରୁଥିବା ସମୟରେ ଏମ୍.ଏ ପରୀକ୍ଷା ଦେବାପାଇଁ ମଧ୍ୟ ପ୍ରସ୍ତୁତ ହେଉଥିଲେ । ଓଡ଼ିଶା ଫେରିବାପରେ୧୯୭୨ ମସିହାରେ ଘରୋଇ ଭାବେ ଇତିହାସରେ ଏମ୍.ଏ ପରୀକ୍ଷା ଦେଲେ । ତା ପର ବର୍ଷ ୧୯୭୩ ମସିହାରେ ପଲ୍‌ଟିକାଲ ସାଇନ୍‌ସରେ ଏମ୍.ଏ ଏବଂ ୧୯୭୪ ମସିହାରେ ଓଡ଼ିଆରେ ଏମ୍.ଏ ପାସ୍ କଲେ ଓ ସେହି ବର୍ଷ ପି.ଏସ୍. ସି ସ୍ୱୀକୃତି ପାଇ ୧୯୭୫ ମସିହା ଜୁନ୍ ମାସରେ ଓଡ଼ିଆ ଅଧ୍ୟାପକ ରୂପେ ରାଜେନ୍ଦ୍ର କଲେଜ ବଲାଙ୍ଗିରରେ ଯୋଗ ଦେଇଥିଲେ । ସେଠାରେ ଆଠ ବର୍ଷ ଅଧ୍ୟାପନା କରିବା ପରେ ସରକାରୀ ନିର୍ଦ୍ଦେଶରେ ପଞ୍ଚାଏତ୍ କଲେଜ୍ ବରଗଡ଼ରେ ଯୋଗ ଦେଇଥିଲେ । ସେଠାରୁ ଷ୍ଟଡ଼ି ଲିଭ୍ ନେଇ ଦୁଇବର୍ଷ

ଗବେଷଣା କଲେ ଏବଂ ୧୯୮୫ ମସିହାରେ ପି.ଏଚ୍.ଡି ହାସଲ କଲେ । ଏହିବର୍ଷ ମଧ୍ୟ ସେ ପ୍ରାଧ୍ୟାପକ ରୂପେ ପ୍ରମୋସନ ପାଇଲେ । ଏହାପରେ ସେ ଖଲ୍ଲିକୋଟ କଲେଜ ବରହମ୍ପୁର ଓ ସେଠାରୁ ବଦଳି ହୋଇ ଆସି ଏସ୍.ସି.ଏସ୍ କଲେଜ ପୁରୀରେ ଅଧ୍ୟାପନା କରି ୧୯୯୮ ମସିହା ଜୁଲାଇ ଏକତିରିଶ ତାରିଖରେ ସେବା ନିବୃତ୍ତ ହୋଇଥିଲେ ।

ଶ୍ରୀଯୁକ୍ତ ଦାସଙ୍କଠାରୁ ଯାହା ଶୁଣିଛି ସେଗୁଡ଼ିକ ଠିକ୍ ଭାବରେ ଲେଖୁଛି କି ନାହିଁ ମୁଁ ଜାଣିନି । ଏହାପରେ ତାଙ୍କୁ ଅନୁରୋଧ କରି କହିଥିଲି ଆପଣଙ୍କ ପାଠ ପଢ଼ା ଓ ଚାକିରି ବିଷୟରେ ବହୁତ ଶୁଣିଲି । ଏବେ ମତେ କହନ୍ତୁ ପ୍ରାଥମିକ, ମାଧ୍ୟମିକ ଓ କଲେଜ ଜୀବନ ମଧ୍ୟରୁ କେଉଁଜୀବନ ଓ କେଉଁସ୍ଥାନ ଆପଣଙ୍କୁ ଶାନ୍ତିପ୍ରଦ ହୋଇଥିଲା ? ସେ ମୋ ପ୍ରଶ୍ନର ଉତ୍ତର ଦେଇ କହିଥିଲେ, "ମୋ ପାଇଁ ପ୍ରାଥମିକ ବିଦ୍ୟାଳୟ ଜୀବନ ବିଶେଷ ଆନନ୍ଦପ୍ରଦ ହୋଇଥିଲା । କାରଣ ସେତେବେଳେ ମୁଁ ଥିଲି ତରୁଣ । ଦେହରେ ଅସୁମାରୀ ଶକ୍ତି ଓ ମନରେ ଥିଲା ଅସୁମାରୀ ସ୍ୱପ୍ନ । ପୁନଶ୍ଚ ଅନାବିଳ ନିଷ୍ପାପ ପ୍ରଜାପତି ଗୁଡ଼ିକୁ ଖେଳେଇ, କୋଳେଇ, ହସେଇ ମଜେଇ ପଢ଼େଇବାରେ ମୁଁ ପାଉଥିଲି ପ୍ରଗାଢ଼ ଆତ୍ମତୃପ୍ତି ଯାହା ସହିତ କୌଣସି ସୁଖ ସମ୍ଭୋଗର ତୁଳନା ନାହିଁ । ହଁ ଆପଣଙ୍କୁ ଆଉ ଗୋଟିଏ ଦୁର୍ଘଟଣା କଥା କହୁଚି । ମୁଁ ଭୁବନେଶ୍ୱରସ୍ଥ ୟୁନିଟ୍‌ଥ୍ରୀ ସରକାରୀ ୟୁ.ପି. ସ୍କୁଲରେ ଶିକ୍ଷକଥିବା ସମୟରେ ଗୋଟିଏ ପିଲାକୁ ଯେତେ କହିଲେ ବି ସେ ରଚନା ଲେଖି ଆଣୁ ନଥିଲା । ଏଥିପାଇଁ ମୁଁ ପିଲାଟିକୁ ଦି ଚାରି ପାହାର ମାଡ଼ ଦେଇଥିଲି । କଅଁଳିଆ ଦେହ ତ, ତା ଦେହରେ ନୋଳା ବସିଗଲା । ପିଲାଟିର ବାପା ସେକ୍ରେଟାରୀଏଟ୍‌ରେ ଚାକିରି କରନ୍ତି । ସେ ଶିକ୍ଷା ବିଭାଗର ଡେପୁଟି ସେକ୍ରେଟାରୀଙ୍କ ପାଖରେ ଅଭିଯୋଗ କଲେ । ଡେପୁଟି ସେକ୍ରେଟାରୀ ପିଲାଦିନେ ମାଡ଼ ଖାଇ ତାଙ୍କ କହୁଣୀରେ ଥିବା ଦାଗ ତାକୁ ଦେଖାଇ କହିଥିଲେ, 'ମାଷ୍ଟ୍ରଙ୍କ ଛାଟ ନ ବାଜିଲେ ପାଠ ହୁଏନି' । ଏକଥା ମୋ କାନକୁ ପରେ ଆସିଥିଲା ।

ହାଇସ୍କୁଲରେ କପି ଧରିବାର କେତେକ ଅପ୍ରୀତିକର ଅନୁଭୂତି ମୋ

ଆଗରେ କହିଥିଲେ । ତାଙ୍କ କହିବା ଅନୁସାରେ ସେ ଚାହୁଁଥିଲେ ପରୀକ୍ଷାଟା ପରୀକ୍ଷା ପରି ଠିକ୍ ଭାବରେ ହେଉ । ଏଥିପାଇଁ ସେ ଦାଶରଥି ହାଇସ୍କୁଲ ଓଲସିଙ୍ଗ୍‌ରେ ଚେନ୍‌ମାଡ଼ ଓ ସୋନପୁର ହାଇସ୍କୁଲ ବୋର୍ଡ ପରୀକ୍ଷାରେ ସୁପରିଟେଣ୍ଡେଣ୍ଟ୍ ଥିବା ସମୟରେ ଛୁରି ଭୂଷା ଆଦି ଭୟଙ୍କର ପରିସ୍ଥିତର ସମ୍ମୁଖୀନ ହୋଇଥିଲେ ବି ଡରିଯାଇ ନ ଥିଲେ । ବରଂ ଦୁର୍ଦ୍ଦାନ୍ତ ପିଲାମାନେ ତାଙ୍କପାଖେ ଆତ୍ମସମର୍ପଣ କରିଥିଲେ ।

କୌଣସି ସମୟରେ ଶୃଙ୍ଖଳା ବ୍ୟାଘାତ ହେଲେ ଶ୍ରୀଯୁକ୍ତ ଦାସଙ୍କୁ ବଡ଼ ଅସହ୍ୟ ବୋଧ ହୁଏ । ସତେଯେପରି ଶିକ୍ଷକର ଶୃଙ୍ଖଳାଜ୍ଞାନ ତାଙ୍କ ଶିରା ପ୍ରଶିରାରେ ସର୍ବଦା ପ୍ରବାହିତ । ଏବେମଧ ଦେଖାଯାଇଥାଏ ତାଙ୍କ ଭାଷଣ ମଝିରେ କେହି କଥାବାର୍ତ୍ତା ହେଲେ ସେ ତାଙ୍କୁ ବାହାରକୁ ଯାଇ କଥା ହେବାକୁ କହିଥାନ୍ତି ।

କଲେଜ ଜୀବନ ବିଷୟରେ ସେ କହିଥିଲେ ଯେ ମୋ ପାଇଁ ବଲାଙ୍ଗୀରର କଲେଜ ଜୀବନ ବହୁତ ଭଲଥିଲା । ସେଠାରେ ଥିବାବେଳେ ଛାତ୍ରମାନଙ୍କ ସହିତ ମିଶି N.S.S. Camp ମାଧ୍ୟମରେ ବିଭିନ୍ନ ସେବାକାର୍ଯ୍ୟ କରିବାର ସୁଯୋଗ ପାଇଥିଲି । ବିଶ୍ୱ ବିଦ୍ୟାଳୟ ନିୟୋଗ ଆନୁକୂଲ୍ୟରେ ପୌଢ଼ଶିକ୍ଷା କାର୍ଯ୍ୟକ୍ରମ ପରିଚାଳନା, ଇନ୍ଦିରାଗାନ୍ଧୀ ମୁକ୍ତ ବିଶ୍ୱବିଦ୍ୟାଳୟର ଉପଦେଷ୍ଟା ଭାବେ ଓ ଅଧ୍ୟାପକମାନଙ୍କ ରିସର୍ଚ୍ଚ ଗାଇଡ୍ ଟିଚର୍ ରୂପେ କାର୍ଯ୍ୟ କରିଛି ।

ଏତ ଗଲା ତାଙ୍କ ଚାକିରି ଜୀବନର ଇତିହାସ । ଅବସର ପରେ ସେ ଶ୍ରୀକ୍ଷେତ୍ରବାସୀ ହୋଇଛନ୍ତି । ମଝିରେ ମଝିରେ ପିଲାମାନଙ୍କ ପାଖକୁ ଯାଉଛନ୍ତି । ଇତି ମଧ୍ୟରେ ୟୁ.ଏସ୍.ଏ ଭ୍ରମଣ କରି ଫେରିଛନ୍ତି । ବର୍ତ୍ତମାନ ସେ 'କାବ୍ୟ ଶାସ୍ତ୍ର ବିନୋଦେନ କାଳୋ ଗଚ୍ଛତି ଧୀମତାମ୍' ନୀତିବାକ୍ୟଟିକୁ ଆପଣେଇ ନେଇ ସମୟ କାଟୁଛନ୍ତି । ସାରସ୍ୱତ ଜଗତକୁ ତାଙ୍କର ଅବଦାନ କିଛି କମ୍ ନୁହେଁ । ଟଲଷ୍ଟୟ କହିଥିଲେ ମୁଁ ତିନୋଟି ଜିନିଷ ଚାହେଁ, ତାହା ହେଉଛି 'ବହି, ବହି, ବହି' ସେହିପରି ଲକ୍ଷ୍ମୀଧର ବାବୁଙ୍କ ଚତୁର୍ଦ୍ଦିଗରେ ମଧ୍ୟ ବହିମାନେ ଘେରି ରହିଛନ୍ତି । ତାଙ୍କର ହୃଦୟ ଗୋଟିଏ ଖୋଲା ପୁସ୍ତକ ଯାହାକି ପଢ଼ି

ସହଜରେ ବୁଝିହୁଏ । ବାହାରୁ ତାଙ୍କୁ ଦେଖି କେହି ବିଶ୍ୱାସ କରିପାରିବେନି ଯେ ତାଙ୍କ ଅଭ୍ୟନ୍ତରରେ ଜ୍ଞାନପ୍ରସୂତା ତଟିନୀଟିଏ କୁଳୁ କୁଳୁ ହୋଇ ପ୍ରବାହିତ ହେଉଛି ବୋଲି ।

ଜୟ ଜଗନ୍ନାଥ, ଜୟ ଜଗନ୍ନାଥ, ଜୟ ଜଗନ୍ନାଥ

'ମହାପ୍ରଭୁ ତାହାଙ୍କୁ ଦୀର୍ଘ ନିରାମୟ ଜୀବନ ପ୍ରଦାନ କରନ୍ତୁ'

ଏହାହିଁ ତାଙ୍କ ଶ୍ରୀଚରଣାରବିନ୍ଦରେ ପ୍ରାର୍ଥନା ।

ପୀତାମ୍ବରୀ ନିଳୟ
ପ୍ରଭାତ ଲେନ୍, ଦଣ୍ଡତୋଟା, ପୁରୀ
ମୋ- ୯୪୩୭୫୦୮୩୩୦



# ମନେପଡ଼େ

ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର

ବହୁ ବର୍ଷ ତଳର କଥା । ସେତେବେଳେ ଡଃ ଲକ୍ଷ୍ମୀଧର ଦାସ ଓ ମୁଁ ବ୍ରହ୍ମପୁରସ୍ଥ ଖଲ୍ଲିକୋଟ ମହାବିଦ୍ୟାଳୟରେ କାର୍ଯ୍ୟ କରୁଥାଉ । ସାର୍ ଥାଆନ୍ତି ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ପ୍ରାଧ୍ୟାପକ ଏବଂ ମୁଁ ତର୍କ ଓ ଦର୍ଶନ ବିଭାଗରେ ଅଧ୍ୟାପକ ଥାଏ । ଅଧ୍ୟାପକ ମାନଙ୍କର ଷ୍ଟାଫ୍‌କ୍ଲବ ରେ ସେ ଥାଆନ୍ତି ସମ୍ପାଦକ ଓ ମୁଁ ସହଯୋଗୀ । ଗୋଟିଏ ସୁନ୍ଦର ପ୍ରସ୍ତାବ ବିଷୟରେ ମୋତେ ସୂଚନା ଦେଇ ମୋର ମତାମତ ଲୋଡ଼ିଲେ । ପ୍ରସ୍ତାବଟି ଥିଲା ଅବସର ନେଉଥିବା ଅଧ୍ୟାପକ ଅଧ୍ୟାପିକାଙ୍କୁ ସମ୍ବର୍ଦ୍ଧିତ କରିବା । ଏଥିରେ ବା ମୁଁ ଅରାଜି କାହିଁକି ହୁଅନ୍ତି । ସଦ୍ୟ ଅବସର ନେଇଥିବା କେତେଜଣ ସହକର୍ମୀଙ୍କୁ ସମ୍ବର୍ଦ୍ଧନା ଦେବା ସ୍ଥିର ହେଲା । ରସାୟନ ବିଭାଗର ଅଧ୍ୟାପକ ବେଣୁପାଣି ବିଷୋୟୀ ଅବସର ନେଇ ସାରିଥାଆନ୍ତି । ସାରଙ୍କ ଘରକୁ ଆମେ ନିହେଁ ଗଲୁ । ପ୍ରସ୍ତାବ ବିଷୟରେ କହିଲୁ । କେଜାଣି କାହିଁକି ସେ ଅମଙ୍ଗ ହେଲେ । ମାତ୍ର ସାରଙ୍କର ସ୍ନେହବୋଳା କଥା ଆଗରେ ପରିଶେଷରେ ସେ ରାଜି ହେଲେ । ଗଡ଼ ଜୟ କଲାପରି ମତେ ଲାଗିଲା । ବନ୍ଧୁମାନଙ୍କ ଠାରୁ ଆଦାୟ କଲୁ ପ୍ରତ୍ୟେକଙ୍କ ଠାରୁ ମାତ୍ର ଦଶଟଙ୍କା । ସେତେବେଳେ ଏହି ପରମ୍ପରା ନୂଆ ଆରମ୍ଭ ହେଲା । ସମସ୍ତେ ଖୁସୀରେ ସହଯୋଗ କଲେ । ସମ୍ବର୍ଦ୍ଧନା ବେଳେ ବିଦାୟୀ ଅଧ୍ୟାପକଙ୍କୁ ଗୋଟିଏ ବନ୍ଧାଇ କରାଯାଇଥିବା ସୁଦୃଶ୍ୟ ମାନପତ୍ର, ଗୋଟିଏ ଶାଲ୍, କିଛି ପୁସ୍ତକ ଏବଂ ଫୁଲତୋଡ଼ାଟିଏ ଦିଆଯାଇଥିଲା । ସଭାରେ ପରିବେଷିତ ହେଉଥିଲା ଜଳଖିଆ ଏବଂ ଚା । ଖୋଜି ଖୋଜି ଭଲ ଦୋକାନରୁ ଉନ୍ନତମାନର ଜଳଖିଆ ଆଣୁଥିଲୁ । ପ୍ରାୟ ପାଞ୍ଚଟଙ୍କାରେ ଖାଦ୍ୟ ପ୍ରତ୍ୟେକେ ପାଉଥିଲେ ଏବଂ ଆଉ ପାଞ୍ଚଟଙ୍କାରେ ମାନପତ୍ର ଇତ୍ୟାଦି ବାବଦରେ ଖର୍ଚ୍ଚ ହୋଇ କିଛି ପଇସା ମଧ୍ୟ ବଳୁଥିଲା । ପରବର୍ତ୍ତୀ ଉତ୍ସବରେ ତାହା କାମରେ ଲାଗୁଥିଲା । ବଡ଼ ଉତ୍ସାହର ସହିତ ଏ କାମ ହେଉଥିଲା ।

ସାର୍‌ଙ୍କ ଜୀବନ  ଏକ ସଙ୍ଘର୍ଷମୟ ଜୀବନ । ତୃଣମୂଳସ୍ତରରୁ ଆପଣାର ନିଷ୍ଠା, ଅଧ୍ୟବସାୟ ଓ କର୍ତ୍ତବ୍ୟ ନିଷ୍ଠା ଯୋଗୁଁ ଏବଂ ସର୍ବୋପରି ପରମେଶ୍ୱରଙ୍କ କରୁଣାରୁ ଗୋଟିକ ପରେ ଗୋଟିଏ ପାହଚ ଚଢ଼ି ନିର୍ବିଘ୍ନରେ ୭୫ତମ ସ୍ୱନକ୍ଷତ୍ର ଦିବସରେ ଉପନୀତ । ପ୍ରବୀଣଙ୍କ ଠାରୁ ଆରମ୍ଭ କରି ନବୀନଙ୍କ ପର୍ଯ୍ୟନ୍ତ ସମାଜର ସକଳ ସ୍ତରରେ ସାରଙ୍କର ପ୍ରବେଶ ଏବଂ ପ୍ରତିଷ୍ଠା ରହିଥିଲା । ସ୍ୱାଭିମାନ ସହିତ ବଞ୍ଚିବାରେ ସେ ଥିଲେ ସିଦ୍ଧହସ୍ତ । ପଠନ, ଲିଖନ ତାଙ୍କର ପ୍ରିୟ କାର୍ଯ୍ୟ ଥିଲେ ହେଁ ସଂସାରର ଯାବତୀୟ କର୍ମଧାରାରେ ସେ ସଂପୃକ୍ତ ରହି ଆନନ୍ଦ ପାଉଥିଲେ । ବ୍ରହ୍ମପୁରରେ ଥିବା ଘରେଏତେ ଗଛ କୁଣ୍ଡରେ ଲଗାଇଥିଲେ ତାହା ଏକ ଉଦ୍ୟାନର ଭ୍ରମ ସୃଷ୍ଟି କରୁଥିଲା । ପ୍ରକୃତି ପ୍ରିୟତା, ଛାତ୍ରବତ୍ସଳତା, କର୍ମକୁଶଳତା ଇତ୍ୟାଦି ଥିଲା ତାଙ୍କର ସହଜାତ ଗୁଣ । ମୋର ଗୋଟିଏ ଗଳ୍ପ ପୁସ୍ତକର ପାଣ୍ଡୁଲିପି ସଂଶୋଧନ ଓ ଦିଗଦର୍ଶନ ସହିତ ବିସ୍ତୃତ ଭୂମିକାଟିଏ ଲେଖି ଦେଇଥିବାରୁ ମୁଁ ତାଙ୍କ ପାଖରେ କୃତଜ୍ଞ ।

ଈଶ୍ୱର କରନ୍ତୁ ସାରଙ୍କର ଆଗାମୀ ଦିନ ଗୁଡ଼ିକ ଅନୁଭୂତି ଦ୍ୱାରା ବଳିଷ୍ଠ ହୋଇ ପରିବାର ସମେତ ସମାଜକୁ ଦିଗ୍‌ଦର୍ଶନ ଦେଉ । ତାଙ୍କର ଅଗଣିତ ଛାତ୍ରଛାତ୍ରୀ, ସହକର୍ମୀ ଓ ସହଧର୍ମୀମାନଙ୍କର ସ୍ନେହ, ସହାନୁଭୂତି ଓ ସମ୍ମାନ ତାଙ୍କର ଚଳାପଥକୁ ଋଦ୍ଧିମନ୍ତ କରୁ ।

ଭୁବନେଶ୍ୱର
ମୋ-୯୮୬୧୩୯୧୭୯୧



# ବାପାଙ୍କ ଜନ୍ମଦିନରେ

ନୀତା

ମାନବ ଜୀବନ ନୁହଁଇ କେବଳ
ବର୍ଷମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକାତାର
ଜୀବନର ମାନଦଣ୍ଡ ।
ଯାହାଙ୍କ ପାଇଁ ଲେଖୁଛି କବିତା
ସିଏ ମୋ ପୂଜ୍ୟ ନମସ୍ୟ
ଜୀବନ ଯୁଦ୍ଧରେ ଅପରାଜେୟ ସେ
ମଥା ହୋଇଯାଏ ନତ
ଅଠର ବର୍ଷରୁ ସହି ଆସିଛନ୍ତି
ବହୁ ଘାତ ପ୍ରତିଘାତ ।
ଜୀବନ ଜଞ୍ଜାଳ ଅଭାବକଷଣ
କରିନାହିଁ ପଥଭ୍ରଷ୍ଟ
ତଥାପି ନିଜର କର୍ତ୍ତବ୍ୟନିଷ୍ଠାରେ
ହୁଅନ୍ତିନି ଲକ୍ଷ୍ୟଭ୍ରଷ୍ଟ ।
କର୍ମଯୋଗୀ ସିଏ ଥାନ୍ତି କର୍ମରତ
ସର୍ବଦା ଲେଖନୀ ଚଳେ
ବହୁ ଗଳ୍ପ ଉପନ୍ୟାସ ଓ କବିତା
ଲେଖୁଥାନ୍ତି ସବୁବେଳେ ।
ଗଛପତ୍ର ଚେର ଔଷଧ ଓ ପଥ୍ୟ
ସବୁରେ ଅଗାଧଜ୍ଞାନ
ସ୍ନେହବୋଳା ଭାଷା ବୁଝେଇବା କଳା

ବଦଳାଏ ପ୍ରାଣୀ ମନ ।
ଏ ଶୁଭବେଳାରେ ଜନ୍ମତିଥିରେ
କରୁଛି ମୁହିଁ ଜଣାଣ
ଭାଗ୍ୟଲକ୍ଷ୍ମୀ ସଦା ପ୍ରସନ୍ନ ହୁଅନ୍ତୁ
କିବା ରାତ୍ରି ଆଉ ଦିନ ।
ପଞ୍ଚସ୍ତରୀ ବର୍ଷ ପୂର୍ତ୍ତି ଉପଲକ୍ଷ୍ୟେ
କରେ ମୁହିଁ ନିବେଦନ
ଜଗତକରତା ପୁଷ୍ପିତ କରନ୍ତୁ
ବାପାଙ୍କ ବାକି ଜୀବନ ।



# In A Pursuit Of Describing You

Prakirti Jena

Can be described the amount os water in a sea,
Can be described the no of stars in the sky.
Can be described the abitual emotion of a human.
But cannot you be described as ordminary man.

Life is like stream
Undereath a thousands of dream
With longings lineited
But hundles unlimited

Crossing these hundles
Ignoring all funders
He is the man,
Who is always humane

Getting inspried by great personalities was not his vim.
But to see a dream, to build his team was his
greatest desire for which he is even admired.

His life is coupled up of joy
With a small cup of cry.
But even did he let the cup to get full.
By using his every can adore as a tool.

When we see him we feel like a blessing
By thinking that God have also, send him with a series of tossings.
This old cintains a very few like you.
But this would cannot afford a single pennytube like you.

If one day you see yourself from our eyes
You will find yourself to be a man blessed twice.
First for you being such a greatinspiration and second for being such without a single perspiration.

I stouted myself in a persuit of describing you,
But failed in ouaching my destination today too.
I will try to be like you.
Even could't but atleast I will try to.



# ବୃଦ୍ଧବାହାରର ମଣିଷ

*ମଞ୍ଜୁଳାଶର୍ମା ଭଟ୍ଟାଚାର୍ଯ୍ୟ*

'ମୃଣାଳ' ! ଟିକେ ରହି ଯା । କାହାକୁ ପଚାରିଲେ ଘର ଚିହ୍ନି ହେବ ।' କଥାପଦକ କହି ପଲ୍ଲବ ହଠାତ୍ ଅଟକି ଯାଇଥିଲା ।

ମୋର ଅତି ଘନିଷ୍ଠ ବନ୍ଧୁ ପଲ୍ଲବ ଆଉ ମୁଁ (ଠେଲାଟା) ଠେଲି ଠେଲି ବସ୍ତିଭିତରେ ଗୋଟିଏ ଅଣଓସାରିଆ ସାନଗଳି ଭିତରେ ଯାଉଥିଲୁ । ସେଇ ଟ୍ରଲି ଉପରେ ଶୋଇରହିଥିଲା ଟ୍ରଲିର ସ୍ୱତ୍ୱାଧିକାରୀ ଓ ଚାଳକ ଘନକାନ୍ତ ଟ୍ରଲିବାଲା ! କିନ୍ତୁ ସେ ଏକବାର ନିଶ୍ଚୁପ ହୋଇ ଶୋଇଥିଲା । ସେ ଜୀବିତ ଅବସ୍ଥାରେ ବସଜ୍ଞାନରେ ଥିଲେ ତାର ପରୁଣାଟ୍ରଲିରେ ଶୋଇରହି ଆମକୁ ସେଇଟା ଠେଲି ନେବାକୁ ସୁଯୋଗ ଦେଇ ନଥାନ୍ତା ।

ନିର୍ଜନ ରାତିରେ ଅଣଓସାରିଆ ଗଳିରେ ଗଲାବେଳେ ଟ୍ରଲିରେ ଖଞ୍ଜା ହୋଇଥିବା ପିତଳ ବେଲଟିର ଟିଂ ଟିଂ ଶବ୍ଦ ଛଡ଼ା ଅନ୍ୟ କୌଣସି ଶବ୍ଦ ଆମ କାନରେ ପଡୁନଥିଲା । ହୁଏତ ଏଇ ବସ୍ତିର ବାସିନ୍ଦା ଦିନମଜୁରିଆ ମେହନତୀ ଲୋକମାନେ କ୍ଲାନ୍ତରେ ଶୋଇପଡ଼ିଥିଲେ । ସେଇଟାରେ ଲାଗିଥିବା କାଠହ୍ୟାଣ୍ଡଲର ଡ଼ାହାଣ ପାଖରେ ବନ୍ଧା ହୋଇଥାଏ । ନୂଆକିଣା ଗୋଟାଏ ହାତଲ୍ୟାମ୍ପ ।

ମୁଁ ଚାଲୁଥାଏ ପଲ୍ଲବ କଥାଭାବିଭାବି । ଆମେ ଆଗେଇ ଚାଲୁଛୁ ସିନା, ଘନକାନ୍ତ ଘରଟାତ ଜଣାନାହିଁ । କାହାକୁ ପଚାରିନେଲେ ଘରଟା ପାଇବାରେ ଅସୁବିଧା ହେବନି । ଛୋଟ ଛୋଟ ଝୁପରିରେ ପୂର୍ଣ୍ଣବସ୍ତିଟିର ଗୋଟିଏ ଝୁପରିରୁ ହାତରେ ଟପାବତୀଟେ ନେଇ ରାସ୍ତାକୁ ଚାହିଁ ରହିଥିବା ଏକ ବୁଢ଼ୀକୁ ଦେଖିଲୁ । ହୁଏତ ତା'ର ପୋଷା ଛେଳିଟା ଏପର୍ଯ୍ୟନ୍ତ ଫେରିନାହିଁ ବା ତାର ଏକୋଇର ବଳା ବିଶିକେସନ ଯେ କି ଏକମାତ୍ର ରୋଜଗାରିଆ ସେ ତାହାର ଦିନକର ଖଟଣି ଶେଷ କରି ଘରକୁ ଫେରିନାହିଁ ।

ମୁଁ ବୁଢ଼ୀ ପାଖକୁ ଯାଇ ପଚାରିଲି ଆଇ, ଘନକାନ୍ତ ଟ୍ରଲିବାଲାର ଘରଟା

କିଏ ଚିହ୍ନେଇ ଦେବକି ? ଘନ ନାମଟା ଉଚ୍ଚାରଣ କରୁ କରୁ ଟ୍ରଲି ଉପରେ ଲୁଗାରେ ଢ଼ଙ୍କା ହୋଇଥିବା ନିଥର ଦେହ ଉପରେ ମୁଁ ଆଖି ବୁଲାଇ ନେଲି, ମନଟା ଗଭୀର ଦୁଃଖରେ ଭାଙ୍ଗି ପଡ଼ିଲା ।

ଏଇ ଯୋଉ ଧଳାଫୁଲ ବୁଦାଟା ଘର ଆଗରେ ଦେଖୁଛ... ସେଇଟା ଘନର ଘର । ତା'ର ସାନ ପିଲା ଦିଟାଙ୍କ ବହିରୁ ପାଠ ଦୋହେରେଇ ବା ସ୍ୱର ଦାଣ୍ଡକୁ ଶୁଭୁଛି । ଟ୍ରଲିଟା ଉପରେ କ'ଣ ଅଛି ବୁଢ଼ୀଟା ତା ପରଳ ଆଖିରେ ଠଉରେଇ ନପାରି ସହଜରେ ଏଇ ଉତ୍ତର ଦେଇଥିଲା ।

ଗୋଟିଏ ଘର ପାରିହେବା ପରେ କଞ୍ଚନ ଫୁଲ ବୁଦାର ତଳେ ଥିବା ବାଉଁଶ ଟାଟିଟାକୁ ଘୁଞ୍ଚାଇ ଟ୍ରଲିଟାକୁ ସିଧା ସିଧା ଦାଣ୍ଡରେ ରଖିଦେଲୁ । ପଲ୍ଲବ ଆଉ ମୁଁ ଦୁହେଁ ଦୁହିଁଙ୍କୁ କେତେ ସମୟ ଚାହିଁ ରହିଲୁ, ଘୁଙ୍ଗାପରି । ଆମର ତାଳୁରୁ ତଳିପା ପର୍ଯ୍ୟନ୍ତ ଆବେଗରେ କମ୍ପୁଥିଲା । ଛୋଟ ଛୋଟ ଝୁପୁରି ଭିତର ବାଡ଼ରୁ ମିଞ୍ଜି ମିଞ୍ଜି ଆଲୁଅ ଆସୁଥିବା ଦ୍ୱାର ମୁହଁକୁ ଟ୍ରଲିଟା ପେଲି ରଖିଦେଇଥିଲୁ । ଶୁଭୁଥିଲା । ଶିଶୁର ବହିପଢ଼ାର ସ୍ୱର- "ରତନ ଦୁଃଖିଆ ଲୋରା (ପିଲା) ଦୁଖିଆକୁ ସାହାଯ୍ୟ କରିବା ଲାଗୋ" ।

ପଲ୍ଲବ ଏବଂ ମୁଁ ଆଉଥରେ ଚାହଁ ଚୁହିଁ ହେଲୁ !...କଣ କହିବା କେମିତି କଥାଟା କହିବା ? ମନରେ ନାନା ଚିନ୍ତା.... ।

ମା, ଦର୍ଜାଟା ଖୋଲିଦେ, ବାପା ଆସିଲେଣି । ସେ ଗଲାବେଳେ କହିଯାଇଥିଲେ, ଆଜି ଭଲ ରୋଜଗାର ହେଲେ ଆମ ପାଇଁ ଲାମ୍ପଟାଏ ଆଣିବେ ବୋଲି, ଜଲଦି ଖୋଲ ସେମାନେ ବେଲର ଶବ୍ଦଟା ଶୁଣିଥିଲେ ବୋଧହୁଏ ।

ବାଉଁଶ କବାଟଟା ଖୋଲି ବାହାରକୁ ଆସିଥିଲା ଜଣେ ୩୫-୪୦ ବର୍ଷିୟା ମହିଳା । ସାଥିରେ ତା'ର ୬-୭ ବର୍ଷ ଆଉ ୯-୧୦ ବର୍ଷ ବୟସର ଦୁଇଟି ବାଳକ ।

ମୋ ମୁହଁକୁ ସାମ୍ନାସାମ୍ନି ଚାହିଁ ପଲ୍ଲବ ଆରମ୍ଭ କଲା ଏଇଟା ଘନକାନ୍ତ ଘରତ । ନାରୀଟି ଆଖିରେ ଯେମିତି ନିଶ୍ଚିତ ଦୁର୍ଯୋଗର ଶଂସୟ ସ୍ପଷ୍ଟ ବାରିହୋଇ ଉଠୁଥିଲା । ଏଁ.. ହଁ ହଁ ସେ ଟ୍ରଲି ଉପରେ... ଟିକିଏ ନୀରବ ରହି...ତାଙ୍କୁ ଆମେ

ନେଇ ଆସିଛୁ... କହି ଯନ୍ତ୍ରବତ୍ ଧଳା ଲୁଗାଟା କାଢ଼ି ଦେଖାଇ ଦେଇଥିଲୁ ।

ତା ପରଠାରୁ ଆମେ ଅନେକ ସମୟ ପର୍ଯ୍ୟନ୍ତ ଜଡ଼ପରି ରହିଲୁ । ମଣିଷ ଜୀବନ, ସୁଖ, ଦୁଃଖ, ଯନ୍ତ୍ରଣା ପ୍ରଭୃତି କ'ଣ - ଏଇ ଦାର୍ଶନିକ ଚିନ୍ତାରେ ବୁଡ଼ି ରହିଥିଲୁ ।

ବିକଳ ଚିତ୍କାର,କାନ୍ଦ ବୋବାଳି ମୁଣ୍ଡପିଟା ଆଜି ଶୁଣି ପାଖ ପଡ଼ୋଶୀ ଆସି ରୁଣ୍ଡ ହେଲେ । ଆମେ ସମବେତ ଜନତାକୁ ସେଇ ମର୍ମନ୍ତୁଦ କାହାଣୀ କହିବାକୁ ବାଧ ହେଲୁ ।

ସଞ୍ଜବେଳ ପ୍ରାୟ ୭.୩୦ ହେବ । ଆମେ ବହି ଦୋକାନ ପେଣ୍ଟରେ ସବୁ ଦିନ ପରି ଆଡ୍‌ଡ଼ା ମାରିଥିଲୁ । ପାଖ ତେଜରାତି ଦୋକାନରେ ଘନ ଟ୍ରଲି ବାଲା ପହଞ୍ଚି ଦୋକାନି ସହିତ କ'ଣ କଥା ହେଉଥିଲା । ନାନା ବିଷୟରେ ଗଳ୍ପ ଓ ଗୁଜବ, ରାଜନୀତି, ସିନେମା, ସାହିତ୍ୟ, ଭୂମିକମ୍ପ, ହତ୍ୟାକାଣ୍ଡ ଉଲଫା (ସନ୍ତ୍ରାସବାଦ) ଆଦି ନେଇ ସରଗରମ ଆଲୋଚନା । ଯେତେବେଳେ ଘନ କାନ୍ଦ କାନ୍ଦ କଣ୍ଠରେ ଦୋକାନିକୁ ହାତଯୋଡ଼ି କହିଲା- " ଆଜି ସକାଳ ବେଳାଟା ନିର୍ବାଚନ ଶୋଭାଯାତ୍ରାରେ ଗଲା । ଉପର ବେଳାର ଦୁଇଟା କ୍ଷେପର ପଇସାରେ ପିଲାମାନଙ୍କର ବହୁଦିନର ଅଳି ପୂରଣ ପାଇଁ ଲ୍ୟାମ୍ପଟାଏ କିଣିଲି । ଆଜି ବାବୁ, ବାକିରେ ଚାଉଳ ଦି କିଲୋ, ଆଳୁ ଅଧାକେଜି ଓ ଡ଼ାଲି ପାଏ ଦିଅନ୍ତୁ, ମୁଁ କାଲି ପଇସା ଶୁଝିଦେବି ।"

"ନାନା, ମୁଁ ତୋତେ ବାକିଦେଇ ପାରିବିନି ।" ପଇସା ନଥିଲେ ନଖାଇମର' ରାଗରେ ଦୋକାନି ଗାଳି ବର୍ଷଣ କରି ଲାଗିବାରୁ ଆମେ ସେମାନଙ୍କ କଥାବାର୍ତ୍ତା ଉପରେ ଗୁରୁତ୍ୱ ଦେବାକୁ ବାଧ ହୋଇଥିଲୁ ।

ସେ ସମୟର ନିର୍ବାଚନ ପ୍ରଚାର ଧୁମଧାମରେ ଚାଲିଥିଲା । ଭୋଟ ପ୍ରଚାରର ନିଆଁଟା ସାରା ସହରକୁ ତତେଇ ଦେଇଥିଲା । ସ୍ଥାନୀୟ ଛାତ୍ରନେତା ସମୀରଣ ଫକୁନ ଏକ ଆଞ୍ଚଳିକ ଦଳର ପ୍ରାର୍ଥୀ ହୋଇ ଠିଆ ହେବାରୁ ଜନସାଧାରଣଙ୍କ ମନରେ ପ୍ରବଳ ଉତ୍ସାହ ଓ ଉତ୍ତେଜନା ସମୀରକୁ ଜିତେଇବା ପାଇଁ । ଛାତ୍ର-ଛାତ୍ରୀ, ପୁରୁଷ-ମହିଳା, ବ୍ୟବସାୟୀ, ଟ୍ରଲିବାଲା, ରିକ୍ସାବାଲା ପ୍ରଭୃତି

ସବୁ ଶ୍ରେଣୀର ଲୋକେ ଲାଗି ପଡ଼ିଥିଲେ । ସେ ଦିନର କାର୍ଯ୍ୟସୂଚୀ ଅନୁଯାୟୀ ବିରାଟ ପ୍ରୋସେସନ ବାହାରି ଥିଲା । ଟ୍ରଲିବାଲା ଓ ରିକ୍ସାବାଲା ମାନଙ୍କ ଧାଡ଼ି ଆଗରେ ଥିଲା ଘନକାନ୍ତ ଟ୍ରଲିବାଲା । ଏସବୁ ବେଳେ ସେଥାଏ ଆଗୁଆ । ଟ୍ରଲିବାଲା ହେଲେ ବି ସେଥିଲା, ମେଳାପୀ ଓ ଜନପ୍ରିୟ । ସେ ଯୁବସମାଜର ଥିଲା ପ୍ରିୟ-'ଘନାଇ" ।

ଦୋକାନିର ଗାଳିଗୁଲଜ ଶୁଣି ସେ ଟ୍ରଲିଟାକୁ ବୁଲାଇବାକୁ ଚେଷ୍ଟା କଲାବେଳେ ସେ ଯନ୍ତଣା ଅନୁଭବ କଲା । ସେ ଛାତିକୁ ଦୁଇହାତରେ ଜୋରରେ ଚିପିଧରି ରାସ୍ତା ମଝିରେ ପଡ଼ିଯାଇଥିଲା । ପାଖର ଲୋକମାନେ କୌତୁହଳରେ ଜମା ହୋଇଯାଇଥିଲେ ।

ଏଇଟା କିଏ ତା'ର କ'ଣ ହୋଇଛି ? ଆଜି ବୋଧେ ବେଶି ହୋଇଯାଇଛି !... ନାନା ପ୍ରଶ୍ନ ମଧ୍ୟରେ ଘଟଣାଟା ଜଟିଳ, କିମାକାର ହେବାର ଲାଗିଲା । ସେମାନଙ୍କ ମଧ୍ୟରୁ ଜଣେ ଦି ଜଣ କହିଲେ ଲୋକଟାର ଅପସ୍ମାର ରୋଗ ଥାଇପାରେ । ଏହିପରି ନାନା ମନ୍ତବ୍ୟ... । ପାଞ୍ଚମିନିଟ ପରେ ଗହଳ ଟିକିଏ କମିବାରେ ଲାଗିଲା । କାରଣ ବର୍ତ୍ତମାନର ଦିନରେ ହତ୍ୟାକାଣ୍ଡ, ବୋମାବିସ୍ଫୋରଣ ଆଦି ଏକ ଦିହସୁହା ସାଧାରଣ ଘଟଣା ହୋଇପଡ଼ିଲାଣି । ଆମ ଆଡ୍‌ଡ଼ାର ସଦସ୍ୟମାନଙ୍କ ଉଦ୍ଦେଶ୍ୟରେ ପ୍ରସ୍ତାବଟେ ଦେଲି- ଚାଲ, ତାକୁ ହସ୍ପିଟାଲକୁ ନେଇଯିବା । ମୋର ଏ ପ୍ରସ୍ତାବକୁ ଅନ୍ୟମାନେ ଗୁରୁତ୍ୱ ଦେଲାଭଳି ମନେହେଲା ନାହିଁ । କିନ୍ତୁ ପଲ୍ଲବ ମୋ ପ୍ରସ୍ତାବକୁ ସମର୍ଥନ ଜଣାଇ ହସପିଟାଲ ଯିବାକୁ ବାହାରିଲା ।

ଆଉ ବିଳମ୍ବ ନ କରି ଘନକୁ ତା ଟ୍ରଲିରେ ଉଠାଇ ହସପିଟାଲକୁ ସିଧା ଚାଲିଲୁ । ହସପିଟାଲ ଗେଟ୍‌ରେ ପଶିବା ପୂର୍ବରୁ ଯନ୍ତଣାକାତର ଘନକକାର ମୁହଁକୁ ଥରେ ଚାହିଁଦେଲି । ଏମରଜେନ୍ସି ୱାର୍ଡ଼ରେ ଜଣେ କର୍ତ୍ତବ୍ୟରତ ଡାକ୍ତର ଥିଲେ । ତାଙ୍କୁ ସବୁକଥା ବୁଝାଇ କହିବାରୁ ଡାକ୍ତର ଷ୍ଟେଥସକୋପ୍ ଲଗାଇ ତାହାର ଛାତିଟା ପରୀକ୍ଷା କଲେ ଓ ପଲସ୍ ଦେଖି କହିଲେ "ଏ ଚାଲିଗଲାଣି । କୌଣସି କଥାରେ ସକ୍‌ପାଇ ତାହାର ହାର୍ଟଫେଲ୍ ହୋଇଛି । ଏବେ ନେଇଯାଅ ।"

ତାଙ୍କ କଥାରୁ ମନେ ହେଉଥିଲା-ଏଇଟା ଯେମିତି ଏକ ସାଧାରଣ ଘଟଣା । ଡାକ୍ତରଙ୍କ କଥାଶୁଣି ମୋର ଓ ପଲ୍ଲବର ହାର୍ଟଫେଲ ହେବା ଅବସ୍ଥା ହୋଇଯାଇଥିଲା । ଇତି ମଧ୍ୟରେ ଡାକ୍ତର ଜଣକ ଦୂରେଇ ଯାଇଥିଲେ । ପଲ୍ଲବ ଓ ମୁଁ ସାହସ କରି ଆଗେଇଲୁ । ଆମ ଦୁହିଁଙ୍କ ପକେଟରେ ଥିବା ପଇସାକୁ ଏକାଠି କରି ଧଳା ମାର୍କିନ କପଡ଼ା ଓ ଧୂପକାଠି ପ୍ୟାକେଟ ଟିଏ କିଣି ଶବକୁ ତା ଘରକୁ ନେଇଯିବାର ସିଦ୍ଧାନ୍ତ ନେଲୁ । ହସପିଟାଲ ହତାରେ ରୋଗୀମାନଙ୍କ ସହିତ ଆସିଥିବା ଲୋକମାନଙ୍କ ମଧ୍ୟରୁ କେଇଜଣ ପାଖକୁ ଆସି ଅବସ୍ଥାଟା ବୁଝିନେଲେ ଓ କେତେକ ଭିନ୍ନ ଭିନ୍ନ ମନ୍ତବ୍ୟ ଓ ପରାମର୍ଶ ଦେଲେ । ପାଖରେ ଥିବା ପ୍ରସୂତି ବିଭାଗରୁ ସଦ୍ୟଜାତ କଅଁଳା ପିଲାର କୁଆଁ କୁଆଁ ସ୍ୱର ସହିତ ପରିବାର ଓ ଆତ୍ମୀୟମାନଙ୍କ ଆନନ୍ଦ କୋଳାହଳ ମଧ୍ୟ ଶୁଭୁଥିଲା । ବୋଧହୁଏ ନବଜାତକର ଆଗମନରେ ଆକାଙ୍କ୍ଷିତ ଅଭିଳାଷଟା ପୂର୍ଣ୍ଣ ହୋଇଥିଲା । ପରେ ଆମେ ପଚାରି ପଚାରି ଏଠି ଆସି ପହଞ୍ଚିଲୁ ।

ଦାଣ୍ଡରେ ରୁଣ୍ଡ ହୋଇଥିବା ଶୋକ ବିହ୍ୱଳ ଲୋକମାନେ ଘଟଣାଟା ବୁଝିପାରି ପଲ୍ଲବ ଆଉ ମୋର ସରଳତା ଓ ମାନବିକତାର ପ୍ରଶଂସା କରିଥିଲେ । ବର୍ତ୍ତମାନ କାଳରେ ଆମେ କହିଥିବା କଥାକୁ ସହଜରେ ଏଇଲୋକମାନେ ବିଶ୍ୱାସ କରି ନେଇଥିବାରୁ ଆମେ ଦୁହେଁ ଅନ୍ତରରୁ ନୀରବ ଧନ୍ୟବାଦ ଜଣାଇଥିଲୁ ।

ଗୋଟିଏ ସରଳ ଜୀବନୀର ଅବସାନ ଘଟିଲା । ଏପରି ଲୋକଙ୍କୁ ନେଇ ଗଢ଼ାଯାଇପାରେ ଏକ ସୁସ୍ଥ ଅନାବିଳ ସମାଜ ।

ଏହା ମଧ୍ୟରେ ସାନ ସାନ ବାଳକ ଦୁହେଁ ଟ୍ରଲିରୁ ଲ୍ୟାମ୍ପଟାକୁ ଖୋଲିବାକୁ ଚେଷ୍ଟାକରିବା ଦେଖି ମୁଁ ହୃଦୟରେ ଗଭୀର ଯନ୍ତ୍ରଣା ଅନୁଭବ କରିଥିଲି ।



# ତୁଳନାତ୍ମକ ସାହିତ୍ୟ ଗବେଷଣା ଓ ଗବେଷକ ଡଃ ଲକ୍ଷ୍ମୀଧର ଦାସ

ଡକ୍ଟର ବଳରାମ ଦାସ

"କୌଣସି କବି ବା ଶିଳ୍ପୀର ଏକକ ମୂଲ୍ୟାୟନ ସମ୍ଭବପର ନୁହେଁ। ଉତ୍କର୍ଷ ବା ଅପକର୍ଷ ପ୍ରତିପାଦନ ନିଶ୍ଚିତ ଭାବରେ ଆପେକ୍ଷିକ ବିଚାର। କୌଣସି ସାହିତ୍ୟିକର କୃତିତ୍ୱର ମୂଲ୍ୟାୟନ ସମଧର୍ମୀ ଅନ୍ୟ ଏକ ସାହିତ୍ୟିକଙ୍କର କୃତି ସହିତ ତୁଳନାତ୍ମକ ଅଧ୍ୟୟନ ମାଧ୍ୟମରେ ପ୍ରତିଷ୍ଠା କରିବା-ସମୀକ୍ଷା ଶାସ୍ତ୍ରର ଏକ ସ୍ୱୀକୃତ ମାର୍ଗ" (ଟି.ଏସ୍.ଏଲିଅଟ)। ସମୀକ୍ଷା ଶାସ୍ତ୍ର ସଂପର୍କରେ ଏଲିଅଟଙ୍କର ଏପରି ଚମତ୍କାର ମାର୍ଗ ଦର୍ଶନ ରହିଥିଲେ ବି ସମୀକ୍ଷା ଜଗତରେ ସହଜିଆ ମାନଙ୍କର ରାଜତ୍ୱ ଯୋଗୁଁ ଆଜି ମଧ୍ୟ ଗବେଷଣାତ୍ମକ ସମୀକ୍ଷାର ଅଭାବ କିଛି କମ୍ ନୁହେଁ। କେବଳ ସମୀକ୍ଷା ନୁହେଁ, ସାହିତ୍ୟର ଅଧିକାଂଶ ବିଭାଗରେ ଏପରି ଦୁରବସ୍ଥାର ଚିତ୍ର ସ୍ପଷ୍ଟ। ସମୀକ୍ଷା କହିଲେ ନିନ୍ଦା, ପ୍ରଶଂସା ଅଥବା ନିନ୍ଦା-ପ୍ରଶଂସାର କକ୍‌ଟେଲକୁ ଆମେ ଅଧିକ ପ୍ରାଧାନ୍ୟ ଦେଇଥାଉ। ଏହା ପରିସ୍ଥିତିକୁ ଉଲ୍ଲସିତ ଅଥବା କ୍ରୋଧିତ କରିବା ବ୍ୟତୀତ ଅନ୍ୟ କିଛି ମହତ ଉଦ୍ଦେଶ୍ୟ ସାଧନ କରିପାରେ ନାହିଁ। ଏହି ଦୃଷ୍ଟିକୋଣରୁ ଗବେଷକ ଡକ୍ଟର ଲକ୍ଷ୍ମୀଧର ଦାସଙ୍କ ଗବେଷଣା ଏକ ଅନନ୍ୟ ବ୍ୟତିକ୍ରମ। ବଙ୍ଗଳା ସାହିତ୍ୟର ପ୍ରସିଦ୍ଧ କଥାଶିଳ୍ପୀ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ଓ ଓଡ଼ିଆ ସାହିତ୍ୟର ପ୍ରସିଦ୍ଧ କଥାଶିଳ୍ପୀ ଫକୀର ମୋହନ ସେନାପତିଙ୍କ କଥା ସାହିତ୍ୟରେ ଚରିତ୍ରମାନଙ୍କର ତୁଳନାତ୍ମକ ଗବେଷଣା, ଓଡ଼ିଆ ଗବେଷଣା ଓ ସମାଲୋଚନା କ୍ଷେତ୍ରକୁ ଯେପରି ବିତ୍ତଶାଳୀ କରିଛି, ତାହା ଯଥାର୍ଥରେ ଅତୁଳନୀୟ। ଅତ୍ୟନ୍ତ ଆନନ୍ଦ ତଥା ଆଶ୍ୱାସନାର କଥା ହେଉଛି, ଏହି କଷ୍ଟକର ତଥା ସାଧନା ସାପେକ୍ଷ ଉଚ୍ଚକୋଟୀର ଗବେଣୋର ସାଫଲ୍ୟ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ଗବେଷଣା ଡକ୍ଟର ଦାସଙ୍କୁ ପି.-ଏଚ୍.ଡ଼ି. ଡିଗ୍ରୀରେ ସମ୍ମାନିତ କରିଛି।

ବିଷୟବସ୍ତୁର ବିଶାଳତା ଓ ବିବିଧତା ଦୃଷ୍ଟିରୁ ଗବେଷକ ଡକ୍ଟର ଦାସ ସମଗ୍ର ପ୍ରସଙ୍ଗଟିକୁ ସାତଟି ପରିଚ୍ଛେଦରେ ବିଭକ୍ତ କରିଛନ୍ତି। ସେ ଉଭୟ ଶିଳ୍ପୀଙ୍କର ମାନସିକତାକୁ ଖୁବ୍ ସୂକ୍ଷ୍ମ ଦୃଷ୍ଟିରୁ ବିଚାର କରିଛନ୍ତି। ଥିସିସ୍‌ର ଉପୋଦ୍‌ଘାତରେ ସେ

ଦୁଇ ସ୍ରଷ୍ଟାଙ୍କ ସମୟ, ପରିବେଶ, ପରିସ୍ଥିତି, ପାରିବାରିକ, ଶିକ୍ଷାଗତ, ବୃତ୍ତିଗତ ସ୍ଥିତିର ପୁଙ୍ଖାନୁପୁଙ୍ଖ ପର୍ଯ୍ୟାଲୋଚନା କରି ତାଙ୍କର ପାଠକ ତଥା ଅନୁସନ୍ଧିତ୍ସୁ ମାନଙ୍କୁ ଜଣାଇ ଦେବାକୁ ପ୍ରୟାସ କରିଛନ୍ତି ଯେ ପ୍ରତିଭାର ଏକ ନିଜସ୍ୱ ପୃଥିବୀ ରହିଛି । ଉଭୟ ଶିଳ୍ପୀ ଆଧୁନିକ ସାହିତ୍ୟର ପ୍ରକୃତ ରୂପକାର ଥିଲେ । ବଙ୍କିମଚନ୍ଦ୍ରଙ୍କ କ୍ଷେତ୍ରରେ ପରିସ୍ଥିତି ସଂପୂର୍ଣ୍ଣ ଅନୁକୂଳ ଥିବାବେଳେ ଫକୀରମୋହନଙ୍କ ପରିସ୍ଥିତି ଥିଲା ଏହାର ବିପରୀତ । ଅଥଚ ଭଗୀରଥ ପରି ଏମାନେ ଯେଝା-ଯେଝା ସାହିତ୍ୟରେ ଆଧୁନିକ କାଳର ବହୁ ବିଭାବର ପବିତ୍ର ଗଙ୍ଗୋତ୍ରୀକୁ ଆଣି ସାହିତ୍ୟ ଭୂମିକୁ ଐଶ୍ୱର୍ଯ୍ୟମୟ କରିଦେଇଥିଲେ । ଗବେକେ ଉପୋଦ୍‌ଘାତରେ ତାର ତୁଳନାତ୍ମକ ଚିତ୍ର ଉପସ୍ଥାପନ ସହ ଅବରୁଦ୍ଧ ଦ୍ୱାରଟି ଖୋଲି ଦେଇଛନ୍ତି । ଏହାଦ୍ୱାରା ଆଭ୍ୟନ୍ତରୀଣ ବିବିଧତାର ଉପଲବ୍ଧି ପାଇଁ ମାନସିକ ସ୍ଥିତି ପ୍ରସ୍ତୁତ ହୋଇପାରିଛି । କେବଳ ସେତିକି ନୁହେଁ, ଉଭୟ ସ୍ରଷ୍ଟାଙ୍କୁ ଆକଳନ କରିବାର ଉପଯୁକ୍ତ ଭିତ୍ତିଭୂମି ମଧ୍ୟ ପ୍ରସ୍ତୁତ ହୋଇଛି । ସେଥି ସହିତ ପ୍ରସଙ୍ଗ ଅନୁରୋଧରେ କଥା ସାହିତ୍ୟର ଶିଳ୍ପ ରୀତି ଓ ଚରିତ୍ର ଚିତ୍ରଣର ତାତ୍ତ୍ୱିକ ଆଲୋଚନା ପୂର୍ବକ ଆଧୁନିକ ବଙ୍ଗଳା ଓ ଓଡ଼ିଆ କଥା ସାହିତ୍ୟର ଉନ୍ମେଷ, ସେତେବେଳର ସାମାଜିକ ତଥା ସାହିତ୍ୟିକ ପରିବେଶ ମଧ୍ୟରେ ତୁଳନା ମଧ୍ୟ ପ୍ରଥମ ପରିଚ୍ଛେଦରେ ପ୍ରାଧାନ୍ୟ ଲାଭ କରିଛି । ଗୋଟିଏ ଭାଷାର ସାହିତ୍ୟ ସହିତ ଅନ୍ୟ ଏକ ଭାଷାର ସାହିତ୍ୟକୁ ତୁଳନା କଲାବେଳେ ଉଭୟ ଭାଷାର ଉନ୍ମେଷ ତଥା ବିକାଶର ତୁଳନା ବିନା ଆଲୋଚନା ସମ୍ଭବ ତଥା ସମୀଚୀନ ନୁହେଁ । ଗବେଷକ ଡକ୍ଟର ଦାସ ଏହାର ଗୁରୁତ୍ୱ ଓ ଯାଥାର୍ଥ୍ୟ ଉପଲବ୍ଧି କରି ସ୍ୱାଭାବିକ ତଥା ଠିକଣା ପଦକ୍ଷେପ ଗ୍ରହଣ କରିଛନ୍ତି ।

ଦ୍ୱିତୀୟ ପରିଚ୍ଛେଦରେ ପ୍ରକାଶିତ ହୋଇଛି ବଙ୍କିମ୍ ଚନ୍ଦ୍ର ଓ ଫକୀରମୋହନଙ୍କ ଶିଳ୍ପୀ ମାନସର ତୁଳନାତ୍ମକ ଚିତ୍ର । ଏଥିରେ ଶିଳ୍ପୀ ଦ୍ୱୟଙ୍କର ଅନ୍ତର୍ଲୋକର ଉଦ୍‌ଘାଟନ ପାଇଁ ସେମାନଙ୍କର ଜୀବନ ଚର୍ଯ୍ୟା, ଶିକ୍ଷା, ସାଂସ୍କୃତିକ ପୃଷ୍ଠଭୂମି, ଧର୍ମଧାରଣା, ଜୀବନ ଦର୍ଶନ ଓ ଜୀବନ ପ୍ରତି ପ୍ରତିକ୍ରିୟାର ବିଚାର ପୂର୍ବକ ଉଭୟଙ୍କ ଦୃଷ୍ଟିରେ କିପରି ବିବିଧତା ତଥା ବୈଚିତ୍ର୍ୟ ରହିଛି, ତାହା ବିଶଦ ଭାବରେ ଆଲୋଚିତ ।

ତୃତୀୟ ପରିଚ୍ଛେଦରେ ଉଭୟ ଶିଳ୍ପୀଙ୍କର ଚରିତ୍ରମାନଙ୍କୁ ବିଭିନ୍ନ ଗୋଷ୍ଠୀରେ ବିଭାଜନ କରାଯାଇ କ୍ରମଶଃ ସେ ସଂପର୍କୀୟ ଆଲୋଚନାର ମାର୍ଗକୁ ଗବେଷକ ପ୍ରଶସ୍ତ କରିଛନ୍ତି । ଏ ସମ୍ପର୍କରେ ସ୍ୱକୀୟ ମତ ପ୍ରକାଶ କରିବାକୁ ଯାଇ ଗବେଷକ ଡକ୍ଟର ଦାସ ଯଥାର୍ଥରେ କହିଛନ୍ତି -"ଉଭୟ ସ୍ରଷ୍ଟାଙ୍କ ଲକ୍ଷ୍ୟ ଓ ଋହାଣୀଗତ ପାର୍ଥକ୍ୟ ହେତୁ ଚିତ୍ରିତ ଗୋଷ୍ଠୀ ମଧ୍ୟରେ ଭିନ୍ନତା ପରିଲକ୍ଷିତ । ଚଟ୍ଟୋପାଧ୍ୟାୟ ଚରିତ୍ରର ବ୍ୟକ୍ତି ସତ୍ତା ପରିସ୍ଫୁଟନ ଦିଗରେ ଅଧିକ ଗୁରୁତ୍ୱ ପ୍ରଦାନ କରିଥିଲା ବେଳେ ସେନାପତି ଚରିତ୍ର ଗୁଡ଼ିକର ବ୍ୟକ୍ତିକ ତଥା ସାମାଜିକ ସତ୍ତା ପରିପ୍ରକାଶ ଦିଗରେ ତୁଲ୍ୟ ଗୁରୁତ୍ୱ ପ୍ରଦାନ କରିଥିଲା ପରି ମନେହୁଏ । ଋଟ୍ଟାର୍ଜୀଙ୍କ ଦୃଷ୍ଟି ନରନାରୀଙ୍କ ପ୍ରଣୟ ଜୀବନ ଉପରେ ବିଶେଷ ଭାବରେ ନିବଦ୍ଧ କିନ୍ତୁ ସେନାପତି ମାନବର ଶୋଷଣ, ପୀଡନ, ଲୋଭ ଓ ପରସ୍ୱ ଅପହରଣ ବୃତ୍ତର ଉଦ୍‌ଘାଟନରେ ଅଧିକ ଯତ୍ନଶୀଳ । ଉଭୟ ଶିଳ୍ପୀ ରାଜା, ଜମିଦାର, ସାମନ୍ତ ଓ ଧନିକ ଶ୍ରେଣୀର ଚିତ୍ର ଅଙ୍କନ କରିଥିଲେ ମଧ୍ୟ ଆଭିମୁଖ୍ୟଗତ ଭିନ୍ନତା ପରିଲକ୍ଷିତ ।" ଏସବୁ ଚରିତ୍ର ଅଧ୍ୟୟନରେ ଗବେଷକ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, ଉଭୟଙ୍କ ଚରିତ୍ର ଚିତ୍ରଣରେ ସାମ୍ୟ ଅପେକ୍ଷା ବୈଷମ୍ୟର ମାତ୍ରା ଅଧିକ ।

ଚତୁର୍ଥ ପରିଚ୍ଛେଦର ବିଷୟ ହେଉଛି ଚରିତ୍ରମାନଙ୍କର ଚିତ୍ରଣଗତ ପ୍ରକାର ଭେଦ । ଏ ସମ୍ପର୍କରେ ବିଶଦ ଅନୁଶୀଳନ କରିବାକୁଯାଇ ଗବେଷକ ଉଭୟ ଶିଳ୍ପୀଙ୍କ ଚରିତ୍ରମାନଙ୍କର ଯେଉଁ ପ୍ରକାର ଭେଦ ଦର୍ଶାଇଛନ୍ତି, ସେ ସବୁ ହେଲା, ୧- ସାମାଜିକ ଓ ଐତିହାସିକ ଚରିତ୍ର, ୨- ମୁଖ୍ୟ ଓ ଗୌଣ ଚରିତ୍ର, ୩- ପୁରୁଷ ଓ ସ୍ତ୍ରୀ ଚରିତ୍ର, ୪- ପ୍ରତିନିଧି ସ୍ଥାନୀୟ - ସ୍ୱତନ୍ତ୍ର ଚରିତ୍ର, ୫- ଟାଇପ ଚରିତ୍ର, ୬- ସରଳ-ବର୍ତ୍ତୁଳ ଚରିତ୍ର, ୭- ସମାନ୍ତରାଳ ଓ ବିପରୀତ ଧର୍ମୀ ଚରିତ୍ର ଏବଂ ୮- ଆଦର୍ଶ ଚରିତ୍ର ଓ ବାସ୍ତବ ଚରିତ୍ର । ସାମାଜିକ ଓ ଐତିହାସିକ ଚରିତ୍ରରେ ଉଭୟ ଶିଳ୍ପୀଙ୍କର ବୈଶିଷ୍ଟ୍ୟ, ମୁଖ୍ୟ ଓ ଗୌଣ ଚରିତ୍ର ପ୍ରକାଶରେ ଉଭୟ ସ୍ରଷ୍ଟାଙ୍କର ଗଭୀର ଓ ବ୍ୟାପ୍ତ ଅନୁଭୂତି ଆଧାରରେ ବୈଚିତ୍ର୍ୟର ଆଲୋଚନା ସହ ଗବେଷକ ଫକୀରମୋହନଙ୍କ ଚିତ୍ରଣଗତ ମହତ୍ତ୍ୱ ଅଧିକ ଆକର୍ଷଣୀୟ ବୋଲି ଅନୁଭବ କରିଛନ୍ତି, ଯାହା ଖୁବ୍ ଯଥାର୍ଥ ମନେ ହୋଇଥାଏ । କେବଳ ସେତିକି ନୁହେଁ ଉଭୟ ସ୍ରଷ୍ଟାଙ୍କ ହାସ୍ୟରସ ସୃଷ୍ଟିର ତୁଳନା

କରି ଡକ୍ଟର ଦାସ ଫକୀରମୋହନଙ୍କ ହାସ୍ୟରସ ଅଧିକ ଉପଭୋଗ୍ୟ ବୋଲି ପ୍ରକାଶ କରିଛନ୍ତି । ଏହି ପରିଚ୍ଛେଦରେ ସମସ୍ତ ପ୍ରକାର ଚରିତ୍ରର ତୁଳନାତ୍ମକ ଚିତ୍ରଣରୁ ଗବେଷକଙ୍କ ବୈଜ୍ଞାନିକ ତଥା ତାତ୍ତ୍ୱିକ ଅନୁସନ୍ଧିତ୍ସୁ ମାନସିକତାର ବ୍ୟାପକ ପରିଚୟ ମିଳିଥାଏ ।

ପଞ୍ଚମ ପରିଚ୍ଛେଦରେ ରହିଛି ଉଭୟ ସ୍ରଷ୍ଟାଙ୍କ ଚରିତ୍ରଣର ଚିତ୍ରଗତ ମହତ୍ତ୍ୱ । ଏହି ବିଷୟକୁ ଯେଉଁ ସବୁ ଦୃଷ୍ଟିରୁ ତୁଳନା କରାଯାଇଛି, ତାହା ହେଲା – ୧ ଚରିତ୍ରର ପରିକଳ୍ପନା, ଉପସ୍ଥାପନା, ବିକାଶ ଓ ପରିଣତି, ୨–ଚରିତ୍ରର ଟିକିନିଖି ବର୍ଣ୍ଣନା, ୩- ଚରିତ୍ରର ମନସ୍ତତ୍ତ୍ୱ ଓ ଅନ୍ତର୍ଦ୍ୱନ୍ଦ୍ୱ, ୪- ଚରିତ୍ର ଚିତ୍ରଣରେ କାବ୍ୟାତ୍ମକତା, ୫- ଚରିତ୍ରର ସଂଳାପ, ୬- ଚରିତ୍ରର ମାନବୀୟ ଆବେଦନ ଓ ଚରିତ୍ରର ଅଶ୍ରୁ ଓ ସ୍ୱାଦ ଏବଂ ୭- ଚରିତ୍ରର ଅବିସ୍ମରଣୀୟତା । ଏହି ପର୍ଯ୍ୟାୟରେ ଗବେଷକ ଉଭୟ ସ୍ରଷ୍ଟାଙ୍କ କେତେକ ଚରିତ୍ରକୁ ଉଦାହରଣ ଭାବରେ ନେଇ ଉଭୟ ଚରିତ୍ରର ତୁଳନା କରିଛନ୍ତି । ଚରିତ୍ରର ମନସ୍ତତ୍ତ୍ୱ ଓ ଅନ୍ତର୍ଦ୍ୱନ୍ଦ୍ୱ ପର୍ଯ୍ୟାୟରେ ଡକ୍ଟର ଦାସ ଉଦାହରଣ ସ୍ୱରୂପ ମନୋରମା ଓ ବିଶାଖା ଚରିତ୍ରର ସମ୍ୟକ ବିଶ୍ଳେଷଣ କରି କହିଛନ୍ତି- " ସ୍ରଷ୍ଟାଦ୍ୱୟଙ୍କ ଲକ୍ଷ୍ୟ ଏବଂ ଉପସ୍ଥାପନା ଗତ ସ୍ୱାତନ୍ତ୍ର୍ୟ ମଧ୍ୟରେ ଆଲୋଚ୍ୟ ଚରିତ୍ର ଦୁଇଟିର ଆଧାରରେ ନାରୀ ହୃଦୟର ଚିରନ୍ତନୀ ଦ୍ୱନ୍ଦ୍ୱ ସଂଘାତ ଉନ୍ମୋଚିତ । ମନୋରମାର ମନୋଚିତ୍ର ବ୍ୟଞ୍ଜନା ଧର୍ମୀ । ଅଥଚ ବିଶାଖାର ଅନ୍ତର୍ଲୋକର ଚିତ୍ର ବିଶ୍ଳେଷଣ ଧର୍ମୀ । ବଙ୍କିମଚନ୍ଦ୍ର ସୂଚନା ବା ବ୍ୟଞ୍ଜନା ମାଧମରେ ବହୁ ଚରିତ୍ରର ମନସ୍ତତ୍ତ୍ୱ ଚିତ୍ରଣ କରିଥିବା ବେଳେ ସ୍ଥଳ ବିଶେଷରେ ସେ ଏଥି ନିମନ୍ତ ମନଃ ସମୀକ୍ଷା ଓ ସ୍ୱଗତୋକ୍ତିର ଆଶ୍ରୟ ନେଇଛନ୍ତି । ଅନୁରୂପ ଭାବେ ସେନାପତି କେତେକ ଚରିତ୍ରର ମନସ୍ତତ୍ତ୍ୱ ସୂଚନା ମଧ୍ୟରେ ପରିବେଷଣ କରିଯାଇଛନ୍ତି । ଆଜିର ଅନୁସୃତ ମନୋବିଶ୍ଳେଷଣ ଶୈଳୀ କଥାଶିଳ୍ପୀଦ୍ୱୟଙ୍କ କଥା ଶିଳ୍ପରେ ଦୁର୍ଲ୍ଲଭ ହେଲେ ମଧ୍ୟ ସ୍ଥଳ ବିଶେଷରେ ଚେତନା ପ୍ରବାହ ଧାରାର କେତେକ ଲକ୍ଷଣ ଏମାନଙ୍କ କୃତିରେ ଉପଲବ୍ଧ ହୋଇଥାଏ" । ଉଭୟ ଶିଳ୍ପୀଙ୍କ ସବୁ ପ୍ରକାର ଚରିତ୍ରକୁ ଖୁବ୍ ନିଷ୍ଠାର ସହିତ ତଉଲିବାରେ ଗବେଷକଙ୍କ କୃତିତ୍ୱ ସ୍ପଷ୍ଟତଃ ଅନୁଭବ କରାଯାଇଥାଏ ।

ଷଷ୍ଠ ପରିଚ୍ଛେଦ ହେଉଛି- ଚରିତ୍ରର ଚିତ୍ରଣଗତ ମହତ୍ତ୍ୱ( ୨ ) । ଏଥିରେ

ବଙ୍କିମଚନ୍ଦ୍ର ଓ ଫକୀରମୋହନଙ୍କ ପୁରୁଷ ଏବଂନାରୀ ଚରିତ୍ରର ତୁଳନାତ୍ମକ ଅଧ୍ୟୟନ କରାଯାଇଛି । ପଞ୍ଚମ ପରିଚ୍ଛେଦରେ ଯେଉଁ ସବୁ ପ୍ରସଙ୍ଗରେ ଆଲୋଚନା ହୋଇ ନାହିଁ, ଷଷ୍ଠ ପରିଚ୍ଛେଦରେ କେତୋଟି ନିର୍ବାଚିତ ଚରିତ୍ରକୁ ନେଇ ଗବେଷକ ଚିତ୍ରଣଗତ ସୌନ୍ଦର୍ଯ୍ୟର ସୂଚନାତ୍ମକ ଆଲୋଚନା କରିଛନ୍ତି । ସେଥିପାଇଁ ଚରିତ୍ରମାନଙ୍କୁ ନାରୀ ଓ ପୁରୁଷ ଭେଦରେ ବିଭକ୍ତ କରାଯାଇ ଉଭୟ ସ୍ରଷ୍ଟାଙ୍କୁ ତୁଳନା କରାଯାଇଛି । ଉଭୟଙ୍କ ନାରୀଜଗତ ସମ୍ପର୍କରେ ଗବେଷକଙ୍କ ଉପଲବ୍ଧି ହେଲା - "ଉଭୟ କଥା ଶିଳ୍ପୀଙ୍କ ନାରୀଜଗତ ବୈଚିତ୍ର୍ୟମୟ । ବଙ୍କିମଙ୍କ ସୃଷ୍ଟି ବିମଳା, ଆୟଷା, କପାଳକୁଣ୍ଡଳା, ମତିବିବି, ଶାନ୍ତି, ଶୈବାଳିନୀ, ଲବଙ୍ଗଲତା, ଶ୍ରୀ ଆଦି ଅସାଧାରଣ ନାରୀ ଚରିତ୍ରର ଅନୁରୂପ ଚିତ୍ର ସେନାପତିଙ୍କ କଥା ସାହିତ୍ୟରେ ଅନୁପଲବ୍ଧ । ସେହିପରି ରେବତୀ, ସୁଲୋଚନା, ଦେବକୀ, ସରସ୍ୱତୀ, ଇନ୍ଦୁମତିଙ୍କ ପରି ଚରିତ୍ର ବଙ୍କିମଙ୍କ ଉପନ୍ୟାସରେ ପ୍ରାୟ ବିରଳ । ନାକଫୋଡ଼ିଆ ମାଆ, ମଙ୍ଗଳା ଦେଇ, ଚେମୀ ପ୍ରଭୃତି ଚରିଦ୍ର ଓ ସମାଜରେ ଅବହେଳିତ ନାରୀ ମଧ୍ୟ ବଙ୍କିମଙ୍କ କଥା ସାହିତ୍ୟରେ ଦୁର୍ମିଳ । କେବଳ ସଂଖ୍ୟା ଦୃଷ୍ଟିରୁ ନୁହେଁ,ସୌନ୍ଦର୍ଯ୍ୟର ବିବିଧତା ଦୃଷ୍ଟିରୁ ଚଟୋପାଧ୍ୟାୟଙ୍କ ଉପନ୍ୟାସରେ ବହୁ ରମଣୀଙ୍କ ସଂଖ୍ୟାରେ ସ୍ୱଳ୍ପ ହେଲେ ମଧ୍ୟ ସେମାନେ ସ୍ୱକୀୟ ବର୍ଣ୍ଣ ବିଭାରେ 'ସମୁଜ୍ଜ୍ୱଳ' ।

ପୁରୁଷ ଚରିତ୍ର ସମ୍ପର୍କରେ ଗବେଷକ ତାଙ୍କ ବିଚାରଧାରା ଉପସ୍ଥାପନ କରି ମତ ଦେଇଛନ୍ତି ଯେ ଫକୀରମୋହନଙ୍କ ପୁରୁଷ ସମାଜର ବ୍ୟାପ୍ତି ତୁଳନାତ୍ମକ ଭାବରେ ଅଧିକ । ବଙ୍କିମଚନ୍ଦ୍ରଙ୍କ ପୁରୁଷ ଚରିତ୍ର କାମ ପ୍ରବୃତ୍ତିର କ୍ରୀଡ଼ାନକ, ମାତ୍ର ଫକୀରମୋହନଙ୍କ ପୁରୁଷ ଚରିତ୍ର ଲୋଭ, ମୋହ, କ୍ରୋଧ ଓ ପରଶ୍ରୀକାତରତାର ଗୋଟିଏ ଗୋଟିଏ ରୂପ ବୋଲି ଗବେଷକ ଅନୁଭବ କରିଛନ୍ତି । ଉଭୟ ଶିଳ୍ପୀଙ୍କ ଖଳଚରିତ୍ରରେ ମଧ୍ୟ ସାମ୍ୟ ଓ ବୈଷମ୍ୟ ପରିଲକ୍ଷିତ ହୋଇଥାଏ । ବଙ୍କିମଙ୍କ ଚରିତ୍ର ଉପସ୍ଥାପନା କାବ୍ୟ ଧର୍ମୀ ହୋଇଥିବା ବେଳେ ଫକୀରମୋହନଙ୍କ ଚରିତ୍ର ଉପସ୍ଥାପନାରେ ବ୍ୟଙ୍ଗ୍ୟ ଓ ହାସ୍ୟ ରସର ଅବତାରଣା ତାଙ୍କ ଚରିତ୍ରମାନଙ୍କୁ ବେଶ ମନୋଜ୍ଞ ଓ ଆକର୍ଷୀୟ କରିଦେଇଛି ।

ଭାଷା, ସାଂସ୍କୃତିକ ଚେତନା ତଥା ସଂଘାତ-ସଘର୍ଷପୂର୍ଣ୍ଣ ଜୀବନ ଦୃଷ୍ଟିରୁ

ବିଚାର କଲେ ବଙ୍କିମଚନ୍ଦ୍ର ଓ ଫକୀରମୋହନଙ୍କ ମଧ୍ୟରେ ଅନେକ ପାର୍ଥକ୍ୟ ରହିଛି । ବଙ୍ଗ ପ୍ରଦେଶରେ ଆଧୁନିକ ଶିକ୍ଷାର ପ୍ରସାର, ରାମମନୋହର ରାୟଙ୍କ ନବଜାଗରଣ ଆନ୍ଦୋଳନ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ସାମାଜିକ ସଂଗ୍ରାମ, ମାଇକେଲ ମଧୁସୂଦନଙ୍କ ନୂତନ ସାରସ୍ୱତ ପ୍ରୟାସ ପ୍ରଭୃତି ନାନା ଘଟଣା ଦେଇ ବଙ୍କିମଙ୍କ ସୃଷ୍ଟି ମାନସ ଧୀରେ ଧୀରେ ଯେଉଁ ଶକ୍ତି ସାମର୍ଥ୍ୟର ଅଧିକାରୀହୋଇଥିଲା, ଫକୀରମୋହନଙ୍କ ଜୀବନରେ ତାହା ଥିଲା ଦିବାସ୍ୱପ୍ନ ଭଳି । ନାନା ପ୍ରାକୃତିକ ବିପ୍ଳାତର ଶରବ୍ୟ ଓଡ଼ିଶା, ଖଣ୍ଡ ବିଖଣ୍ଡିତ ଓଡ଼ିଶା, ଓଡ଼ିଆ ଭାଷା ବିଲୋପ ଚକ୍ରାନ୍ତରେ କ୍ଷତ-ବିକ୍ଷତ ଓଡ଼ିଶାର ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଫକୀରମୋହନଙ୍କ ଜୀବନ ଥିଲା ନିରନ୍ତର ଏକ ସଂଘର୍ଷମୟ ଜୀବନ । ଅଥଚ ତାଙ୍କର ସମୁଦାୟ ସୃଷ୍ଟି ମଧ୍ୟରେ ସାଧାରଣ-ସରଳ ମଣିଷଙ୍କୁ ସେ ଯେପରି ମହିମାମୟ ସାରସ୍ୱତ-ସିଂହାସନରେ ଅଭିଷିକ୍ତ କରିଯାଇଛନ୍ତି, ଓଡ଼ିଆ ସାହିତ୍ୟରେ ତାହାର ଉଦାହରଣ ଖୁବ୍ ବେଶୀ ଦେଖିବାକୁ ମିଳେ ନାହିଁ । ଏହାର ବିସ୍ତୃତ ତଥା ଗଭୀର ଅନୁଶୀଳନ କରି ଗବେଷକ ଡକ୍ଟର ଦାସ କହିଛନ୍ତି- "ଆଲୋଚିତ କାଳଜୟୀ ପ୍ରତିଭାଦ୍ୱୟଙ୍କ ଚରମ ଲକ୍ଷ୍ୟ ଏକ ଥାଇ ପନ୍ଥା ଥିଲା ସଂପୂର୍ଣ୍ଣ ଭିନ୍ନ । ଶିଳ୍ପୀ ଦ୍ୱୟଙ୍କ ମାନବ ପ୍ରତି ପ୍ରେରିତ ସନ୍ଦେଶର ସମ୍ବାହକ ଚରିତ୍ର ସୃଷ୍ଟିରେ ଭିନ୍ନତା ପରିଲକ୍ଷିତ ହେବା ସ୍ୱାଭାବିକ । ଚଟ୍ଟୋପାଧ୍ୟାୟ ଓ ସେନାପତି ଦେଶୀ-ବିଦେଶୀ ବହୁ ସୁମନରୁ ମଧୁ ଆହରଣ କରି ଯେଉଁ ରସାଳ ମଧୁଚକ୍ର ନିର୍ମାଣ କରିଛନ୍ତି, ତାହା ଅନନ୍ୟ ଓ ଅଭୂତପୂର୍ବ ସ୍ୱାଦ ଓ ବୈଭବ ଲାଭ କରିଛି । ସେନାପତି ତାଙ୍କ ପୂର୍ବସୂରୀ ଚଟ୍ଟୋପାଧ୍ୟାୟଙ୍କ ଦ୍ୱାରା ପ୍ରେରଣା ପୁଷ୍ଟହେବା ଆଦୌ ଅସ୍ୱାଭାବିକ ନୁହେଁ, କିନ୍ତୁ ତାଙ୍କର ବଳିଷ୍ଠ ପ୍ରତିଭା ସମସ୍ତ ଆହୃତ ଉପାଦାନକୁ ସଂପୂର୍ଣ୍ଣ ନିଜସ୍ୱ କରି ନେଇଛି । ଉଭୟଙ୍କ ମଧ୍ୟରେ ଥିବା ଏହି ସମପ୍ରକାଶ ଶାଳିତାକୁ ଲକ୍ଷ୍ୟ କରି ଓଡ଼ିଆ ସାହିତ୍ୟର କିଛି ସମାଲୋଚକ ଏପରି ମନ୍ତବ୍ୟ ଦେଇଥାଆନ୍ତି ଯେ ଫକୀରମୋହନଙ୍କ ଚରିତ୍ର ସୃଷ୍ଟି ବଙ୍କିମଙ୍କ ଅନୁକରଣରେ କଳ୍ପିତ । ମାତ୍ର ଗବେଷକ ଡକ୍ଟର ଦାସ ଏପରି ମନ୍ତବ୍ୟକୁ ସଂପୂର୍ଣ୍ଣ ଅନ୍ତଃସାର ଶୂନ୍ୟ ବୋଲି କେବଳ କହିନାହାନ୍ତି, ତାଙ୍କ ଗବେଷଣାର ନାନା ପର୍ଯ୍ୟାୟରେ ତାର ପ୍ରଚୁର ଦୃଷ୍ଟାନ୍ତର ମଧ୍ୟ ଅବତାରଣା କରିଅଛନ୍ତି ।

ସପ୍ତମ ପରିଚ୍ଛେଦ ହେଉଛି ଗବେଷଣାର ଉପସଂହାର । ଏହି ପର୍ଯ୍ୟାୟରେ ଗବେଷକ ବିଭିନ୍ନ ପର୍ଯ୍ୟାୟରେ ସ୍ୱ ସ୍ୱ ସାହିତ୍ୟରେ ବଙ୍କିମଚନ୍ଦ୍ର ଓ ଫକୀରମୋହନଙ୍କ ପ୍ରଭାବ ତଥା ପ୍ରତିଷ୍ଠା ସମ୍ପର୍କରେ ଆଲୋକପାତ କରିଛନ୍ତି । ଏହି ପରିସର ମଧ୍ୟରେ ଆମେ ଆଲୋଚ୍ୟ ଦୁଇ ସ୍ରଷ୍ଟାଙ୍କର ବିସ୍ତୃତ ସାରସ୍ୱତ ଜୀବନ ସଂପର୍କରେ ଚମତ୍କାର ତୁଳନାତ୍ମକ ବ୍ୟାଖ୍ୟା ଦେଖିବାକୁ ପାଇଥାଉ । ବଙ୍କିମଚନ୍ଦ୍ରଙ୍କ ଉପରେ ସ୍କଟ, ଡିକେନ୍ସ, ଲିଟନ, ସେକ୍‌ସପିୟର, ୱାର୍ଡସ୍‌ ୱାର୍ଥ ପ୍ରଭୃତି ବିଦେଶୀ ତଥା କାଳିଦାସ, ଭବଭୂତି ଭାରତ ଚନ୍ଦ୍ର ଓ ମୁକୁନ୍ଦଦାସ ପ୍ରଭୃତି ସ୍ୱଦେଶୀ ସାହିତ୍ୟିକଙ୍କ ପ୍ରଭାବ ପରିଲକ୍ଷିତ ହୋଇଥାଏ । ବଙ୍କିମ ବଙ୍ଗ ସାହିତ୍ୟରେ ଉପନ୍ୟାସର ଆଙ୍ଗିକରେ ବହୁପ୍ରକାର ନୂତନତ୍ୱର ପରିଚୟ ଦେଇଛନ୍ତି । ତାଙ୍କ କାବ୍ୟଧର୍ମୀ ଉପସ୍ଥାପନା ରବୀନ୍ଦ୍ରନାଥଙ୍କ ପରି ସାହିତ୍ୟ ସ୍ରଷ୍ଟାଙ୍କୁ ମଧ୍ୟ ପ୍ରଭାବିତ କରିଥିଲା । ବଙ୍ଗଳା ସାହିତ୍ୟରେ ବହୁ ଲେଖକ ଓ ଲେଖାକୁ ବଙ୍କିମଚନ୍ଦ୍ର ଯେପରି ପ୍ରଭାବିତ କରିଛନ୍ତି, ଗବେଷକ ତାର ଏକ ତାତ୍ତ୍ୱିକ ଆଲୋଚନା କରି ବଙ୍କିମଙ୍କ ପ୍ରତିଭାର ବିଭିନ୍ନ ଦିଗପ୍ରତି ଦୃଷ୍ଟି ଆକର୍ଷଣ କରି କହିଛନ୍ତି ଯେ ବଙ୍କିମଚନ୍ଦ୍ରଙ୍କ କଥା ଶିଳ୍ପର ସୁଦୃଢ଼ ଭିତ୍ତିଭୂମି ଉପରେ ପରବର୍ତ୍ତୀ କାଳର ବହୁ ଶିଳ୍ପୀ ବହୁତଳ ବିଶିଷ୍ଟ ପ୍ରାସାଦ ନିର୍ମାଣ କରିଛନ୍ତି ।

ଫକୀରମୋହନଙ୍କ ସମ୍ପର୍କରେ ଗବେଷକ ଡକ୍ଟର ଦାସଙ୍କ ଆକଳନ ଯେପରି ବାସ୍ତବ ସେହିପରି ସତ୍ୟାଶ୍ରୟୀ । ତାଙ୍କ ନିଜ ଭାଷାରେ- "ଫକରୀମୋହନ ଏକ ବହୁମୁଖୀ ପ୍ରତିଭା । ସେ କବି, କଥାକାର, ପ୍ରାବନ୍ଧିକ, ସଂପାଦକ, ଅନୁବାଦକ, ଜୀବନୀକାର ସର୍ବୋପରି ନବଯୁଗର ଆବାହକ ରୂପେ ଓଡ଼ିଆ ସାହିତ୍ୟରେ ଚିରସ୍ମରଣୀୟ ହୋଇଛନ୍ତି । ସେ ତାଙ୍କର ବିପୁଳ କବିତା ସୃଷ୍ଟି ମଧ୍ୟରେ ଆଧୁନିକ ଗୀତି କବିତାରେ ସମସ୍ତ ଆଙ୍ଗିକ ପ୍ରୟୋଗ କରିଯାଇଛନ୍ତି । ତାଙ୍କ ରଚିତ ପ୍ରବନ୍ଧ ସଂଖ୍ୟାରେ ସ୍ୱଳ୍ପ ହେଲେ ମଧ୍ୟ ଏହା ଜ୍ଞାନ ବିଜ୍ଞାନ ସମସ୍ତ ସୀମାକୁ ସ୍ପର୍ଶ କରିଛି । ସେନାପତି ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରଥମ ସଫଳ ଔପନ୍ୟାସିକ, ଗାଳ୍ପିକ, ଚରିତ ସାହିତ୍ୟର ପ୍ରଣେତା ଓ ଆତ୍ମଜୀବନୀକାର । ସେନାପତି ବ୍ୟାସ, ବାଲ୍ମୀକି, କାଳିଦାସ, ଭବଭୂତି, ସାରଳା, କଳରାମ, ବ୍ରଜନାଥ ବଡ଼ଜେନା ପ୍ରଭୃତି ସ୍ରଷ୍ଟାଙ୍କ ଦ୍ୱାରା ପ୍ରବାବିତ ହେବାର ଦୃଷ୍ଟାନ୍ତ ତାଙ୍କ କଥା ସାହିତ୍ୟରେ ଲକ୍ଷ୍ୟ କରାଯାଏ । କିନ୍ତୁ

ଶିଳ୍ପୀଙ୍କ ବଳିଷ୍ଠ ପ୍ରତିଭା ଏହି ପ୍ରଭାବକୁ ନିଜସ୍ୱ କରି ନେଇଛି ।"

ନିଜସ୍ୱ କରି ନେବାର ଏଇ ଚମତ୍କାରିତା କେବଳ ଫକୀରମୋହନଙ୍କର ନୁହେଁ, ସମକାଳୀନ କବି ରାଧାନାଥଙ୍କର ମଧ୍ୟ ଥିଲା । ସେଥିପାଇଁସେ ତାଙ୍କର କାବ୍ୟ କବିତାର ବିଷୟବସ୍ତୁ ବିଦେଶୀ ସାହିତ୍ୟରୁ ଆହରଣ କରିଥିଲେ ମଧ୍ୟ ନିଜସ୍ୱ ରଙ୍ଗରେ ସେ ସବୁକୁ ଅତ୍ୟନ୍ତ ବିଶ୍ୱାସଯୋଗ୍ୟ କରିପାରିଥିଲେ ।

ଗବେଷଣାର ପରବର୍ତ୍ତୀ ନିର୍ଯ୍ୟାସ ଭାବରେ ଡକ୍ଟର ଦାସ ବଙ୍କିମଚନ୍ଦ୍ର ଓ ଫକୀରମୋହନଙ୍କର ସ୍ୱ ସ୍ୱ ସାହିତ୍ୟ ଉପରେ ପଡ଼ିଥିବା ପ୍ରଭାବକୁ ବିସ୍ତୃତ ଭାବରେ, ନାନା ଚରିତ୍ର ଓ ଘଟଣାର ଅବଲମ୍ବନରେ ପ୍ରଦର୍ଶନ କରିଛନ୍ତି । ଉଭୟ ସ୍ରଷ୍ଟାଙ୍କ ରଚନା ଶୈଳୀର ତୁଳନା କରି ଗବେଷକ ଅନୁଭବ କରିଛନ୍ତି ଯେ ବଙ୍କିମଙ୍କ ଗଦ୍ୟଶୈଳୀ ବଙ୍ଗଳା ସାହିତ୍ୟରେ ପରିତ୍ୟକ୍ତ ହୋଇଥିବା ବେଳେ ଫକୀରମୋହନଙ୍କ ଗଦ୍ୟ ଶୈଳୀର ପ୍ରଭାବ ଓଡ଼ିଆ ସାହିତ୍ୟରେ ତଥାପି ଅନୁକରଣୀୟ ହୋଇ ରହିଛି । ଗବେଷକ ଡକ୍ଟର ଦାସ ବଙ୍କିମଚନ୍ଦ୍ରଙ୍କୁ ଭାରତୀୟ ଉପନ୍ୟାସ ସାହିତ୍ୟର ଆଦି ପ୍ରବକ୍ତା ଭାବରେ ଗ୍ରହଣ କରିଛନ୍ତି । ବଙ୍କିମଙ୍କ ଉପନ୍ୟାସ ଆଧୁନିକ ବଙ୍ଗୀୟ ପାଠକଙ୍କୁ ଇଂରେଜୀ ଉପନ୍ୟାସ ପାଠର ପୂର୍ଣ୍ଣତା ପ୍ରଦାନ କରିଥିଲା । ଫକୀରମୋହନଙ୍କ କ୍ଷେତ୍ରରେ ସେପରି ସୁଯୋଗ ନଥିଲା । କାରଣ ବଙ୍କିମଙ୍କ ପରିବେଶଠାରୁ ଫକୀରମୋହନଙ୍କ ପରିବେଶ ଥିଲା ସଂପୂର୍ଣ୍ଣ ବିପରୀତ । ବଙ୍କିମଙ୍କ କଥା ସାହିତ୍ୟ ପ୍ରାୟ ସବୁ ମୁଖ୍ୟ ଭାରତୀୟ ତଥା ଭିନ୍ନ ଭିନ୍ନ ବିଦେଶୀ ଭାଷାରେ ଅନୂଦିତ ହୋଇ ତାହାକୁ ସାରା ବିଶ୍ୱରେ ପରିଚିତ କରାଇଥିବା ବେଳେ ଫକୀରମୋହନ ରହିଗଲେ ସୀମିତ ଚଉହଦୀ ମଧ୍ୟରେ । ତଥାପି ତାଙ୍କ ବ୍ୟାପ୍ତିର ଏକ ଯଥାର୍ଥ ଆକଳନ କରି ଡକ୍ଟର ଦାସ କହିଛନ୍ତି- "ସେନାପତିଙ୍କ ପ୍ରତିଭାର ଦୀପ୍ତି ଉତ୍କଳୀୟ ସାହିତ୍ୟାକାଶକୁ ଅପୂର୍ବ ବର୍ଣ୍ଣାଳି ରଞ୍ଜିତ କରିଥିଲେ ମଧ୍ୟ ପାରିବେଶିକ ପ୍ରତିକୂଳତାରୁ ଏହା ଦିଗ୍ ବିଦିଗ ସଞ୍ଚରଣ କରି ପାରିନଥିଲା । ସ୍ୱାଧୀନତା ପରବର୍ତ୍ତୀ କାଳରେ ଭାରତୀୟ ସାହିତ୍ୟ ଏକାଡେମୀ ତଥା ବ୍ୟକ୍ତିକ ଉଦ୍ୟୋଗରେ ଫକୀରମୋହନଙ୍କକଥା ସାହିତ୍ୟ ଓ ଆତ୍ମଜୀବନ ଚରିତ ଭାରତୀୟ ପ୍ରାୟ ସବୁ ମୁଖ୍ୟ ଭାଷାରେ ଏବଂ କେତୋଟି ବିଦେଶୀ ଭାଷାରେ ଅନୂଦିତ ହୋଇ ବିଶେଷ ଆଦର ଲାଭକରିଛି । ଡକ୍ଟର ଜେ.ଭି.

ବୋଲଟନଙ୍କ ପରି କୃତବିଦ୍ୟ ପଣ୍ଡିତଙ୍କୁ ସେନାପତିଙ୍କ ଉପରେ ଗବେଷଣା ସନ୍ଦର୍ଭ ଓ ପୁସ୍ତକ ରଚନା, ବିଶିଷ୍ଟ, ତାମିଲ ସମୀକ୍ଷକ କାନା ସୁବ୍ରହ୍ମନ୍ୟଙ୍କ ତୁଳନାତ୍ମକ ଆଲୋଚନା ଫଳରେ କଥାଶିଳ୍ପୀ ସେନାପତି ଆଜି ଅନ୍ତର୍ଦେଶୀୟ ତଥା ଆନ୍ତର୍ଜାତିକ ସାହିତ୍ୟ ପରିଚିତ । କାନାସୁବ୍ରହ୍ମନ୍ୟଙ୍କ ଦୃଷ୍ଟି ତାମିଲ ଔପନ୍ୟାସିକ ବେଦନାୟକମ୍ ପିଲାଇଙ୍କ 'ମୁଦାଲିଆର ଚରିତମ୍' ଓ ମାଲାୟାମ୍ ଔପନ୍ୟାସିକ ଗୁଦୁମେନଙ୍କ 'ଇନ୍ଦୁଲେଖା' ପରି ଫକୀରମୋହନଙ୍କ କଥାକୃତିଗୁଡ଼ିକ ପାଶ୍ଚାତ୍ୟ ପ୍ରଭାବ ମୁକ୍ତ ଓ ମୌଳିକ ଦୃଷ୍ଟି ସମ୍ପନ୍ନ । କଥା ସାହିତ୍ୟରେ ପ୍ରତିଫଳିତ ପୁଷ୍କଳ ଜୀବନାନୁଭୂତି ଉଦାର ଭାରତୀୟ ଦୃଷ୍ଟିକୋଣ ଓ ସାମାଜିକ ବାସ୍ତବବୋଧ ଦୃଷ୍ଟିରୁ ସେ ସେନାପତିଙ୍କୁ କାଳଜୟୀ ପ୍ରତିଭାର ସମ୍ମାନ ପ୍ରଦାନ କରିଛନ୍ତି ।" କାନା ସୁବ୍ରହ୍ମନ୍ୟ ଫକୀରମୋହନଙ୍କୁ ବିଶିଷ୍ଟ ଭାରତୀୟ କଥାକାର ଭାବରେ ସ୍ୱୀକାର ମଧ୍ୟ କରିଛନ୍ତି ।

ଗବେଷଣାର ଶେଷ ପର୍ଯ୍ୟାୟରେ ଡକ୍ଟର ଦାସ ବଙ୍କିମଚନ୍ଦ୍ର ଓ ଫକୀରମୋହନଙ୍କ ମଧ୍ୟରେ ଏକ ସାମଗ୍ରିକ ତୁଳନାତ୍ମକ ଚିତ୍ର ଦେଇ ଉଭୟଙ୍କ ପ୍ରତିଭାର ଯଥାର୍ଥ ମୂଲ୍ୟାୟନ କରିଛନ୍ତି । ସେ ସ୍ୱୀକାର କରିଛନ୍ତି ଯେ ଅନ୍ୟ ଭାରତୀୟ କଥା ସାହିତ୍ୟିକଙ୍କ ପରି ଫକୀରମୋହନଙ୍କ ପ୍ରେରଣା ଉତ୍ସ ମଧ୍ୟ ଥିଲେ ବଙ୍କିମଚନ୍ଦ୍ର । ମାତ୍ର ଉଭୟ ସ୍ରଷ୍ଟାଙ୍କ ଆଦର୍ଶ ଓ ଆଭିମୁଖ୍ୟ ଥିଲା ଭିନ୍ନ । ଇଂରେଜ ଔପନ୍ୟାସିକ ସ୍କଟଙ୍କ ପରି ରୋମାନ୍ସଧର୍ମୀ ଉପନ୍ୟାସ ଲେଖିଥିବାରୁ ବଙ୍କିମଚନ୍ଦ୍ରଙ୍କୁ ବଙ୍ଗଳାର ୱାଲଟର ସ୍କଟ କୁହାଯାଉଥିବା ବେଳେ ଫକୀରମୋହନଙ୍କୁ ବିଖ୍ୟାତ ସାହିତ୍ୟିକ ଡକ୍ଟର ମାୟାଧର ମାନସିଂହ ଇଂରାଜୀ ଔପନ୍ୟାସିକ ଥୋମାସ ହାର୍ଡି ଭାବରେ ଅଭିହିତ କରି ନିଜ ନିରପେକ୍ଷ ଅନୁଶୀଳନର ପରିଚୟ ଦେଇଅଛନ୍ତି । ଏପରିକି ଆଦର୍ଶଗତ ସାମ୍ୟ ଦୃଷ୍ଟିରୁ କେତେକ ସମୀକ୍ଷକ ଫକୀରମୋହନଙ୍କୁ ବିଶ୍ୱବିଖ୍ୟାତ କଥାଶିଳ୍ପୀ ଟଲଷ୍ଟୟଙ୍କ ସହିତ ମଧ୍ୟ ତୁଳନା କରିଛନ୍ତି ।

ଗବେଷଣାର ଉପସଂହାରରେ ଡକ୍ଟର ଦାସ ବଙ୍କିମଚନ୍ଦ୍ର ଓ ଫକୀରମୋହନଙ୍କ ସଂମ୍ପର୍କରେ ଅତ୍ୟନ୍ତ ମୂଲ୍ୟବାନ ଅଭିମତ ପ୍ରକାଶ କରି କହିଛନ୍ତି - " ଉପନ୍ୟାସର ସ୍ୱର୍ଣ୍ଣଯୁଗରେ, ଭାରତୀୟ ସାହିତ୍ୟରେ ବଙ୍କିମଚନ୍ଦ୍ର ଓ ଫକୀରମୋହନଙ୍କ ଆବିର୍ଭାବ ବହୁମୁଖୀ ସାହିତ୍ୟ ସାଧନା, ଗଭୀର ମାନବାଦୀ

ଦୃଷ୍ଟିକୋଣ, କାଳ ମଧ୍ୟରେ କାଳାତୀତ ସତ୍ୟର ଉପଲବ୍ଧି ଏବଂ ଶିବ ଓ ସୁନ୍ଦର ସହିତ ଏହାର ଅପୂର୍ବ ସମନ୍ୱୟ ବିଧାନ କରି କଥା ଶିଳ୍ପୀଦ୍ୱୟ ଏକାଧାରାରେ ଯୁଗନ୍ଧର ଓ ଯୁଗଜୟୀ ହୋଇପାରିଛନ୍ତି । ସେମାନେ ନିରବଧି କାଳ ବିପୁଳା ପୃଥିବୀର ଅମର ମାନବ ।"

ବଙ୍କିମଚନ୍ଦ୍ର ଓ ଫକୀରମୋହନଙ୍କ କଥା ସାହିତ୍ୟରେ ଚରିତ୍ରମାନଙ୍କର ତୁଳନାତ୍ମକ ଅଧ୍ୟୟନରେ ଗବେଷକ ଡକ୍ଟର ଦାସ ଯେଉଁମୌଳିକକତାର ପରିଚୟ ଦେଇଛନ୍ତି, ଓଡ଼ିଆ ସାହିତ୍ୟରେ ତାହା ଅନେକାଂଶରେ ଅସାଧାରଣ ମନେ ହୋଇଥାଏ । ଓଡିଆ ସାହିତ୍ୟରେ ଗବେଷଣା ବର୍ତ୍ତମାନ ବହୁଳାଂଶରେ ଆଦର୍ଶଚ୍ୟୁତ ଓ ଦିଗ୍‌ଭ୍ରାନ୍ତ । ଅନେକ କ୍ଷେତ୍ରରେ ଦୀର୍ଘ ପ୍ରବନ୍ଧମାନଙ୍କୁ ଗବେଷଣା ନିବନ୍ଧର ମାନ୍ୟତା ଦିଆଯାଉଛି । ଯେ କୌଣସି ପ୍ରକାରେ ଡିଗ୍ରୀଟି ହାସଲ କରି ପାରିଲେ ହେଲା । ଏ କ୍ଷେତ୍ରରେ କେତେକ ଗାଇଡ୍‌ଙ୍କର ମାର୍ଗ ଦର୍ଶନ ମଧ୍ୟ ଅତି ହାସ୍ୟାସ୍ପଦ ଅବସ୍ଥା ସୃଷ୍ଟି କରିଛି । ଗାଇଡ୍ ଓ ସ୍କଲାରଙ୍କ ମଧ୍ୟରେ ଅନୈତିକ ମେଣ୍ଟ ବାତାବରଣକୁ କ ପ୍ରଦୂଷିତ । କାଖରେ ମୋଟା ରେଜିଷ୍ଟରଟିଏ ଜାକି ଘର ଘର ବୁଲି ସ୍କଲାର ଯୋଗାଡ କରୁଥିବା ଜଣେ ଗାଇଡଙ୍କୁ ଦେଖି ଏଇ ଲେଖକ ସେଦିନ ନୀରବରେ କେବଳ ଏତିକି ପ୍ରାର୍ଥନା କରିଥିଲା- ହେ ଈଶ୍ୱର", ଏମାନଙ୍କୁ କ୍ଷମା କର । ଏମାନେ କ'ଣ କରୁଛନ୍ତି, ତାହା ନିଜେ ମଧ୍ୟ ଜାଣି ପାରୁ ନାହାନ୍ତି ।" ଜଣାନାହିଁ, ଈଶ୍ୱର ସେମାନଙ୍କୁ କ୍ଷମା କରିଛନ୍ତି କି ନାହିଁ । ହେଲେ ଅବସ୍ଥାରେ ବିଶେଷ ପରିବର୍ତ୍ତନ ଘଟିନାହିଁ ।

ଏବଂବିଧ ପରିସ୍ଥିତିରେ ଡକ୍ଟର ଲକ୍ଷ୍ମୀଧର ଦାସ, ଗବେଷଣା କ୍ଷେତ୍ରରେ ଯେଉଁ କୀର୍ତ୍ତିସ୍ତମ୍ଭ ନିର୍ମାଣ କରିଛନ୍ତି, ଓଡ଼ିଆ ସାହିତ୍ୟରେ ତାହା ଅବିସ୍ମରଣୀୟ ହୋଇ ରହିବ ।

ଶଙ୍ଖନାଭି

ସର୍ବୋଦୟ ନଗର, ପୁରୀ-୨




ଓଡ଼ିଶା ସାହିତ୍ୟ ଏକାଡେମୀ ସମ୍ବର୍ଦ୍ଧନା